# ଗଳ୍ପସୂଚୀ

# ମହା ନିର୍ବାଣ

•

ଶତ ମକ୍ଷିକାର ଗୁଞ୍ଜରଣ ପରି, ଉପୋଷଥ-ବ୍ରତଧାରୀ ଭିକ୍ଷୁମାନଙ୍କର ଧାରଣୀ-ଆବୃତ୍ତିର ଅନୁନାସିକ ସଙ୍ଗୀତରେ, ଗୃଧ୍ରକୂଟ-ବିହାର ଏକ ମଧୁଚକ୍ରର ଭ୍ରମ ସୃଷ୍ଟି କରିଥିଲା ।

"ଓଁ ନମଃ ସମସ୍ତ ବୁଦ୍ଧାନାଂ ଅପ୍ରତିହତ ଶାସନାମ୍"... ଧାରଣୀର ଅବଶିଷ୍ଟାଂଶ, ଆମ୍ରକୁଞ୍ଜର କେଉଁ ମଂଜରିତ ଶାଖାରେ ଗୋଟିଏ କୋକିଳର ଅଶାନ୍ତ କୁହୁରବ ମଧ୍ୟରେ, ମନୋଯୋଗ ବିସ୍ମୃତ ହୋଇ ପଡ଼ିଥିଲେ ।

ମୂଢ...ମୂଢ଼, ନିର୍ବୋଧ ପକ୍ଷୀ !

ଅଥଚ ଭ୍ରମର ଏହି ପ୍ରମତ୍ତ ରତିଭିକ୍ଷା, ବିଶ୍ବର ଶ୍ରେଷ୍ଠସଙ୍ଗୀତ ରୂପେ ବିବେଚିତ...ସ୍ୱର ଓ ମୂର୍ଚ୍ଛନାର ଏକ ବିଚିତ୍ର ନିର୍ବାଣ-ଲୋକ ! ଏହି ତ ନିର୍ବାଣ...ଏକ ଅନିର୍ବଚନୀୟ, ଅତଳ ଶୂନ୍ୟତା, ଯାହା ମଧ୍ୟରେ ସବୁ ସତ୍ତା ଲୋପ ପାଇଥାଏ; ପୁଣି ସେହି ଶୂନ୍ୟତା ମଧ୍ୟରେ ସବୁ ପୂର୍ଣ୍ଣତା ଏକ ପ୍ରାଚୁର୍ଯ୍ୟରେ ଉଦ୍‌ଭାସିତ ହୋଇଉଠେ !

କୋକିଳର କୁହୁ ଧ୍ୱନି, ଘନଶ୍ୟାମଳ ଆମ୍ରକୁଞ୍ଜର ଗଭୀର ଅନ୍ତଃସ୍ଥଳ ମନ୍ଥିତ କରି, ବିଦୀର୍ଣ୍ଣ କରି, କାମନାର ପ୍ରମତ୍ତ ଆଲୋଡ଼ନ ପରି, ବାରମ୍ବାର ପ୍ରତିଧ୍ୱନିତ ହୋଇ ଉଠୁଥିଲା !

ମନୋଯୋଗ ଧାରଣୀ-ଆବୃତ୍ତି ଭୁଲି, ସେହି କୁହୁଧ୍ୱନି ଆତ୍ମବିସ୍ମୃତ ପରି ଶୁଣୁଥିଲେ ।

ଏକ ବିବସନା ନାରୀର, ସୁତୀକ୍ଷ୍ଣ, ଶାଣିତ ଅଙ୍ଗରେଖା ପରି, ଆମ୍ରକୁଞ୍ଜର ମଂଜରିତ ଶାଖାମାନ, ଗୃଧ୍ରକୂଟ ବିହାରର ବାତାୟନହୀନ ନିରୁଦ୍ଧ କକ୍ଷର ଦକ୍ଷିଣ ଦ୍ୱାର ବାହାରେ, ସ୍ୱର୍ଣ୍ଣାଭ ଆକାଶର ପୃଷ୍ଠଭୂମିରେ ଉତ୍କୀର୍ଣ୍ଣ ହୋଇଥିଲା ।

ଏକଲକ୍ଷ ଆଠବାର ଧାରଣୀ ଆବୃତ୍ତି କଲେ, ଗଣ୍ଡବ୍ୟୂହ ସୂତ୍ରପାଠର ସୁଫଳ ମିଳିଥାଏ···ଉପୋଷଥ ଦିବସର ବିଧି ।

ବସନ୍ତର ଏହି ସକାଳରେ ଚେଣ୍ଟୁ, ମୁକୁଳିତ ଆମ୍ରଶାଖାରେ ବିବସନା ନାରୀର ମଂଜରିତ ଅଙ୍ଗରେଖା କଳ୍ପନା କରିବା ପାଇଁ ବେଳ-ନାହିଁ, ବେଳନାହିଁ···! ଦଳେ ମୋକ୍ଷକାମୀ ଭକ୍ତ ନୀଳୋତ୍ପଳଙ୍କ କକ୍ଷଆଡ଼େ ଆସୁଥିଲେ । ଉପୋଷଥ ଦିବସରେ, ଭିକ୍ଷୁମାନଙ୍କ କଣ୍ଠରେ ଧାରଣୀର ଆବୃତ୍ତି ଶୁଣିଲେ ମଧ୍ୟ ମୋକ୍ଷର ପଥ ସୁଗମ ହୋଇଥାଏ । ସେଥିପାଇଁ ମୋକ୍ଷର ମୂଲ୍ୟରୂପେ, ଭିକ୍ଷୁମାନଙ୍କ ସମ୍ମୁଖରେ ସ୍ଥାପିତ ଜଳପୂର୍ଣ୍ଣ ପାତ୍ର-ମାନଙ୍କରେ କାର୍ଷାପଣମାନ ପକାଇ, କକ୍ଷମାନଙ୍କର ପ୍ରାଚୀର-ଗହ୍ୱରରେ ପ୍ରତିଷ୍ଠିତ, ଅବଲୋକିତେଶ୍ୱର ଓ ପ୍ରଜ୍ଞାପାରମିତା, ଅମୋଘସିଦ୍ଧି ଓ ତାରା ଅଥବା ଅକ୍ଷୋଭ୍ୟ ଓ ଲୋଚନା ପ୍ରଭୃତି ବୌଦ୍ଧ ଦେବଦେବୀଙ୍କର ଯୁଗନଦ୍ଧ ମୂର୍ତ୍ତିମାନଙ୍କଠାରେ ଗୋଟିଏ ଗୋଟିଏ ଦୀପ ଜଳାଇ, କକ୍ଷରୁ କକ୍ଷାନ୍ତର, ସମଗ୍ର ବିହାର ପରିକ୍ରମା କରିବା, ମୋକ୍ଷକାମୀ ଭକ୍ତ ଓ ଯାତ୍ରୀମାନଙ୍କର ଉପୋଷଥ ଦିବସରେ ବିଧି ।

ନୀଳୋତ୍ପଳ ସ୍ୱପ୍ନରୁ ଉଠିଲା ପରି ପୁଣି ଧାରଣୀ ଆବୃତ୍ତି କଲେ···

"ଓଁ ନମଃ ସମସ୍ତ ବୁଦ୍ଧାନାଂ ଅପ୍ରତିହତ ଶାସନାମ୍
ଉତ୍ତମୋତ୍ତମ ଆଗଚ୍ଛେ ଭବ ହ୍ରୀଂ ଫଟ୍ ସ୍ୱାହା !"

ନୀଳୋତ୍ପଳଙ୍କ କକ୍ଷରେ ଯାତ୍ରୀମାନେ ଦର୍ଶନବିଧି ସମାପ୍ତ କରି, ଘୃତଦୀପ ଜାଳି ଚାଲିଗଲେ । ପୋଡ଼ା ଘିଅ ଓ ସଳିତାର ଝାଞ୍ଜ ଗନ୍ଧରେ କକ୍ଷର ବାତାବରଣ ହଠାତ୍ ଭରି ହୋଇ ଉଠିଲା ।

କିନ୍ତୁ ଯାହାଙ୍କର ମଞ୍ଜିର ଧ୍ୱନି ଓ କଙ୍କଣନାଦ ଶୁଣିବା ପାଇଁ ନୀଳୋତ୍ପଳ ଉତ୍କର୍ଣ୍ଣ ହୋଇ ଅପେକ୍ଷା କରିଅଛନ୍ତି···କାହାନ୍ତି ସେ, ଶ୍ରେଷ୍ଠୀ ଶ୍ୱେତପର୍ଣ୍ଣର ବଧୂ ମଧୁବ୍ରତା ?

ଆଃ···ମଧୁବ୍ରତା !

ବିନିଦ୍ର ରଜନୀର ଅଗଣିତ ଜ୍ୱାଳାମୟ ମୂହୂର୍ତ୍ତରେ, ବେଦନାର ଭିଷ୍ଟୁର ଦଂଶନ ପରି, ମଧୁବ୍ରତାର ସ୍ମରଣରେ ସୁଦ୍ଧା, ଏକ ସୂତୀବ୍ର ବେଦନା ନୀଳୋତ୍ପଳଙ୍କର ସମଗ୍ର ସତ୍ତାକୁ କୁଣ୍ଠିତ କରିଦେଲା ।

ଧାରଣୀର ଆବୃତ୍ତି ଭୁଲି ନୀଳୋତ୍ପଳ ଅନୁଚ୍ଚ କଣ୍ଠରେ ସ୍ୱଗତୋକ୍ତି କଲପରି, କହି ଉଠିଲେ···"ମଧୁବ୍ରତା, ମଧୁବ୍ରତା !"

ଗତବାର ମଧ୍ୟ ଉପୋଷଥ ଦିବସରେ, ମଧୁବ୍ରତା ବିହାରକୁ ଆସି ନଥିଲେ । ତାହାର କେତେଦିନ ପୂର୍ବେ, ଶ୍ୱେତପର୍ଣ୍ଣ ଶ୍ରେଷ୍ଠୀର ଗୃହକୁ ଭିକ୍ଷାନ୍ନ ଉଦ୍ଦେଶ୍ୟରେ ଯାଇଁ ମଧୁବ୍ରତା ସହିତ ଥରେ ମାତ୍ର ସାକ୍ଷାତ ହୋଇଥିଲା । ମଧୁବ୍ରତା ସ୍ୱହସ୍ତରେ ସେଦିନ ଭିକ୍ଷାନ୍ନ ପରିବେଷଣ କରି-ଥିଲେ ! କିନ୍ତୁ କୌଣସି ଗୃହରୁ ଥରେ ଭିକ୍ଷାନ୍ନ ସଂଗ୍ରହ ପରେ, ଏକ ନିର୍ଦ୍ଦିଷ୍ଟ କାଳ ଅତିକ୍ରାନ୍ତ ନହେବା ପର୍ଯ୍ୟନ୍ତ ପୁଣି ସେଠାକୁ ଦ୍ୱିତୀୟବାର ଯିବା ଭିକ୍ଷୁ ପକ୍ଷରେ ନିଷିଦ୍ଧ ! ସେଥିପାଇଁ ଶ୍ୱେତପର୍ଣ୍ଣର ଅନ୍ତଃପୁରକୁ ଆଉଥରେ ଭିକ୍ଷାପାଇଁ ଯିବାର ଉପାୟ ନଥିଲା !

ଆଃ···ମଧୁବ୍ରତା ! ମଧୁବ୍ରତା !

ଗ୍ରୀଷ୍ମାନ୍ତଙ୍କା ନିଥର ସରସୀରେ ମୁଦ୍ରିତ କମଳ ପରି, ବେଦନା-ବିଧୁର ଦୁଇଟି ଆୟତ ଆଖି, ଦୁର୍ବାଦଳରେ ଶିଶିର ବିନ୍ଦୁ ପରି ସେଥିରେ ଏକ କରୁଣ ଉଜ୍ଜ୍ୱଳତା, ନୀଳୋତ୍ପଳଙ୍କର ମାନସଦୃଷ୍ଟିରେ ଭାସି ଉଠି ପୁଣି ମିଳାଇ ଗଲା !

"ଓଁ ନମଃ ସମନ୍ତ ବୁଦ୍ଧାନାଂ···"

ନାସ୍ତି···ନାସ୍ତି···ନାସ୍ତି···କୋକିଳର ସେହି ଅଶାନ୍ତ, ପ୍ରମତ୍ତ ରତିଭିକ୍ଷା, ଧାରଣୀ ଆବୃତ୍ତିର ଗୁଞ୍ଜରଣକୁ ପୁଣି ନୀରବ କରାଇ ଦେଇଥିଲା !

ଅର୍ହତ ଶାନ୍ତଦେବଙ୍କୁ ପଚାରିବା ପାଇଁ ଇଚ୍ଛା ହୁଏ, କୋକିଳର ଏହି ପ୍ରମତ୍ତ ରତିଭିକ୍ଷା ଓ ଧାରଣୀର ଆବୃତ୍ତି···କେଉଁଟି ଚିରନ୍ତନ ? ସବୁ ଧାରଣୀ, ସବୁ ସୂକ୍ତ, ସବୁ ତ୍ରିପିଟକ ମୁଖସ୍ଥ, ନୀରବ ହେବା ପରେ

ସୁଦ୍ଧା, ନିର୍ବାଣସ୍ଥାନ ଏବଂ ନିର୍ବୋଧ ପକ୍ଷୀଟିର ପ୍ରମତ୍ତ ରକ୍ତତୃଷ୍ଣା ତଥାପି ମୃତ୍ୟୁସ୍ଥାନ ହୋଇ ରହିଥିବ !

ତାହାହେଲେ ଆନନ୍ଦ ଓ ସୌନ୍ଦର୍ଯ୍ୟ ପରିହାର କରି, ଆତ୍ମନିଗ୍ରହ ଓ ତିତିକ୍ଷା ମଧ୍ୟରେ ନିର୍ବାଣର ଏ ସାଧନା କାହିଁକି ? କାହିଁକି ?

ମାଳୋପୃଳଙ୍କ କକ୍ଷର ପ୍ରାଚୀର-ଗହ୍ୱରରେ ରକ୍ତ-ପ୍ରସ୍ତର ନିର୍ମିତ ଗୋଟିଏ ଯୁଗନଦ୍ଧ, ଅବଲୋକିତେଶ୍ୱର ଓ ପ୍ରଜ୍ଞାପାରମିତା ମୂର୍ତ୍ତି ସ୍ଥାପିତ ଥିଲା । କେହି ଭକ୍ତ ଯାତ୍ରୀ ମୂର୍ତ୍ତିର ପାଦତଳେ, ଅଶୋକମଞ୍ଜରୀର ଗୋଟିଏ ସ୍ଫୁରିତ ସ୍ତବକ ନିବେଦନ କରି ଯାଇଥିଲେ । ପ୍ରଜ୍ଞାପାର-ମିତାଙ୍କ ସୁଗ୍ରକ୍ଷସ୍ତନାଗ୍ର, ଅବଲୋକିତେଶ୍ୱରଙ୍କ ସୁକଠିନ ବକ୍ଷକୁ ସୁଦ୍ଧା ଯେପରି ପୀଡ଼ନ କରୁଥିଲା । ଅବଲୋକିତେଶ୍ୱରଙ୍କ ମୁଖମଣ୍ଡଳରେ * ମୁଦିତ ଓ ଉପେକ୍ଷାର ୧ ସ୍ନିଗ୍ଧତା···ପ୍ରଜ୍ଞାଙ୍କ ମୁଖମଣ୍ଡଳ ରତିତୃପ୍ତିରେ କୋମଳ ।

* * *

ସେଦିନ ପତିମୋକ୍ଷ ଦିବସ ।

ରାତି ନିସ୍ତବଧ ହୋଇଥିଲା । ବିହାରର ଅନ୍ତେବାସୀମାନେ ଉପୋଷଥ ଦିବସର କ୍ଳାନ୍ତ ଓ ପତିମୋକ୍ଷ ବେଳେ ଆଚାର୍ଯ୍ୟ ଶାନ୍ତ-ଦେବଙ୍କଠାରେ ନିଜ ନିଜର ସ୍ଖଳନମାନ ଅକୁଣ୍ଠିତ ଭାବରେ ସ୍ୱୀକାର କରି, ପତିମୋକ୍ଷର ବ୍ୟବସ୍ଥା ଗ୍ରହଣ କରିବା ପରେ, ନିର୍ମଳ ଚିତ୍ତ ଓ ନିରୁପଦ୍ରବ ବିବେକରେ ନିଦ୍ରାଭିଭୂତ ହୋଇ ପଡ଼ିଥିଲେ ।

ଗୃଧ୍ରକୂଟ ବିହାରର ଦ୍ୱିତଳ ଶିଖରରେ, ନିଜ ପ୍ରକୋଷ୍ଠ ସମ୍ମୁଖସ୍ଥ ଏକ ମୁକ୍ତ; ଚତୁଷ୍କୋଣାକାର ଅଳିନ୍ଦରେ ଗୋଟିଏ ଉଚ୍ଚାସନ ଉପରେ ଆଚାର୍ଯ୍ୟ ଶାନ୍ତିଦେବ, ତଥାପି ଧ୍ୟାନାସୀନ ପରି ବସିଥିଲେ । ପୂର୍ଣ୍ଣିମା ତିଥିର ଜ୍ୟୋତ୍ସ୍ନାପ୍ଲାବନ ମଧ୍ୟରେ, ଜ୍ୟୋତ୍ସ୍ନାଚ୍ଛନ୍ନ ଶାନ୍ତିଦେବ, ଗୋଟିଏ ନିଶ୍ଚଳ ଶିଳାମୂର୍ତ୍ତି ପରି ଦିଶୁଥିଲେ । ବିହାରର ଆମ୍ରବାଟିକାରେ ବୃକ୍ଷର

* ଆନନ୍ଦ, ୧ ପ୍ରଶାନ୍ତ ।

ଗ୍ଲାସ୍‌ସବୁ, ରାତିର ବିନିଦ୍ର ପ୍ରହରରେ ଶତ ବେଦନାର ସ୍ମୃତି ପରି ବିଚ୍ଛୁରିତ ହୋଇ ପଡ଼ିଥିଲା । ଗୋଟିଏ ଚିନ୍ତା ଉପରେ ଅଶାନ୍ତ ଚକାର, ବେଳେ ବେଳେ ଆବେଗ ଓ କାମନାବିହୀନ କ୍ଷମାଶୀ ଗତିକୁ ଶୀତଳ ସୁଷୁପ୍ତିରୁ ଜାଗ୍ରତ କରିବା ପାଇଁ ଚେଷ୍ଟା କରି, ଯେପରି ବାରମ୍ବାର ବିଫଳ ହେଉଥିଲା ।

ମାଳୋପୂଳଙ୍କ ପାଦଶଦ୍ଦରେ ଶାନ୍ତଦେବ ଆଖି ମେଲି, ଗ୍ଲାସ୍‌ଗ୍ଲାଳକାର ମଧ୍ୟକୁ ଗୃହିଁଲେ । ଶୀଳ, ସଂଯମ, ସାଧନା ଓ ଅଧ୍ୟୟନରେ ଭିକ୍ଷୁଶ୍ରେଷ୍ଠ ମାଳୋପୂଳଙ୍କର ପତନମୋକ୍ଷ କରିବା ପାଇଁ କୌଣସି ସ୍ଖଳନ ବା ବିଚ୍ୟୁତି ଥାଇପାରେ, ଏ ଧାରଣା ଆଗୁପଁ୍ୟ ଶାନ୍ତଦେବଙ୍କର ନଥିଲା ।

ସେ ତେଣୁ ପଚାରିଲେ...

"ଭଦନ୍ତ ମାଳୋପୂଳ, ତୁମ୍ଭେ ଏତେ ରାତିରେ ?"

ମାଳୋପୂଳ ହଠାତ୍ କୌଣସି ଉତ୍ତର ଦେଇନପାରି ନୀରବ ରହିଲେ । ସ୍ଖଳନର ସ୍ୱୀକୃତି ପାଇଁ, ତାଙ୍କର ଯେପରି କଣ୍ଠରୋଧ ହେଉଥିଲା ।

ମାଳୋପୂଳ ଅବଶେଷରେ ଅକୁଣ୍ଠିତ ସ୍ୱରରେ ସ୍ୱୀକାର କରି-ଗଲେ...ଶ୍ରେଷ୍ଠୀ ଶ୍ୱେତପର୍ଣ୍ଣର କୁଳବଧୂ ମଧୁବ୍ରତା...ପ୍ରୋଷିତଭର୍ତ୍ତୃକା । ଶ୍ରେଷ୍ଠୀପୁତ୍ର ସାଧବ ନଳନାକ୍ଷ, ବିବାହର ମଧୁଯାମିନୀପରେ ପାଟଳୀ-ପୁତ୍ରରୁ ଅନ୍ୟ ସାଧବମାନଙ୍କ ସହିତ ଗୋଟିଏ ବୋଇତରେ ଗଙ୍ଗା ବକ୍ଷରେ ସମୁଦ୍ର ଯାତ୍ରା କରିଥିଲା । ସେ ଆଜକୁ କେତେବର୍ଷ ତଳେ । ସେହିଦିନୁ ନଳନାକ୍ଷ ନିରୁଦ୍ଦିଷ୍ଟ । ପାଟଳୀପୁତ୍ରର କେହି କେହି ବିଦେଶପ୍ରତ୍ୟାଗତ ସାଧବ କହନ୍ତି, ଜଳଦସ୍ୟୁମାନଙ୍କର ଆକ୍ରମଣରେ ନଳନାକ୍ଷ ନିହତ ହୋଇଅଛି, ଆଉ କେହି କେହି କହନ୍ତି, କେଉଁ ଏକ ଦ୍ୱୀପରେ ନଳନାକ୍ଷ ଏକ ସୁନ୍ଦରୀ ବିଦେଶିନୀର ପାଣିଗ୍ରହଣ କରି ସେଠାରେ ନୂତନ ସଂସାର ଗଢ଼ିଅଛି ! ନଳନାକ୍ଷର ପ୍ରତ୍ୟାବର୍ତ୍ତନ ପାଇଁ ଏକ ନିର୍ଦ୍ଦିଷ୍ଟ କାଳ ଅପେକ୍ଷା କରିବା ପରେ, ତାହାକୁ ନଷ୍ଟ ଅଥବା ମୃତରୂପେ ବିବେଚନା କରି, ଶ୍ୱେତପର୍ଣ୍ଣ ସାମାଜିକ ବିଧାନ

ଅନୁସାରେ, ପ୍ରେତକର୍ମ ସମାପ୍ତ କରିଅଛୁ । ନଳନାଗ୍ର ମୃତ ବାଳ ସମସ୍ତେ ଗ୍ରହଣ କରିସାରିଥିଲେ ହେଁ, ମାଳୋପୂଳର ପ୍ରତ୍ୟାବର୍ତ୍ତନର ବିଶ୍ୱାସ, ମଧୁବ୍ରତାର ପ୍ରାଣରେ, ବାମରଗୃହର ପ୍ରଦୀପ ପରି ତଥାପି ଅମଳନ ଦ୍ୟୁତିରେ ନିଷ୍ପନ୍ଦ ରହିଅଛି ।

* * *

ସେଦିନ ହେମନ୍ତର ଏକ କୋମଳ ରୌଦ୍ରତପ୍ତ ମଧ୍ୟାହ୍ନ । ନିୟମିତ ସୀତରେ, ମଧ୍ୟାହ୍ନର ଛାୟା ଅଙ୍ଗୁଳିପରିମିତ ଅପସୃତ ହେବା ପୂର୍ବରୁ ଶ୍ରେଷ୍ଠୀ ଶ୍ୱେତପର୍ଣ୍ଣର ଅନ୍ତଃପୁରରେ ଭୋଜନ ସମାପ୍ତ କରି ଭିକ୍ଷୁ ମାଳୋପୂଳ ବିଦାୟ ନେଉଥିଲେ । ମଧୁବ୍ରତା ଅନ୍ତଃପୁରର ଏକ ଗବାକ୍ଷର ନେପଥ୍ୟରୁ ଅସ୍ଫୁଟ କଣ୍ଠରେ ହଠାତ୍ ଡାକଲେ··· "ଭଦନ୍ତ" ! (ସେଦିନର ଆମ୍ର ବାଥିକାରେ କୋକିଳର କୁହୁଧ୍ୱନି ଅଥବା ଏହିପରି ମୂର୍ଚ୍ଛିତ, ଜ୍ୟୋତ୍ସ୍ନା-ପୁଲକିତ ରାତ୍ରିରେ, ନିଃସଙ୍ଗ ଆକାଶ ପଥରେ, ଝିଙ୍କିଭର ଝଙ୍କାର, ଗବାକ୍ଷର ନେପଥ୍ୟରେ କଙ୍କଣ ଓ ମଞ୍ଜିରର କଳଧ୍ୱନି ସହିତ, ମଧୁବ୍ରତାଙ୍କର ସେହି ଓଷ୍ଠରୁ ବ୍ରୀଡ଼ା-କୁଣ୍ଠିତ ଆହ୍ୱାନର ପ୍ରତିଧ୍ୱନି ମାଳୋପୂଳଙ୍କର ମର୍ମେ ମର୍ମେ ଅନୁରଣିତ କରିଦିଏ । )

ମାଳୋପୂଳଙ୍କର ସମ୍ମୁଖକୁ ଆସିଲେ ମାଳଚେଳପରିହିତା; କୁସୁମିତା ଅପରାଜିତା ବ୍ରତତି ପରି, ଉଜ୍ଜଳ ଶ୍ୟାମବର୍ଣ୍ଣା, କୃଶାଙ୍ଗୀ ମଧୁବ୍ରତା । ଅଲକ୍ତକରଞ୍ଜିତ, ମଞ୍ଜିରବେଷ୍ଟିତ ଦୁଇ ଚରଣ ଯେପରି ପ୍ରିୟମିଳନର ସଙ୍ଗୀତରେ ମୁର୍ଚ୍ଛନାମୟ । କ୍ଷୀଣ କଟୀ ତଳେ ବର୍ତ୍ତୁଳ ଜଘନ, ପୁଣି କାଞ୍ଚଳର କଠୋର ବନ୍ଧନ ତଳେ ପୀନସ୍ତନ-ବକ୍ଷୁବଦ୍ଧ ବକ୍ଷର ଲୀଳାୟିତ ରେଖା, ପୀଡ଼ନ ପାଇଁ ଯେପରି ଉଦ୍‌ବେଳିତ ହୋଇ ଉଠିଥିଲା । ଓଲଟ ପଦ୍ମଦଳ ପରି ଦୁଇ ଆୟତ ନେତ୍ରରେ କିନ୍ତୁ, ଏକ ଛାୟାଚ୍ଛନ୍ନ ହୃଦରର କରୁଣ ଉଦାସୀନତା । ମାଳୋପୂଳ ଆତ୍ମବିସ୍ମୃତ ହୋଇ ପଡ଼ିଥିଲେ ।

ଅନ୍ତଃପୁରର ପାରାବତ ପାଳିକାରେ, ପାରାବତମାନଙ୍କର କାମୋନ୍ମତ୍ତ କୂଜନ ବ୍ୟତୀତ, ସେହି ଅଳସ-ମଧ୍ୟାହ୍ନରେ ଆଉ ଅନ୍ୟ ଶବ୍ଦ ନଥିଲା ।

ମଧୁବ୍ରତାଙ୍କର ଗୋଟିଏ ଗଭୀର ଦୀର୍ଘନିଃଶ୍ୱାସରେ, ମୀଳୋପୂଳଙ୍କ ଆତ୍ମବିସ୍ମୃତି କଟିଗଲା । ସେ ମଧୁବ୍ରତାଙ୍କର ଦୁଇ ଆଖି ଭିତରକୁ ଚାହିଁଲେ । ଉଲଟ ପଦ୍ମଦଳ ପରି ତାଙ୍କର ଦୁଇ ଆଖିରେ, କେତେ ବିନ୍ଦୁ ଅଶ୍ରୁ, ଏକ ଅପାପବିଦ୍ଧ ସୁନ୍ଦରିମାରେ, ମଧୁବ୍ରତାଙ୍କର ମୁଖମଣ୍ଡଳକୁ ଯେପରି ବିଧୌତ କରିଥିଲା । ରକ୍ତରଂଜିତ ତାଙ୍କର ଦୁଇ ଓଷ୍ଠାଧର ଏକ ଅବ୍ୟକ୍ତ ପ୍ରଶ୍ନରେ ଯେପରି କମ୍ପିତ ହୋଇ ଉଠୁଥିଲା ।

ମୀଳୋପୂଳ ସମ୍ବେଦନଶୀଳ କଣ୍ଠରେ ପଚାରିଲେ···"କଣ କହିବ ଭଦ୍ରେ ?"

ସଲଜ୍ଜ ସଙ୍କୋଚରେ ମଧୁ ବ୍ରତା, ଉତ୍କ୍ରମ ଶତଦଳ ପରି ଆରକ୍ତିମ ବାମ କରତଳ, ମୀଳୋପୂଳଙ୍କ ଆଡ଼େ ପ୍ରସାରିତ କରି, ବ୍ରୀଡ଼ାକୁଣ୍ଠିତ କଣ୍ଠରେ କହିଲେ, "ମୋର କରଗଣନା କରି କହି ପାରିବେ ଶ୍ରମଣ ! ସେଦିନ ମଧୁଯାମିନୀ ଶେଷରେ, ଗଙ୍ଗାବକ୍ଷରେ ଅସ୍ତଚନ୍ଦ୍ର ସହିତ ଯାହାଙ୍କୁ ବିଦାୟ ଦେଇଥିଲି, ସେ ପୁଣି ଫେରିବେ କି ନାହିଁ ?"

ମନ୍ତ୍ର-ମୁଗ୍ଧ ପରି ମୀଳୋପୂଳ, ମଧୁବ୍ରତାଙ୍କର ପ୍ରସାରିତ ବାମ-କରପୃଷ୍ଠକୁ ନିଜର ହାତରେ ଧରି ସମ୍ପୂର୍ଣ୍ଣ ଆତ୍ମବିସ୍ମୃତ ହୋଇ ପଡ଼ିଲେ । ଶ୍ରମଣମାନଙ୍କ ପକ୍ଷରେ ଏ ପ୍ରକାର ସାମୁଦ୍ରିକ ବିଦ୍ୟା, କରଗଣନା ଓ ଅଭିଚାର ପ୍ରଭୃତି ଶିକ୍ଷା କରିବା ନିଷିଦ୍ଧ । ତେଣୁ ମଧୁବ୍ରତାଙ୍କର କର-ଗଣନା କରି, ତାଙ୍କର ପ୍ରଶ୍ନର ଉତ୍ତର ଦେବା ମୀଳୋପୂଳଙ୍କ ପକ୍ଷରେ ସମ୍ଭବ ନ ଥିଲା । ତଥାପି ସେ ସେହି ମୂର୍ଚ୍ଛିତ ମଧ୍ୟାହ୍ନରେ ମଧୁବ୍ରତାଙ୍କର ପେଲବ କରତଳକୁ ନିଜର ଦୁଇ ହାତରେ ତୋଳି ଧରିଥିଲେ । ଦଣ୍ଡ, ଚୀବର ଓ ଅକ୍ଷମାଳାର ନିତ୍ୟ ସ୍ପର୍ଶରେ, ମୀଳୋପୂଳଙ୍କର ଦୁଇ ହାତର କ୍ଷୁଧିତ ସ୍ନାୟୁତନ୍ତ୍ରୀମାନ ଯେପରି ଏକ ନବଜୀବନର ପୁଲକରେ ପୁଲକିତ ହୋଇ ଉଠିଥିଲା । ଏକ ସମ୍ମୋହନ ମଧ୍ୟରେ ମୀଳୋପୂଳ ଆତ୍ମବିସ୍ମୃତ ହୋଇ ପଡ଼ିଥିଲେ । ଏକ ଅଚଳ ମହାଶୂନ୍ୟତା ମଧ୍ୟରେ ମୀଳୋପୂଳଙ୍କ ସମଗ୍ର ସତ୍ତା ଯେପରି ଲୁପ୍ତ ହୋଇ ପଡ଼ିଥିଲା । ମୀଳୋପୂଳ, ଶତ ସାଧନା ଓ

ସଂଯମ ମଧ୍ୟରେ ସୁଦ୍ଧା ଯେଉଁ ଅନିର୍ବଚନୀୟ, ଅଦୃଷ୍ଟ ଶୂନ୍ୟତାର ଅନୁଭବ ପାଇନଥିଲେ, ଆଜି ଏହି ଅଳସ ପାରାବତକୂଜିତ ମଧ୍ୟାହ୍ନରେ, ତାହା ଯେପରି ମାଳୋପ୍ପଳଙ୍କର ସମଗ୍ର ସତ୍ତାକୁ ତିଳେତିଳେ ଆଚ୍ଛନ୍ନ କରିଦେଲା ।

ଏହି ତ ସେହି ଅନିର୍ବଚନୀୟ ମହାଶୂନ୍ୟ, ଯାହା ମଧ୍ୟରେ ଦେହ ଓ ଆତ୍ମା, ମାଂସ ଓ ପ୍ରାଣ, ରୂପ ଓ ଅରୂପ, ସବୁ ନିଶ୍ଚିହ୍ନ ହୋଇଯାଏ । ଏହି ତ ମହାସୁଖ, ଯାହା ମଧ୍ୟରେ ଦେହ ଦେହାତୀତ ହୋଇ, ବିଦେହରେ ପରିଣତ ହୁଏ । ଏହି ତ ମହାନିର୍ବାଣ । ପ୍ରଜ୍ଞାଙ୍କର ପୀନସ୍ତନାଗ୍ରବଦ୍ଧ ଅବଲୋକିତେଶ୍ୱରଙ୍କ ମୁଖମଣ୍ଡଳରେ ମୁଦିତ ଓ ଉପେକ୍ଷାର ବ୍ୟଞ୍ଜନା, ମାଳୋପ୍ପଳ ନିଜର ମୁଖମଣ୍ଡଳରେ ସୁଦ୍ଧା ଅନୁଭବ କରି ପାରୁଥିଲେ ।

ମାଳୋପ୍ପଳଙ୍କର ଗଭୀର, ଉଷ୍ଣ ପ୍ରଶ୍ୱାସର ଜ୍ୱାଳା ମଧୁବ୍ରତାଙ୍କର ପ୍ରସାରିତ କରତଳକୁ ଯେପରି ଦଗ୍ଧ କରି ଦେଉଥିଲା । ସେ ଧୀରେ ଧୀରେ, ମାଳୋପ୍ପଳଙ୍କ ଦୁଇ ହାତରୁ ନିଜର ପ୍ରସାରିତ କରତଳ କାଢ଼ି ଆଣି; ଅଞ୍ଚଳ ମଧ୍ୟରେ ତାହାକୁ ଆବୃତ୍ତ କରିଦେଲେ । ଘନକୃଷ୍ଣ ପକ୍ଷ୍ମ-ରେଖା ମଧ୍ୟରେ, ମଧୁବ୍ରତାଙ୍କର ଦୁଇ ଆପ୍ଳୁତ ନେତ୍ରରେ ଉତ୍କଣ୍ଠିତ ଦୃଷ୍ଟି ମୁଦ୍ରିତ ହୋଇ ଆସିଲା ।

ମାଳୋପ୍ପଳ ପୁଣି ପୂର୍ବର ଅବସ୍ଥାକୁ ଫେରିଆସିଲେ; ମାତ୍ର ମଧୁ-ବ୍ରତା, ସେଠାରେ ସେତେବେଳକୁ ନଥିଲେ । ପାରାବତ ପାଳିକାରେ, ପାରାବତମାନଙ୍କର ଅଳସକୂଜନ ମଧ୍ୟରେ, ମାଳୋପ୍ପଳଙ୍କର ସମ୍ମୋହନ ଧୀରେ ଧୀରେ କଟି ଆସୁଥିଲା ।

ଶାନ୍ତିଦେବ ପୂର୍ବପରି ନିଶ୍ଚଳ ନୀରବତାରେ ବସିଥିଲେ । ଗୋଟିଏ ଚିଚିଭର ଅଶାନ୍ତ ଚିତ୍କାର, ସେହି ନିର୍ବୈୟକ୍ତିକ ଜ୍ୟୋତ୍ସ୍ନାରାଶିକୁ ଏକାନ୍ତ ନିଃସଙ୍ଗ ଓ ଗମ୍ଭୀର କରି ଦେଉଥିଲା ।

ମାଳୋପ୍ପଳ କହିଲେ, "ସେହିଦିନୁ ମୋର ଶରୀର ସକଳ ପ୍ରଶାନ୍ତି ଲୋପ ପାଇଅଛି, ମୋର ସମସ୍ତ ସଂଯମ ଓ ସାଧନା ସ୍ଖଳିତ ହୋଇ ଅଛି । ଦେହର କ୍ଷୁଧାରେ ଆତ୍ମାର ଅଗ୍ନିପରୀକ୍ଷା ନିଷ୍ଫଳ ହୋଇଅଛି ।

କିନ୍ତୁ ଭଗବନ୍, ମଧୁବ୍ରତାର ସେହି ପେଲବ, ରକ୍ତିମ ବାମ କରତଳ ପୀଡ଼ନ କଲାବେଳେ, ଏକ ଅନିର୍ବଚନୀୟ ମହାସୁଖ ମଧ୍ୟରେ ମୁଁ ମୁହୂର୍ତ୍ତିକ ପାଇଁ ନିର୍ବାଣର ଯେଉଁ ମହାଶୂନ୍ୟତା ଉପଲବ୍ଧି କରିଥିଲି, ତାହା କଣ ମିଥ୍ୟା ?"

ଶାନ୍ତିଦେବ ସେହିପରି ନୀରବରେ ଧ୍ୟାନାସୀନ ଏକ ବୁଦ୍ଧମୂର୍ତ୍ତି ପରି ବସିଥିଲେ । ନିଃସଙ୍ଗ ଆକାଶ ପଥରେ, ସେହି ଅତୃପ୍ତ ଟିଟ୍ଟିଭର ଅଶାନ୍ତ ଚିତ୍କାର ମଧ୍ୟରେ, ନୀଳୋତ୍ପଳଙ୍କର ଜିଜ୍ଞାସା ଯେପରି ବାରମ୍ବାର ପ୍ରକାଶିତ ହୋଇ ପୁଣି ନୀରବ ହୋଇ ଯାଉଥିଲା ।

ଶାନ୍ତିଦେବ କହିଲେ···"ଭନ୍ତେ, ତଥାଗତ ଦୁଃଖର ନିଦାନ କହିଛନ୍ତି, ରୂପରୁ ତୃଷ୍ଣା, ତୃଷ୍ଣାରୁ ବେଦନା, ବେଦନାରୁ ଦୁଃଖ । ତେଣୁ ଦୁଃଖ ଜୟ ପାଇଁ ରୂପ ଓ ତୃଷ୍ଣାର ଜୟ ଅନିବାର୍ଯ୍ୟ । ଦୁଃଖର ଜୟ ହିଁ ନିର୍ବାଣ, ଜନ୍ମ ଓ ପୁନର୍ଜନ୍ମର ନାଗବନ୍ଧନରୁ ମହାମୁକ୍ତି ।"

ଶାନ୍ତିଦେବ ପୁଣି ପୂର୍ବର ନିଶ୍ଚଳ ମୌନତା ମଧ୍ୟରେ ଅବଲୁପ୍ତ ହୋଇ ପଡ଼ିଲେ । ନୀଳୋତ୍ପଳ ପ୍ରାଚୀରର ସ୍ତୁପ୍ପା ସହିତ ମିଶି ଏକ ସ୍ତୁପ୍ପା ପରି ଠିଆ ହୋଇଥିଲେ । ସେହି ଅଶାନ୍ତ ଟିଟ୍ଟିଭ ଏକ ଅତୃପ୍ତ, ତୃଷ୍ଣାବଦ୍ଧ ଆତ୍ମା ପରି, କେତେବେଳେ ଊର୍ଦ୍ଧ୍ବକୁ ଉଠିଯାଇଁ, ଆଉ କେତେବେଳେ ଆମ୍ର ବାଥିକାର ସ୍ତୁପ୍ପାବନ ଶୀର୍ଷକୁ ଖସି ଆସି, ରହିର ସ୍ପନ୍ଦିତ ସ୍ନାୟୁରେ, କାମନାର ଏକ ପ୍ରମତ୍ତ ଆବେଗ ପରି, ଜ୍ୟୋତ୍ସ୍ନାସ୍ନାତ ଆକାଶରେ ଶତ ଅଶାନ୍ତ ତରଙ୍ଗ କାଟି କାଟି ଉଡ଼ି ବୁଲୁଥିଲା ।

ବିବସନା ଉର୍ବଶୀର ଅଙ୍ଗବାସ ପରି, ଶୁକ୍ଳପକ୍ଷର ମୁକୁଳ-ସ୍ନିଗ୍ଧ ଜ୍ୟୋତ୍ସ୍ନା ବିଚ୍ଛୁରିତ ହୋଇ ପଡ଼ିଥିଲା । ନୀଳୋତ୍ପଳ ଜ୍ୟୋତ୍ସ୍ନାର ସେହି ପ୍ଲାବନ ମଧ୍ୟରେ, ଆତ୍ମବିସ୍ମୃତ ହୋଇ ପଡ଼ିଥିଲେ । ତଥାଗତ କହିଛନ୍ତି, ଦୁଃଖର ହେତୁ ରୂପ, ନିର୍ବାଣ ପଥରେ ପ୍ରତିବନ୍ଧକ । କିନ୍ତୁ ଏହି ଅଶରୀରୀ ଜ୍ୟୋତ୍ସ୍ନାର ଭୁବନବିମୋହିନୀ ରୂପ ଓ ସୌନ୍ଦର୍ଯ୍ୟ ମଧ୍ୟରେ, ଅନାହତ ଆନନ୍ଦର ଅନୁଭବ, ସବୁ ତୃଷ୍ଣାକୁ ପ୍ରଶମିତ କରି, ଯେଉଁ ବେଦନାର ସଞ୍ଚାର କରୁଅଛି, ତାହା ତ ଦୁଃଖକୁ ଦୁଃଖାତୀତ

କରେ । ମାଲୋପୃଲ ତାହା ସ୍ପଷ୍ଟ ଅନୁଭବ କରି ପାରୁଅଛନ୍ତି । ସେଦିନ, ସେହି ନିର୍ଜନ, ପାରାବତ-କୂଜିତ ମଧ୍ୟାହ୍ନରେ ମଧୁବ୍ରତାଙ୍କର ବାମ କରତଳ, ଦୁଇ ହାତରେ, ଆବେଗକମ୍ପିତ ହସ୍ତରେ ଉଠାଇ ନେବାବେଳେ, ଏହିସମର ଏକ ଅନନୁଭୂତ ମାଲୋପୃଲଙ୍କୁ ନିର୍ବେଦଗ୍ରସ୍ତ କରି ଦେଇଥିଲା ।

ତାହା କେବଳ ମୁହୂର୍ତ୍ତକ ପାଇଁ ।

ମଧୁବ୍ରତାର ସାନ୍ନିଧ୍ୟ ପାଇଁ ଏକ ଅନିର୍ବଚନୀୟ ବେଦନା, ସେହି ଶୀତଳ ଜ୍ୟୋତ୍ସ୍ନାରାଶିକୁ ବିଦଗ୍ଧ କରି ଦେଇଥିଲା ।

ଶାନ୍ତିଦେବ ସୁପ୍ତୋତ୍ଥିତ ପରି କହିଲେ...“ଭନ୍ତେ, ରାତ୍ରି ଦ୍ୱିତୀୟ ପ୍ରହର ଉତ୍ତୀର୍ଣ୍ଣ ପ୍ରାୟ । ଚିତ୍ତମୋକ୍ଷର ବିଧାନ ରୂପେ ତୁମ୍ଭଙ୍କୁ ତିନି ସପ୍ତାହ ଶ୍ମଶାନରେ ଅଶୁଭ-ଭାବନା ଅଭ୍ୟାସ କରିବା ପାଇଁ ପଡ଼ିବ ।”

ମାଲୋପୃଲ ବିହାର-ଶିଖରରୁ ତାଙ୍କର ପ୍ରକୋଷ୍ଠକୁ ଫେରି ଆସିଲେ । ଅବଲୋକିତେଶ୍ୱର ଓ ପ୍ରଜ୍ଞାଙ୍କ ପୀଠତଳେ ଦୀପ ବର୍ତ୍ତିବେଳୁ ନିର୍ବାପିତ ହୋଇ ସାରିଥିଲା । ଅକୁଣ୍ଠିତ ଜ୍ୟୋତ୍ସ୍ନାର ଗୋଟିଏ ତିର୍ଯ୍ୟକ ଫଳକ, ପ୍ରକୋଷ୍ଠର ପାଷାଣ-ଚତ୍ୱର ଉପରେ ମୂର୍ଚ୍ଛିତ ହୋଇ ପଡ଼ିଥିଲା । ଝିଣ୍ଟିଭର ସେହି ଅଶାନ୍ତ ଚିତ୍କାର, ରାତିର ପବନରେ ଆମ୍ର ମୁକୁଳର ବିହ୍ୱଳିତ ସୁରଭି, ମାଲୋପୃଲଙ୍କୁ ସମ୍ପୂର୍ଣ୍ଣ ଅବ୍ୟବସ୍ଥିତ କରି ଦେଇଥିଲା ।

ମାଲୋପୃଲଙ୍କର ମନେ ପଡ଼ିଯାଉଥିଲା, “ମହାନିର୍ବାଣତନ୍ତ୍ର”ର ଗୋଟିଏ ସୂତ୍ର······

ସେଦିନ ପ୍ରବ୍ରଜ୍ୟା ପଥରେ, ପଥଶ୍ରାନ୍ତ, କ୍ଷୁଧାର୍ତ୍ତ ତଥାଗତ ମଲ୍ଲମାନଙ୍କର କୁଶୀନର ଜନପଦର ଉପକଣ୍ଠସ୍ଥିତ ଶାଲବନରେ ଉପନୀତ ହେଲେ ।

ନବବସନ୍ତ ସେଦିନ, ରକ୍ତପୁଷ୍ପ ଓ ପଲ୍ଲବରେ, ଶାଲବୀଥିକାର ଶାଖାରେ ଶାଖାରେ, ମଦନୋତ୍ସବର ଏକ ବିଚିତ୍ରିତ, ବର୍ଣ୍ଣାଢ୍ୟ ସମାରୋହ

ରଚନା କରି ଯାଉଥିଲା । ଶାଳବୀଥିକାର ପେଲବ ମର୍ମଭୂମିରୁ ଗୋଟିଏ କୋକିଳର ଅଶାନ୍ତ କୂଜନ, ସେହି ନିଭୃତ ବନଭୂମିକୁ ଯେପରି ଉପେକ୍ଷା ଓ ନିଗ୍ରହର ପାଣ୍ଡୁର ଶଯ୍ୟା ଛାଡ଼ି ଉଠିବା ପାଇଁ ଡାକି ଡାକି ନୀରବ ହୋଇ ଯାଉଥିଲା । ତାହାର ଅଶାନ୍ତ ପ୍ରତିଧ୍ୱନି ଶାଳବୀଥିକାର ଶାଖାରେ ଶାଖାରେ, ପତ୍ରେ ପତ୍ରେ, ଏକ ବ୍ୟଥାତୁର ଆଲୋଡ଼ନ ସୃଷ୍ଟି କରି ଯାଉଥିଲା । ମଧୁଲୋଭୀ ଭ୍ରମରମାନଙ୍କର ଅତୃପ୍ତ ଗୁଞ୍ଜନ, ସେହି ଆହ୍ୱାନ ଓ ଆଲୋଡ଼ନକୁ ଯେପରି ଏକ ପ୍ରମତ୍ତତାରେ ମୁଖରିତ କରି ଦେଉଥିଲା ।

ସେହି ମୁହୂର୍ତ୍ତରେ ନାରୀର ଚିନ୍ତା ଆନନ୍ଦଙ୍କ ପ୍ରାଣକୁ କାହିଁକି ଉଦ୍‌ବେଳିତ କଲା କେଜାଣି, ଆନନ୍ଦ ଜିଜ୍ଞାସା କଲେ···"ଭଗବନ, ନାରୀ ସହିତ ଭିକ୍ଷୁମାନଙ୍କର କି ସମ୍ପର୍କ ରହିବ ?"

ତଥାଗତ ଉତ୍ତର ଦେଲେ···"ନାରୀର ସାମୀପ୍ୟ ପରିହାର କରିବା ପ୍ରତ୍ୟେକ ଭିକ୍ଷୁର କର୍ତ୍ତବ୍ୟ ।"

ଆନନ୍ଦ ପଚାରିଲେ···"କିନ୍ତୁ ଯଦି ହଠାତ କେଉଁ ସୁକେଶିନୀ, ସୁହାସିନୀ, ସୁବେଶା ନାରୀ ସହିତ ଭିକ୍ଷୁର ସାକ୍ଷାତ ହୁଏ ?"

ତଥାଗତ ଉତ୍ତର ଦେଲେ···"ଚିତ୍ତଚାଞ୍ଚଲ୍ୟ ଦମନ କରି ନିଜକୁ ସଂଯତ ରଖିବ !"

ଆନନ୍ଦ ପୁଣି ପଚାରିଲେ···"ଭଗବନ୍, ନାରୀ ସହିତ ଭିକ୍ଷୁମାନଙ୍କର ତା' ହେଲେ କି ସମ୍ପର୍କ ରହିବ ?"

ତଥାଗତ ଉତ୍ତର ଦେଲେ···"ନାରୀ ସହିତ ଭିକ୍ଷୁମାନଙ୍କର ବାକ୍ୟାଳାପ ନିଷିଦ୍ଧ ।"

ଆନନ୍ଦ ତଥାପି ପଚାରିଲେ···"ଯଦି କୌଣସି ସୁଭାଷିଣୀ ନାରୀ କୌଣସି ଭିକ୍ଷୁ ସହିତ ଆଳାପ ଆରମ୍ଭ କରନ୍ତି ?"

ତଥାଗତ କ୍ଳାନ୍ତକଣ୍ଠରେ ଉତ୍ତର ଦେଲେ···"ନୀରବରେ ଅଧୋମୁଖ ହୋଇ ସେଠାରୁ ପ୍ରତ୍ୟାବର୍ତ୍ତନ କରିବ !"

ପ୍ରକୋଷ୍ଠର ମୁକ୍ତଦ୍ୱାର ପଥରେ, ହିରଣ୍ୟବତୀର ଊର୍ଦ୍ଧ୍ୱରେ, ଅସ୍ତଗାମୀ ଚନ୍ଦ୍ରର ଶେଷ କାକଜ୍ୟୋତ୍ସ୍ନା ମଳିନମୁଖୀ ମଧୁବ୍ରତାର, ବେଦନା-

ଭୁରୁ ଦୁଇ ଆସ୍ଥିତ ଆଖି ଉପରେ, ଅବନତ ପକ୍ଷ୍ମରେଖା ପରି କ୍ରମେ ମୁଦ୍ରିତ ହୋଇ ଆସୁଥିଲା । ନିସ୍ତବ୍ଧ ନିଶାର୍ଦ୍ଧର ମର୍ମରିତ ପବନ, ମଧ୍ୟ ରାତ୍ରିର ଦୀର୍ଘଶ୍ୱାସରେ ଯେପରି କ୍ଷୁଭିତ ହୋଇ ଉଠୁଥିଲା । ମୌଲୋପୁତ୍ର ଉନ୍ମାଦ ପରି ତଳର ଶିଳାଶଯ୍ୟା ଉପରୁ ଉଠିପଡ଼ି, ପ୍ରକୋଷ୍ଠର ଦ୍ୱାର ବନ୍ଦ କରିଦେଲେ ।

( ଦୁଇ )

ରାଜଗୃହର ସ୍ତୁପସ୍ଥାନ, ଗୁଳ୍ମସ୍ଥାନ, ପର୍ବତମାଳାବେଷ୍ଟିତ ଗୃଧ୍ରକୂଟ ଶିଖରର ପାଦଦେଶରେ ବିସ୍ତୀର୍ଣ୍ଣ ଶ୍ମଶାନଭୂମି । ସେହି ଶ୍ମଶାନରେ ମୌଲୋପୁତ୍ର ଏକ ପ୍ରମତ୍ତ କାପାଳିକ ପରି, ଇତସ୍ତତଃ ବିକ୍ଷିପ୍ତ ନର-କରୋଟୀ, ଅସ୍ଥି, କଙ୍କାଳ ଓ ଛିନ୍ନ, ଜୀର୍ଣ୍ଣ ବସ୍ତ୍ର, ତନ୍ନତନ୍ନ କରି ପର୍ଯ୍ୟବେକ୍ଷଣ କରୁଥିଲେ, ଯେପରି ସୃଷ୍ଟିର ଶ୍ରେଷ୍ଠ ଅନୁଦ୍‌ଘାଟିତ ରହସ୍ୟର ଅର୍ଥ, ସେହି ଜଞ୍ଜାଳ ମଧ୍ୟରେ ଆବଦ୍ଧ ରହିଥିଲା । କ୍ଷୌରକର୍ମ ଅଭାବରେ ମସ୍ତକ ବନ୍ୟ କେଶରାଶି ଓ ଗଣ୍ଡଦେଶ ଶ୍ମଶ୍ରୁରେ କଣ୍ଟକିତ ହୋଇ ପଡ଼ିଥିଲା । ପ୍ରଶାନ୍ତ କୋମଳ ମୁଖମଣ୍ଡଳ, ଗଭୀର ରେଖାବଳୀରେ କୁଟୀଳ ଦିଶୁଥିଲା । ଦେହର ଚର୍ମ ଶୁଷ୍କମାଂସ ପରି କଠିନ ଓ ନିଷ୍ପ୍ରାଣ ଦିଶୁଥିଲା । ପରିଧାନରେ ମଳିନ ଗୈରିକ, ପରିଚ୍ଛନ୍ନ ଉତ୍ତରୀସଙ୍ଗ ଓ ସଂହିତ ନ ଥିଲା । ଶ୍ମଶାନରେ ପରିତ୍ୟକ୍ତ ଖଣ୍ଡେ ପ୍ରେତବସ୍ତ୍ର ସେ ଅନ୍ତର୍ବାସକ ପରି ପିନ୍ଧିଥିଲେ । କୋଠରଗତ ଦୁଇ ଆଖି ଜବାକୁସୁମ ପରି ଗଭୀର ରକ୍ତବର୍ଣ୍ଣ ଧାରଣ କରିଥିଲା ।

ଅର୍ହତ, ଆଚାର୍ଯ୍ୟ ଶାନ୍ତଦେବଙ୍କ ଆଦେଶ··ଅଶୁଭ-ଭାବନା-ଯୋଗରେ ସିଦ୍ଧ ନହେବା ପର୍ଯ୍ୟନ୍ତ, ମୌଲୋପୁତ୍ରଙ୍କର ପୂର୍ଣ୍ଣ ଭିକ୍ଷୁଭିର ଉପସମ୍ପଦ ସମାହିତ ହୋଇ ପାରିବ ନାହିଁ । ପ୍ରଥମେ ଉପାସକ, ପରେ ଶ୍ରମଣ ଏହି ଅବସ୍ଥାରେ ଏ ପର୍ଯ୍ୟନ୍ତ ରହିଛନ୍ତି ମୌଲୋପୁତ୍ର । ତଥାପି ତାଙ୍କର ଚିତ୍ତଶୁଦ୍ଧି ସମ୍ପୂର୍ଣ୍ଣ ହୋଇନାହିଁ । ରୂପ ଓ ତୃଷ୍ଣା ସେ ତଥାପି ଜୟ କରି ନାହାନ୍ତି । ସେଥିପାଇଁ ପତିମୋକ୍ଷର ବିଧାନ ରୂପେ, ଆଚାର୍ଯ୍ୟ ଶାନ୍ତଦେବଙ୍କ ନିର୍ଦ୍ଦେଶରେ, ମୌଲୋପୁତ୍ର ଏହି ମହାଶ୍ମଶାନରେ ଅଶୁଭ-ଭାବନା-ଯୋଗ ଅଭ୍ୟାସ କରୁଅଛନ୍ତି ।

ଶ୍ରମଣମାନଙ୍କୁ ଘୋର ଶ୍ମଶାନରେ ଅଶୁଭ-ଭାବନା ଅଭ୍ୟାସ କରିବାକୁ ପଡ଼ୁଥାଏ । ମୃତ୍ୟୁ ପରେ ମନୁଷ୍ୟ, ଦେହ, ରୂପ ଓ ସଂଜ୍ଞା ପରିହାର କରି କ୍ଷୟ ଓ ବିଲୟର ଯେଉଁ ବିଭିନ୍ନ ଅବସ୍ଥା ମଧ୍ୟରେ, ଯେପରି କ୍ରମେ ପଞ୍ଚଭୂତ ମଧ୍ୟରେ ବିଲୀନ ହୋଇଥାଏ, ଶ୍ମଶାନରେ ତାହାର ଦର୍ଶନ, ମନନ ଓ ଚିନ୍ତନ ମଧ୍ୟରେ, ରୂପର ଭଙ୍ଗୁରତା ଉପଲବ୍ଧି କରିବା ଅଶୁଭ-ଭାବନା-ଯୋଗର ତତ୍ତ୍ୱ । ରୂପ, ତୃଷ୍ଣା ଓ ବେଦନା ଜୟ ପାଇଁ ଶ୍ରମଣମାନଙ୍କୁ ଏହି ଅଭ୍ୟାସ କରିବାପାଇଁ ପଡ଼ୁଥାଏ ।

ମଧ୍ୟାହ୍ନର ତାପଦଗ୍ଧ ଉପତ୍ୟକା ଉପରେ, ପର୍ବତମାଳାର ଛାୟା କ୍ରମେ ଏକ ଶୀତଳ ପ୍ରଲେପ ପରି ବୁଲି ଆସୁଥିଲା । ଶ୍ମଶାନ ପ୍ରାନ୍ତରେ ଗୋଟିଏ ବଜ୍ରଦଗ୍ଧ ଶାଳ୍ମଳୀର ମୃତଶାଖା ଉପରୁ ପଲେ ଗୃଧ୍ର ପକ୍ଷ ଝାଡ଼ି, କେଉଁଠି ଶବର ଆଘ୍ରାଣ ପାଇ ଉଡ଼ି ଆସୁଥିଲେ । ଯେଉଁଠାରେ ସେହି ଗୃଧ୍ରପଲ କଳକଳା ରଡ଼ି କରି, ଓହ୍ଲାଇ ମାଟିରେ ଚଞ୍ଚୁ ଘଷିବା ପାଇଁ ଆରମ୍ଭ କରି ଦେଇଥିଲେ, ସେଠାରେ କୌଣସି ନୂତନ ଶବ ପଡ଼ିଥିବ ଭାବି, ଏକ ବ୍ୟାଧିତ ଆନନ୍ଦରେ, ମାଲୋପୁତ୍ର ସେହି ଆଡ଼େ ଧାଇଁଗଲେ । ତାଙ୍କର ଉପସ୍ଥିତି ସତ୍ତ୍ୱେ ଗୃଧ୍ରପଲ ସେଠାରୁ ଉଡ଼ିଗଲେ ନାହିଁ । ମାଲୋପୁତ୍ର ଉନ୍ମାଦ ପରି ତତ୍କ୍ଷଣାତ୍ ଖଣ୍ଡେ ପଥର ଉଠାଇ ଫିଙ୍ଗି, ସେମାନଙ୍କୁ ସେଠାରୁ ତଡ଼ିଦେଲେ ।

ଖଣ୍ଡେ ପଥରର ଆବରଣ ତଳେ, କେହି ଗୋଟିଏ ଶବକୁ ସମାଧି ଦେଇ ଯାଇଥିଲା । ମାଲୋପୁତ୍ର ଶବଟିକୁ ଦେଖିବା ପାଇଁ ପଥରର ଆବରଣ ଦୁଇ ହାତରେ ଉଠାଇ ଫିଙ୍ଗି ଦେଲେ ।

କେଉଁ ଏକ ନିର୍ବୋଧ ପିତା, ଶିଶୁ ପୁତ୍ରଟିର କୋମଳ ଅଙ୍ଗ, କଙ୍କରିଳ ମାଟିର କଠୋର ସ୍ପର୍ଶରେ ପୀଡ଼ିତ ହେବନାହିଁ ବୋଲି, କୋମଳ ପଲ୍ଲବଶଯ୍ୟା ଉପରେ, ଶବଟିକୁ ପରମ ଶ୍ରଦ୍ଧା ଓ ଯତ୍ନରେ ଶୁଆଇ ଦେଇ ଯାଇଥିଲା । ପାଖରେ ପୁଣି ରଖି ଯାଇଥିଲା ଗୋଟିଏ ରଙ୍ଗିନ ପୁତ୍ତଳି···କ୍ରୀଡ଼ା ସାଥୀ । ଆଃ···ଝଞ୍ଜାହତ, ବୃନ୍ତଚ୍ୟୁତ କୁସୁମ ପରି ଏହି ନିଷ୍ପାପ ଶିଶୁ···

କୌଣସି କାଳେ ନୀଳୋତ୍ପଳଙ୍କର କୌଣସି ଶିଶୁ ସହିତ କେବେ ସମ୍ବନ୍ଧ ନ ଥିଲା, ଅଥବା ଶିଶୁ ସମ୍ପର୍କରେ କୌଣସି ଅନୁଭବ ନ ଥିଲା । ମାତ୍ର ଏହି ଶିଶୁଟିକୁ ଦେଖି ସେ ତାହାକୁ କୋଳ କରି ନେବାପାଇଁ, ଦୁଇ ବାହୁ ପ୍ରସାରିତ କରିଥିଲେ, କିନ୍ତୁ ପରମୁହୂର୍ତ୍ତରେ ଆତ୍ମସମ୍ବରଣ କରି ଏକ ବିଷଧର ସର୍ପ ଦେଖି ପଛକୁ ଫେରି ଆସିବା ପରି, ସେ କେତେ ପାଦ ପଛକୁ ଫେରି ଆସିଲେ । ଶିଶୁଟିର ଦେହ ଉପରେ ଯେପରି ନୀଳ-ବର୍ଣ୍ଣର ଏକ ପ୍ରଲେପ ବୁଲି ଆସିଥିଲା । ତାହାର ଦୁଇ କୋମଳ ଓଷ୍ଠାଧର କୃଷ୍ଣବର୍ଣ୍ଣ ଧାରଣ କରିଥିଲା ।

'ନୀଳୋତ୍ପଳ ପ୍ରମତ୍ତ ପରି ଚିତ୍କାର କରି ଉଠିଲେ । ଏହା ବିନୀଳକ, ବିନୀଳକ···ପେଲବ ପୁଷ୍ପପଲ୍ଲବ ପରି, ସୁକୁମାର ଦେହ ଦିନେ ଏହିପରି ନୀଳବର୍ଣ୍ଣ ଧାରଣ କରେ ।

ତା' ପରେ ହୁଏ ବିପୁୟକ୍, ପର୍ଯ୍ୟୁଷିତା । ତା' ପରେ ବିଚ୍ଛିଦ୍ରକ, ଖଣ୍ଡ ଖଣ୍ଡ ହୋଇ ଛିଣ୍ଡି ପଡ଼େ ।

ତା' ପରେ ବିକ୍ଷୈକ, ଶିବା ଓ ଗୃଧ୍ର ପଲଙ୍କର ଆହାର୍ଯ୍ୟ ।

ତା'ପରେ ହୁଏ ଗୁଲବକ, କୀଟାଣୁପୂର୍ଣ୍ଣ ।

ତା'ପରେ ବିକ୍ଷିତ୍ତକ ହୋଇ ଇତଃସ୍ତତ ବିକ୍ଷିପ୍ତ ହୋଇପଡେ···

ତା' ପରେ ? ତା'ପରେ ?

ଏତେ ବାର ମୁଖସ୍ଥ ସତ୍ତ୍ୱେ, ଅଶୁଭ-ଭାବନାର ଶେଷ ପର୍ଯ୍ୟାୟଟି ନୀଳୋତ୍ପଳଙ୍କର ସ୍ମରଣ ହେଉନାହିଁ । ସେ ଉନ୍ମାଦ ପରି, ଦୁଇ ମୁଷ୍ଟିବଦ୍ଧ ବାହୁ ଶୂନ୍ୟରେ ଉଠାଇ, ଆକାଶକୁ ଚାହିଁ ଚିତ୍କାର କରି ଉଠିଲେ··· "ତା' ପରେ ? ତା'ପରେ ?"

ନିର୍ଜନ ଉପତ୍ୟକାର ପର୍ବତ ପ୍ରାଚୀରରେ ବାଧା ପାଇ ନୀଳୋତ୍ପଳଙ୍କର ଚିତ୍କାର ପ୍ରତିଧ୍ୱନିତ ହୋଇ ଉଠିଲା·········ତା'ପରେ ? ତା'ପରେ ?

ତା'ପରେ ଅସ୍ଥିକ ! ଅସ୍ଥିକ ! ଅସ୍ଥି ! ଖଣ୍ଡ ଖଣ୍ଡ ଚୂର୍ଣ୍ଣୀଭୂତ ବିବର୍ଣ୍ଣ ଅସ୍ଥି !

ମିଲୋପ୍ପିଲଙ୍କର ଜ୍ୱରଗ୍ରସ୍ତ ମସ୍ତିଷ୍କ ଓ କଳ୍ପନାରେ, କୁଶୀନର ଉପକଣ୍ଠର କୁସୁମିତ ଶାଳବୀଥିକାରେ, ତଥାଗତ ଆନନ୍ଦଙ୍କୁ ଯେପରି କହୁଥିଲେ···"ଏହି ନିର୍ବାଣ ଅଗ୍ନି, ରୂପ ଓ ତୃଷ୍ଣାର ଚରମ ପରିସମାପ୍ତି !"

ମିଲୋପ୍ପିଲ ପାଗଳ ପରି ଅଟ୍ଟହାସ କରି ଚିତ୍କାର କଲେ···"ଅଧିକ ! ଅଧିକ !"

ତା'ପରେ ମିଲୋପ୍ପିଲ ନିଜର ଦୁଇ ସୁପୁଷ୍ଟ ବାହୁର କଠିନ ମାଂସପେଶୀ ସଞ୍ଚାଳିତ କରି ପ୍ରଳାପ କଲାପରି ନିଜକୁ ନିଜେ କହିଲେ···"ମିଲୋପ୍ପିଲ ! ଏହି ତୁମର ଦୁଇ ସୁପୁଷ୍ଟ ବାହୁ, ବାହୁ ନୁହେଁ, ଏହା ଅଗ୍ନି, ଅଗ୍ନି ! ତୁମେ ନିଜେ ମିଲୋପ୍ପିଲ, ତୁମେ ମଧ୍ୟ ଖଣ୍ଡେ ନିର୍ବାଣ କାଷ୍ଠାଗ୍ନିପୂର୍ଣ୍ଣ ଅଗ୍ନି !"

କିନ୍ତୁ ଅଗ୍ନି ଖଣ୍ଡର ନିର୍ବାଣଲାଭରେ କି ପ୍ରୟୋଜନ ?

ମିଲୋପ୍ପିଲ ଆକାଶକୁ ଚାହିଁ ଚିତ୍କାର କରି ଉଠିଲେ···"ଅଗ୍ନିଖଣ୍ଡର ନିର୍ବାଣ ଲାଭରେ କି ପ୍ରୟୋଜନ କହି ପାରିବ ଆକାଶ ? ଅଗ୍ନିର ପୁନର୍ଜନ୍ମ ନାହିଁ, ପୁନରାଗମନ ନାହିଁ, ରୂପ ତୃଷ୍ଣାର ବେଦନା ନାହିଁ; ଅତୃପ୍ତି ନାହିଁ, ଦୁଃଖ ନାହିଁ···ଏ କେବଳ ଅଗ୍ନି ! ଅଗ୍ନି !"

ତା'ପରେ ଭିକ୍ଷୁ ତିଲୋକର ମହାନିର୍ବାଣ···ଅନନ୍ତ ମହାସୁଖ; ଜନ୍ମ ଓ ପୁନର୍ଜନ୍ମର ଆବର୍ତ୍ତନରୁ ମହାମୁକ୍ତି !

ଗୋଧୂଳିର ଉଦାସ ଛାୟା ପର୍ବତମାଳାପରିବେଷ୍ଟିତ ଉପତ୍ୟକାରେ ନିବୃତ୍ତିର ଅଚଞ୍ଚଳ ମୌନତା ପରି ଗମ୍ଭୀର ହୋଇ ଆସିଥିଲା । ମାଟି ଧରଣୀର ନିଭୃତତମ ମର୍ମଭୂମିରେ, ଏକ ଗମ୍ଭୀର ଉଦ୍‌ବେଳନର ଚରମ ଉତ୍ତେଜନା, ଯେପରି ଧୂସର ଆକାଶର ବିଗବଳୟକୁ ଏକ ଲୋହିତ ଦ୍ୟୁତିରେ ଉଦ୍‌ଭାସିତ କରିଥିଲା ।

ଶ୍ମଶାନରୁ ଅନ୍ୟ ଏକ ପ୍ରାନ୍ତରୁ ଆଉ ଗୋଟିଏ ଶବବାହୀ ଦଳ, ଗୋଧୂଳିର ସେହି ବିପର୍ଣ୍ଣ ଆଲୋକରେ ପ୍ରତ୍ୟାବର୍ତ୍ତନ କରୁଥିଲେ । ଅଶୁଭ

ଭାବନାରେ, ନୀଳୋତ୍ପଳଙ୍କର ସିଦ୍ଧି ସମ୍ପୂର୍ଣ୍ଣ ହୋଇଅଛି । ନଶ୍ୱର ନାରୀ ଦେହର, କ୍ଷୀଣ କୋମଳ ରେଖା, ଆଉ ତାଙ୍କର ଚେତନାକୁ ଶଳାକା ଦ୍ୱାରା ବିଦ୍ଧ କରିବ ନାହିଁ, ଅବଚେତନର ଗହ୍ୱରରେ ନିଦ୍ରିତ କାମନାକୁ ଏକ ଆଦିମ ରାକ୍ଷସ ପରି ଅବର୍ଣ୍ଣନୀୟ କ୍ଷୁଧାରେ ଆଉ ଜାଗ୍ରତ କରିବ ନାହିଁ । ରୂପ ଓ ତୃଷ୍ଣାର ନାଗବନ୍ଧନରୁ ନୀଳୋତ୍ପଳ ଆଜି ଜ୍ୟାମୁକ୍ତ ଏକ ଉଲଙ୍ଗ ଶରପରି, ବେଦନାମୁକ୍ତ ସ୍ୱସ୍ତିର ଏକ ଦୀର୍ଘଶ୍ୱାସପରି । ଏହାପରେ ସେ ପୁଣି ଗୃଧ୍ରକୂଟ ବିହାରରେ ସେହି ନିଭୃତ ସାଧନା କକ୍ଷକୁ ଅଚଞ୍ଚଳ ଚିତ୍ତ ଓ ପ୍ରଶାନ୍ତିରେ ପ୍ରତ୍ୟାବର୍ତ୍ତନ କରିପାରିବେ !

ଫାଲ୍‌ଗୁନର ମୁକୁଳିତ ବଲ୍ଲରୀଲତା ଆଉ ନାହିଁ ।

ଶେଷ ବସନ୍ତର ଦଗ୍ଧ-ମୁକୁଳ ଓ ପଲ୍ଲବର ଭଗ୍ନ-ଶଯ୍ୟା ଉପରୁ, ରୁଦ୍ର ବୈଶାଖ, ରକ୍ତଚକ୍ଷୁ ମେଲି, ମୋହମୁକ୍ତ କାପାଳିକ-ପରି ଉଠିଲାଣି ।

ଆଜି ଏହି ଶ୍ମଶାନରେ ଆଚାର୍ଯ୍ୟ ଶାନ୍ତିଦେବ, ନୀଳୋତ୍ପଳଙ୍କୁ ଭିକ୍ଷୁତ୍ୱର ଉପସମ୍ପଦରେ ଅଭିଷିକ୍ତ କରିବେ । ତା'ପରେ ନୀଳୋତ୍ପଳ ହେବେ; କଲ୍ୟାଣମିତ୍ର ଆଚାର୍ଯ୍ୟ ନୀଳୋତ୍ପଳ !

ଆଉ ଶବଦେହ ପାଖରେ ବସି, ବଳପୂର ବିଭିନ୍ନ ପର୍ଯ୍ୟାୟ ସ୍ତରେ ସ୍ତରେ ନିଶ୍ଚିହ୍ନ ହୋଇ ପଞ୍ଚଭୂତ ସହିତ ମିଶିଯିବାର ବିଷର୍ଣ୍ଣ ମହାନାଟକ ଲକ୍ଷ୍ୟ କରିବାର ଆବଶ୍ୟକତା ନାହିଁ । ଆଜି ନୀଳୋତ୍ପଳଙ୍କର ସାଧନା ସମାପ୍ତ, ଆଜି ତାଙ୍କର ଉପସମ୍ପଦ ପ୍ରାପ୍ତିର ମଙ୍ଗଳ ମୁହୂର୍ତ୍ତ । ନୀଳୋତ୍ପଳଙ୍କର ମନେ ପଡ଼ିଗଲା, ଆଜି ମଧୁ ପୂର୍ଣ୍ଣିମା !

ତଥାପି ନୀଳୋତ୍ପଳ ଶ୍ମଶାନରେ ନବାଗତ ଶବଟିକୁ ଥରେ ଦେଖିବାର ବ୍ୟାଧିତ କୌତୁହଳ ଦମନ କରି ପାରିଲେ ନାହିଁ । ଏକ ବନ୍ୟ ପଶୁପରି, ସେ ଅତି ସନ୍ତର୍ପଣରେ ଶବର ଗନ୍ଧ ଆଘ୍ରାଣ କରିକରି ସେହି ଆଡେ ଆଗେଇ ଗଲେ ।

ଶ୍ମଶାନରେ ବେତସଲତାବେଷ୍ଟିତ; ଏକ ନିଭୃତ କୋଣରେ, ଗୋଟିଏ ସମାଧି ଗହ୍ୱରର ଖଣ୍ଡେ ପଥର ତଳେ ଶବବାହୀମାନେ, ଗୋଟିଏ ନୀଳବସ୍ତ୍ରାବୃତ୍ତ ଶବପିଣ୍ଡ ରଖିଯାଇଥିଲେ । ନୀଳୋତ୍ପଳ, ଦୁଇ-ବାହୁରେ ସେହି ପଥରଖଣ୍ଡ ଉଠାଇ କାଢିଦେଲେ ।

ଭୂମିରେ ଗୋଟିଏ ନାରୀର ଶବ ପିଣ୍ଡ । କେବଳ ମୁଖ ବ୍ୟତୀତ ସମଗ୍ର ଦେହଟି ଖଣ୍ଡେ ନୀଳବସ୍ତ୍ରରେ ଆବୃତ୍ତ ଥିଲା । ନାରୀ ! ନାରୀ ! ଜ୍ୱଳାମୟୀ ଏକ ଅଗ୍ନିଶିଖା ! ସମାଧିଗହ୍ୱରର ଶୀତଳତା ମଧ୍ୟରେ ଯେପରି ସ୍ତିମିତ ହୋଇ ଲେଟି ପଡ଼ିଅଛି । ନୀଳୋତ୍ପଳ ଦୁଇ କୋଟରଗତ ଆଖି ହାତରେ ମଳି, ଛାୟାଛନ୍ନ ସମାଧି ଗହ୍ୱର ଭିତରକୁ ନିରୀକ୍ଷଣ କରି ଚାହିଁଲେ ।

ଏକ ଗଭୀର କ୍ଷତକୁ ଆକସ୍ମିକ ସ୍ପର୍ଶରୁ ଯନ୍ତ୍ରଣାରୁ ରକ୍ଷା କରିବାର ଶତ ଆପ୍ରାସ ସତ୍ତ୍ୱେ, ଯେପରି ଏକ ଅସତର୍କ ଅଙ୍ଗୁଳି ଅଥବା ଅନ୍ୟ କୌଣସି ପ୍ରତ୍ୟଙ୍ଗ ସେହି କ୍ଷତକୁ ହଠାତ୍ ସ୍ପର୍ଶକରି, ଦୁଃସହ ବେଦନାରେ ଜର୍ଜରିତ କରିଦିଏ; ସେହିପରି ଯାହାର ରୂପାକର୍ଷଣ ଜୟ କରିବାପାଇଁ, ଗୃଧ୍ରକୂଟ-ବିହାରର ଶ୍ରମଣ-ଶ୍ରେଷ୍ଠ ନୀଳୋତ୍ପଳ, ଶ୍ମଶାନରେ ପ୍ରେତ, ପିଶାଚ ପରି ବୁଲି, ଅଶୁଭ-ଭାବନା ଅଭ୍ୟାସ କରୁଥିଲେ, ଏବେ ସେହି ମଧୁବ୍ରତା, ମଳୟର ସୁରଭିତ ହିଲ୍ଲୋଳ ପରି ସବୁ ସଂଯମ, ସାଧନା ଓ ସିଦ୍ଧି ଗୋଟିଏ ହିଲ୍ଲୋଳ ଫୁତ୍କାରରେ କେଉଁଆଡେ ଉଡ଼ାଇ ଦେଲା ।

ଏ ଯେ, ଶ୍ରେଷ୍ଠୀ ଶ୍ୱେତପର୍ଣ୍ଣିର ବଧୂ ମଧୁବ୍ରତା !

ସେହି ନୀଳଚେଳପରିହିତା ଅପରାଜିତା ବ୍ରତତୀ ପରି, କୃଶାଙ୍ଗୀ ମଧୁବ୍ରତା ! ପଦ୍ମଦଳ ପରି ଦୁଇ ଆୟତ ଆଖିର ଘଞ୍ଚ, ମୁଦ୍ରିତ ପକ୍ଷ୍ମରେଖା, ବ୍ରୀଡ଼ାନତ ମୁଗ୍ଧ ଦୃଷ୍ଟିର ଭ୍ରମ ସୃଷ୍ଟି କରୁଥିଲା । ସ୍ଫୁରିତ ଓଷ୍ଠାଧର ଯେପରି ପ୍ରୀତିଚୁମ୍ବନର ଦନ୍ତାଘାତ ପାଇଁ ଈଷତ୍ ବିସ୍ଫାରିତ ହୋଇ ରହିଥିଲା ।

ନୀଳୋତ୍ପଳ ଏକ ହିଂସ୍ର, କ୍ଷୁଧିତ ପଶୁ ପରି ଶବ ଦେହର ଆବୃତ୍ତ ଥିବା ନୀଳବସ୍ତ୍ର ଦୁଇ ହାତରେ କାଢ଼ି ଫିଙ୍ଗି ଦେଲେ ।

ଆଃ···ଅନାଘ୍ରାତ ପଦ୍ମକୋରକ ପରି ଅନାହତ ସ୍ତନଯୁଗ୍ମ, ପ୍ରସ୍ଫୁଟିତ ସୁବର୍ଣ୍ଣୁଳ ନିତମ୍ବ, ପାଷାଣ ପ୍ରତିମା ପରି ମଧୁବ୍ରତାର ଶୀତଳ, ଉଲଙ୍ଗ ପିଣ୍ଡ ଉପରେ, ଯୁଗନଦ୍ଧ ଅବଲୋକିତେଶ୍ୱର ଓ ପ୍ରଜ୍ଞାପାରମିତା ମୂର୍ତ୍ତିର ଭଙ୍ଗୀରେ, ମାଲୋପୃଳ ନିଜକୁ ନିଷ୍ଟନ୍ଦ୍ର ଭାବରେ ବିଲୀନ କରିଦେଲେ ।

ତାପରେ ମଧୁବ୍ରତାର ଉଲଙ୍ଗ ପ୍ରାଣହୀନ ପିଣ୍ଡକୁ, ମାଲୋପୃଳ ଦୁଇ ବାହୁରେ ନିଜର ବକ୍ଷସଂଲଗ୍ନ କରି ତୋଳି, ଅଗଣିତ କ୍ଷୁଧିତ ଚୁମ୍ବନରେ ତାହାର ଉଲଙ୍ଗତାକୁ ଯେପରି ଆଚ୍ଛନ୍ନ କରି ପକାଇଲେ ।

ଆଚାର୍ଯ୍ୟ ଶାନ୍ତଦେବ କେତେବେଳେ ଆସି ସେଠାରେ ଉପସ୍ଥିତ ହୋଇଥିଲେ, ମାଲୋପୃଳ ତାହା ଜାଣି ନଥିଲେ; କିମ୍ବା ସେହି ପ୍ରମତ୍ତ-ମୁହୂର୍ତ୍ତରେ ତାହା ଜାଣିବା ଅବସ୍ଥାରେ ସେ ନଥିଲେ ।

ଆଚାର୍ଯ୍ୟ ଶାନ୍ତଦେବ ବିଷ୍ଟବ୍ଧ କଣ୍ଠରେ ଚିତ୍କାର କରି ଉଠିଲେ ······"ମାଲୋପୃଳ ! ମାଲୋପୃଳ !"

ଉଲଙ୍ଗ ମଧୁବ୍ରତାର ଶିଥିଳ ପିଣ୍ଡକୁ ମାଲୋପୃଳ ବକ୍ଷଲଗ୍ନ କରି, ତାହାକୁ ସେହିପରି ନିବିଡ଼ ଭାବରେ ଧରି, ନିର୍ବାକ ଦୃଷ୍ଟିରେ ଚୁହିଁ ରହିଥିଲେ ।

ଶାନ୍ତଦେବ ଚିତ୍କାର କରି ଉଠିଲେ······"ଏ କଣ କରୁଛ, ମୂଢ଼, ନିର୍ବୋଧ, ମାଲୋପୃଳ ?"

ମାଲୋପୃଳ ଶାନ୍ତଦେବଙ୍କ ଆଡ଼େ ଚାହିଁଲେ ନାହିଁ; କିମ୍ବା ତାହାଙ୍କ ଉପସ୍ଥିତିରେ ବିଚଳିତ ହେଲେ ନାହିଁ ।

ଏକ ବର୍ଣ୍ଣନାତୀତ ମହାନିର୍ବାଣ ମଧ୍ୟରେ, ସେ ଯେପରି ସତ୍ତ୍ୱହୀନ ଭାବରେ ବିଲୁପ୍ତ ହୋଇପଡ଼ିଥିଲେ ।

ରାଜଗୃହ ପର୍ବତମାଳାର ଗୋଟିଏ ନିଃସଙ୍ଗ ଗିରିଶୃଙ୍ଗର ନେପଥ୍ୟରୁ ପୂର୍ଣ୍ଣିମାର ଚନ୍ଦ୍ର, ନିଖିଳ ବେଦନାର ଜ୍ୱାଳାମୟ ପିଣ୍ଡ ପରି ଉଇଁ ଆସୁଥିଲା ।

ମାଲୋତ୍ପଲ ଦୁଇ ବାହୁରେ ବିବସନା ମଧୁବ୍ରତାର ମୃତପିଣ୍ଡ ଟେକିଧରି, ସେହି ଆଡ଼େ ପ୍ରମତ୍ତ ପରି ଧାଇଁ ଅଦୃଶ୍ୟ ହୋଇଯାଉଥିଲେ ।

ଶାନ୍ତଦେବ ଅସହାୟ କଣ୍ଠରେ ଚିତ୍କାର କରୁଥିଲେ………
"ମାଲୋତ୍ପଲ ! ମାଲୋତ୍ପଲ !"

ନିର୍ଜନ ପାର୍ବତ୍ୟ ଉପତ୍ୟକାରେ ଶାନ୍ତଦେବଙ୍କର ଅସମ୍ବଦ୍ଧ ଆହ୍ୱାନ, ଏକ ମର୍ମଦାହ ପରି ପ୍ରତିଧ୍ୱନିତ ହୋଇ ଉଠୁଥିଲା ।

ମାଲୋତ୍ପଲ ଦୁଇ ବାହୁରେ ବିବସନା ମଧୁବ୍ରତାର ମୃତପିଣ୍ଡକୁ ଆବଦ୍ଧ ଆଲିଙ୍ଗନ କରି, ପୂର୍ଣ୍ଣିମାର ଦୁର୍ଗମ ଜ୍ୟୋତ୍ସ୍ନାରେ ସେହି ଗିରିଶୃଙ୍ଗ ଆଡ଼େ ଧାଇଁ ଅଦୃଶ୍ୟ ହୋଇ ଯାଉଥିଲେ । (୧୯୬୨)



# ଆକାଶ ତଥାପି ସୁନୀଳ

## ୪

ପଙ୍ଖାରୁ କାରବୋନ୍ ଶେଷ ହୋଇ ଆସିଥିଲା······

ଏକ କିଂଭୂତ ଖଟ୍‌ଖଟ୍ ଶବ୍ଦ କରି, ଛାତରୁ ଝୁଲୁଥିବା ପଙ୍ଖାଟା, ଗୋଟିଏ ଆହତ ପକ୍ଷୀର ଡେଣାପରି ଚକର୍‌କାଟି ବୁଲୁଥିଲା; କେତେବେଳେ ଧୀରେ ଧୀରେ; ଆଉ କେତେବେଳେ ଜୋରରେ । ମାତ୍ର ପବନ ଅପେକ୍ଷା ସେଥିରେ ଶବ୍ଦର ବାହୁଲ୍ୟ ଥିଲା ବେଶୀ ।

ସହରର ବସ୍ତୀଗସ୍ତା କଡ଼ରେ ଗୋଟିଏ ରେସ୍ତୁରାଁ । ଗରାଖ-ମାନଙ୍କର ଭିଡ଼ ନଥିଲା । ସକାଳର ଅଇଁଠା ପ୍ଲେଟ୍, କପ୍, ଟେବୁଲ୍ ଉପରେ ଉଚ୍ଛିଷ୍ଟ ଓ ଡାଲିକଣାର ଅବଶେଷ ସବୁ ମିଶି, ଏକ ଶ୍ମଶାନ ଅଥବା ପରିତ୍ୟକ୍ତ ରଣପ୍ରାନ୍ତରର ପରିବେଶ ସୃଷ୍ଟି କରିଥିଲା ।

ଅମିତାଭର ଟେବୁଲ୍ ଉପରେ, ଯେଉଁଠାରେ କେତେବୁନ୍ଦ କ୍ଷୀର ଢାଳିହୋଇ ପଡ଼ିଥିଲା, କେତେଟା ମାଛି ତା' ଉପରେ ବାରମ୍ବାର ଆସି ବସୁଥିଲେ, ପୁଣି ଉଡ଼ି ଯାଉଥିଲେ । ବେଳେବେଳେ ସେଥିରୁ ରୁଚି କଟିଗଲେ, ମାଛି କେତେଟା ଉଡ଼ିଆସି ନାକଦଣ୍ଡାର ଏକ ସ୍ପର୍ଶକାତର ଅଂଶ ଉପରେ ବସି ପଡ଼ୁଥିଲେ···ସେମାନଙ୍କୁ ତଡ଼ିବାପାଇଁ ଅମିତାଭ ଦୁଇହାତ ଶୂନ୍ୟରେ ବୁଲାଇ; ଆଖିଆଗରେ ମେଲା ଧରିଥିବା ଖବରକାଗଜଟିକୁ ତଳେ ଫିଙ୍ଗିଦେଇ, ଉତ୍‌କ୍ଷିପ୍ତ ପରି ଚଉକୀ ଛାଡ଼ି ଉଠି ପୁଣିବସି ପଡ଼ୁଥିଲା ।

'ସ୍ୱଦେଶ-ମିତ୍ର' ସମ୍ବାଦପତ୍ରର ବିଶେଷ ରାଜନୈତିକ ସମ୍ବାଦଦାତା, ଅମିତାଭ ।

ସେ କିନ୍ତୁ ଖବରକାଗଜ ପଢୁ ନଥିଲା । ଆଖିଆଗରେ ମେଲା ଧରିଥିବା ଖବରକାଗଜର ନେପଥ୍ୟରୁ, ରାସ୍ତା ସେପଟେ ଗୋଟିଏ ଦର୍ଜୀ ଦୋକାନରେ, କବାଟ ଉଡ଼ାଳରେ ଖଣ୍ଡେ ଟୁଲ ଉପରେ ବସିଥିବା, ଦର୍ଜୀ ହନୁମାଷ୍ଟରର ଗତିବିଧି ଲକ୍ଷ୍ୟ କରୁଥିଲା । ତାହାର ଅଙ୍ଗ-ପ୍ରତ୍ୟଙ୍ଗର ପ୍ରତ୍ୟେକ ଅର୍ଥହୀନ ସଞ୍ଚାଳନ, ସାମନା ରାସ୍ତାଆଡ଼େ ତାହାର ପ୍ରତ୍ୟେକ ଉଦ୍‌ବିଗ୍ନ ଦୃଷ୍ଟିର ସତର୍କ ଭଙ୍ଗୀ, ଆକସ୍ମିକ ଭାବରେ ଜୁଟିଯାଉଥିବା କୌଣସି ଗରାଖ ଅଥବା କୌଣସି ଆଗନ୍ତୁକ ସହିତ ନିତାନ୍ତ ମାମୁଲି କଥାବାର୍ତ୍ତା ସୁଦ୍ଧା, ଅମିତାଭ ଖବରକାଗଜ ଉଡ଼ାଳରେ ଅତ୍ୟନ୍ତ ସତର୍କ ଦୃଷ୍ଟିରେ ଲକ୍ଷ୍ୟ କରି, ତାହାର ବିଶ୍ଳେଷଣ କରୁଥିଲା ଓ ତଥ୍ୟଗୁଡ଼ିକୁ ମନେମନେ ଲିପିବଦ୍ଧ କରୁଥିଲା ।

ଆଲବାବାର ଗୁମ୍ଫା ପରି ଦିଶୁଥିବା 'ମାଷ୍ଟର କଟିଙ୍ଗ୍ ଆଣ୍ଡ୍ ଟେଲରିଙ୍ଗ୍' ଦୋକାନର ଅନ୍ଧକାରଭରା, ଅନ୍ଧାରୁଆ ଗହ୍ୱର ଭିତରୁ ହନୁମାଷ୍ଟର ମଧ୍ୟ ବେଳେବେଳେ ଚାହିଁ ଲକ୍ଷ କରୁଥିଲା, ରେସ୍ତୁରାଁ ବାରଣ୍ଡାରେ ଦୋକାନ ମାଲିକ ଓ ଭିତରେ ଅମିତାଭ ଆଡ଼େ । ଦର୍ଜୀଦୋକାନକୁ ଲାଗି, ଏକ ପୀରଙ୍କ ସମାଧିସ୍ଥାନ୍‌ରେ ଗୋଟାଏ ବୁଢ଼ା ଶିମିଳୀଗଛର ପତ୍ରହୀନ ଶାଖାଟିଏ, ଲାଲଫୁଲର ଭାରରେ ଅବନତ ହୋଇ ରାସ୍ତାଉପରେ ଆକାଶର ପୃଷ୍ଠଭୂମିରେ, ଖଣ୍ଡେ ଜାପାନୀ ସ୍କ୍ରୋଲ ଚିତ୍ରପରି ଉତ୍କୀର୍ଣ୍ଣ ହୋଇଥିଲା । ସେଆଡ଼େ ଅମିତାଭ ବେଳେବେଳେ ଚାହୁଁଥିଲା ପ୍ରେରଣାପାଇଁ, ଆଉ ହନୁ ମାଷ୍ଟର ଚାହୁଁଥିଲା ନିଜ ଜୀବନର ଉତ୍ସମୂଳ ସନ୍ଧାନ କରିବାପାଇଁ ।

ହନୁ ମାଷ୍ଟର ତାର ପିଲାଦିନୁ ସୁଦ୍ଧା, ଏହି ଶିମିଳୀଗଛଟିକୁ ଏମିତି ଦେଖି ଆସିଅଛି । ଜୀବନର ସବୁ ସଂଶୟ, ଅନିଶ୍ଚିତତା, ଆଶଙ୍କା ଓ ଆତଙ୍କ ଭିତରେ ଏହି ଶିମିଳୀ ଗଛଟି ଯେପରି, ନିର୍ଭରଶୀଳତା ପୁଣି ନିଶ୍ଚିତତାର ଏକମାତ୍ର ସଙ୍କେତ । ଏବେ ସୁଦୀର୍ଘ ଅଠର ବର୍ଷର ବ୍ୟବଧାନ

ଓ ଦେଶାନ୍ତର ପରେ ଏକ ଦରଧା ପ୍ରତିବେଶୀ ପରି, ଯେଉଁ ପଡ଼ଦୀକୁ ଶିମିଳୀ ଗଛଟି ଯେପରି ହରି ମାଷ୍ଟର ଆଡ଼େ ତାହାର ସ୍ନେହସ୍ପର୍ଶ ପ୍ରସାରିତ କରିଥିଲା । ହରି ମାଷ୍ଟରର ଝାପ୍‌ସା ଆଖି ଆଗରେ ବେଳେବେଳେ ଭାସି ଉଠୁଥିଲା, ତାହାର 'ଆବ୍‌ବାଜାନ୍' ୟୁସୁଫ୍ ମିର୍ଜା, ସ୍ତ୍ରୀ ଅଖ୍‌ତରୀ ଜାନ୍, ଦୁଇପୁଅ ରମ୍‌ଜାନ୍ ଓ ଉସମାନ ପ୍ରମୁଖଙ୍କର ଛବି । ଆଃ···ସେମାନେ ସବୁ କଏ କୁଆଡ଼େ ହଜିଗଲେଣି, ତଥାପି ଶିମିଳୀଗଛର ସବୁଜ ଶାଖାରେ ଶାଖାରେ ଅଜଳନ୍ତ ଫୁଲ !

ଏକଦା ପ୍ରସିଦ୍ଧ 'ମାଷ୍ଟର କଟିଙ୍ଗ୍ ଆଣ୍ଡ୍ ଟେଲରିଙ୍ଗ୍'······ଏବେ ଏଇ ବସ୍ତି ସହରାଞ୍ଚଳରେ ଏକ ବହୁବ୍ୟବହୃତ ଆସବାବ ପରି ଉପେକ୍ଷିତ ହୋଇ ପଡ଼ିଥିଲା । ଏ ସୁଦୀର୍ଘ ଅଠରବର୍ଷ ମଧ୍ୟରେ, ଏଇ କ୍ଷୁଦ୍ର ସହରଟିରେ ମଧ୍ୟ ମନୁଷ୍ୟର ରୁଚି ଓ ମନୁଷ୍ୟ ମନୁଷ୍ୟ ମଧ୍ୟରେ ସମ୍ପର୍କରେ ଯେଉଁ ବିରାଟ ପରିବର୍ତ୍ତନ, ଅଦୃଶ୍ୟ ଭାବରେ, ଅଲକ୍ଷିତରେ ଘଟି ଯାଇଥିଲା, ହରି ମାଷ୍ଟର ତାହାର କୌଣସି ମାପ ଖୋଜି ପାଉ ନଥିଲା । ତଥାପି ଦୀର୍ଘ ଅଠର ବର୍ଷର ଦେଶାନ୍ତର ପରେ, ଏଇ ଅତି ପରିଚିତ ସହରଟି ତାକୁ ଜୀବନର ଉତ୍ସମୂଳ ପରି ଅତି ଅନ୍ତରଙ୍ଗ ଲାଗୁଥିଲା ।

ଦୋକାନବାହାରେ ଗୋଟାଏ ଖୁଣ୍ଟରେ ବନ୍ଧା ହୋଇଥିବା ପାଲତୁମାଙ୍କଡ଼ଟି ହଠାତ୍ କରିରି କିଚିରି ଶବ୍ଦ କରି, କାହାକୁ ଦାନ୍ତ ଦେଖାଇ ଚିତ୍କାର କରି ଉଠିଲା । କୌଣସି ଅପରିଚିତ ଆଗନ୍ତୁକକୁ ଦେଖିଲେ ପାଳିମାଙ୍କଡ଼ଟି ଆକ୍ରମଣ କରିବାପାଇଁ ଉଦ୍ୟତ୍ତ ଅାସେ । ପାଳିମାଙ୍କଡ଼ର ଚିତ୍କାର ଶୁଣି, ହରି ମାଷ୍ଟର, ଅତି ସନ୍ତର୍ପଣରେ ଚଇଁପରି ବେକ କାଢ଼ି ବାହାରକୁ ଅନାଇଲା ।

ଲୋଙ୍ଗକୋଟ୍ ଖଣ୍ଡେ ମଇଳା ପାଇଜାମା ଆଉ ଧଡ଼ଛିଣ୍ଡା ହାଓ୍ୱାଇନ୍ ପିନ୍ଧି ଜଣେ ଲୋକ, କାଖତଳେ ଗୋଟାଏ କାଗଜମୋଡ଼ା ପାକେଟ ଧରି ପିଣ୍ଡା ଉପରକୁ ଉଠି ଆସୁଥିଲା । ଏକ ଅପ୍ରସନ୍ନତାରେ ହରି ମାଷ୍ଟରର ମୁହଁର ରେଖାଗୁଡ଼ିକ କୁଞ୍ଚିତ ହୋଇଗଲା । ହତଭାଗା କଷ୍ଟମ୍ବ ଆସିଛି, ଫଟା ଛିଣ୍ଡା ପାଇଜାମା ରଫୁପାଇଁ, ନୋହିଲେ ମରାମତି

ପାଇଁ, ନୋହିଲେ ଲମ୍ବାରେ ବା ଚଉଡ଼ାରେ ଇଞ୍ଚେ ବା ଦୁଇଇଞ୍ଚ ବଢ଼ାଇବା ପାଇଁ । କାଲି ବା ପଅରଦିନ କେଉଁଠି ଅଛି ଇଣ୍ଟରଭ୍ୟୁ, ତା ପୂର୍ବରୁ ଏ ତାଳପକା ପାଇଜାମା ଓ ଜାମାଗୁଡ଼ିକ ଠିକ୍‌ କରି ଦୋରସ୍ତ ହେବା ଦରକାର । ଏପରି ବହୁ ଅର୍ଡ଼ର ହିନ ମାଷ୍ଟର ଏବେ ତାମିଲ କରିଥାଏ । କିନ୍ତୁ······ଏ ସବୁ ହିନମାଷ୍ଟରର କର୍ମ ନୁହେଁ; ତଥାପି ଏହା ବ୍ୟତୀତ ଅନ୍ୟ କୌଣସି ସମ୍ଭ୍ରାନ୍ତ ଅର୍ଡ଼ର ଧରି ଏବେ କେହି ହିନ-ମାଷ୍ଟରର 'ମାଷ୍ଟର ଟେଲରିଙ୍ଗ୍‌ ଆଣ୍ଡ୍‌ କଟିଙ୍ଗ୍‌'ର ସିଡ଼ି ମାଡ଼େନାହିଁ ।

ସେହି ଆଗନ୍ତୁକ ବ୍ୟକ୍ତି ଇତିମଧ୍ୟରେ, ଦୋକାନର ଗହ୍ୱର-ଭିତରେ ଅଦୃଶ୍ୟ ହୋଇ ଯାଇଥିଲା ।

ଅମିତାଭ ସାମ୍‌ନାରେ ପଡ଼ିଥିବା ସିଗାରେଟ ପାକେଟ୍‌ରୁ ଖଣ୍ଡେ ସିଗାରେଟ କାଢ଼ି, ଓଠରେ ଗୁଞ୍ଜିଧରି ସେଥିରେ ନିଆଁ ଲଗାଇଲା । ଏକ ଗୃଞ୍ଜଳୀକର ଅନୁସନ୍ଧାନର ସଫଳତାରେ ତାହାର ଦୁଇ ଆଖି ମୋଟା ଲେନ୍‌ସର ଚଷମା ତଳେ, ଦପ୍‌ ଦପ୍‌ ହୋଇ ଜଳି ଉଠିଲା । କିନ୍ତୁ ସେତିକ-ବେଳେ ଦୁଇଟା ମାଛି ହଠାତ୍‌ ଉଡ଼ିଆସି ଅମିତାଭର ନାକଦଣ୍ଡା ଉପରେ ବସିପଡ଼ିବାରୁ, ସେ ହାତରୁ ଖବରକାଗଜଟା ଫିଙ୍ଗିଦେଇ ଉତ୍‌କ୍ଷିପ୍ତ ପରି ଠିଆହୋଇ ପଡ଼ିଲା ।

ଆଃ······ଏଇ ମାଛି ଆଉ ଗୁପ୍ତଚର ! ଦେଶର କୋଣେକୋଣେ ଭରି ହୋଇ ପଡ଼ିଛନ୍ତି ! ଅମିତାଭ ଏହି ବିରକ୍ତିକର ଅସ୍ୱସ୍ତିକର ପରିବେଶ ମଧ୍ୟରେ 'ସ୍ୱଦେଶ-ମିତ୍ର' ସ୍ତମ୍ଭରେ ଗୋଟିଏ ଲେଖାପାଇଁ ପ୍ରାରମ୍ଭିକ ବାକ୍ୟର ସନ୍ଧାନ ପାଇ ଯାଇଥିଲା । 'ସହରର ଜନସ୍ୱାସ୍ଥ୍ୟ ତଥା ରାଜ-ନୈତିକ ସ୍ୱାସ୍ଥ୍ୟ ମାଛି ଓ ଗୁପ୍ତଚରମାନଙ୍କଦ୍ୱାରା ବିପନ୍ନ !' ରୂପକର ଶିବୃତା, ଉପମାନ ଓ ଉପମେୟର ଅଭିନବତ୍ୱ, ପାଠକମାନଙ୍କୁ ଯେପରି ଏକ ସୁତୀବ୍ର ଆବେଦନରେ ଅଭିଭୂତ କରିଦେବ, ଅମିତାଭ ସେହି କଳ୍ପନା ମଧ୍ୟରେ, ହିନ ମାଷ୍ଟର ଓ ସେହି ଆଗନ୍ତୁକର କଥା ସାମୟିକଭାବରେ ବିସ୍ମୃତ ହୋଇ ପଡ଼ିଥିଲା ।

ସେ ଆଗନ୍ତୁକ ଜଣକ ତଥାପି ଦୋକାନଭିତରୁ ବାହାରି ନାହିଁ । ହନି ମାଷ୍ଟର ସହିତ କି ଷଡ଼୍‌ଯନ୍ତ୍ରର ଗୋପନ ମନ୍ତ୍ରଣା ସେଠାରେ ଚାଲିଛି କିଏ ଜାଣେ ? ହନି ମାଷ୍ଟରର ପୋଷା ପାରାମାନଙ୍କଡ଼ିକ ଖୁଣ୍ଟରେ ବନ୍ଧା-ହୋଇ ଏ ପର୍ଯ୍ୟନ୍ତ ନିଶ୍ଚଳଭାବରେ, ନୀରବରେ ବସି ଢୁଳାଉଥିଲେ; କିନ୍ତୁ ଏବେ ଅକାରଣରେ କେତେବେଳେ ଖୁଣ୍ଟ ଉପରକୁ ଚଢ଼ିଯାଇଁ, ଆଉ କେତେବେଳେ ତଳକୁ ଖସିଆସି ଏକ ବିଚିତ୍ର କର୍କଶ ମିଶ୍ରିତ ଶବ୍ଦ କରି ସର୍କସ ଜୋକରପରି ନାଚୁଥିଲେ, କୁଦୁଥିଲେ, ନାନା ଅଙ୍ଗଭଙ୍ଗୀ ପ୍ରଦର୍ଶନ କରୁଥିଲେ ।

ଏବେ ଯେଉଁଠାରେ ଗୋଲପି ଛିଟକନାର ଧାଡ଼ିରିପିନ୍ଧା ପୋଷା ପାରାମାନଙ୍କଡ଼ିକ ବନ୍ଧା ହୋଇଥିଲେ, ଅଠର ବର୍ଷ ପୂର୍ବେ ସେଠାରେ ବନ୍ଧା ଥିଲା ହୃଷ୍ଟପୁଷ୍ଟ ଉଚ୍ଚର ଗୋଟିଏ ଛେଳି । ତାହାର ଦୁଇ ଶିଙ୍ଗ ଦୁଇଟି ବର୍ଚ୍ଛାପରି ଉପରକୁ ମୁନିଆଁ ହୋଇ ଉଠିଥିଲା । ଥୋମଣିତଳେ ଗୋଟିଏ ଦାଢ଼ି ଚୀନା ଦାର୍ଶନିକମାନଙ୍କ ଦାଢ଼ିପରି ତଳକୁ ଲମ୍ବି ଆସିଥିଲା । ବିଲାତି ସିଙ୍ଘୁର ପତ୍ରପରି କାନ ଦୁଇଟା ତଳକୁ ଥୋମଣି ପର୍ଯ୍ୟନ୍ତ ଝୁଲି ପଡ଼ିଥିଲା । 'ମାଷ୍ଟର କଟିଙ୍ଗ୍ ଆଣ୍ଡ୍ ଟେଲରିଙ୍ଗ'ର ସଙ୍କୀର୍ଣ୍ଣ ଅଣଓସାରି ପିଣ୍ଡା ଉପରେ, ଖୁଣ୍ଟରେ ବନ୍ଧାହୋଇ, ଆଖିବୁଜି ହନସାରି ସେ ପାକୁଳି କରୁଥିଲା, ଆଉ ହନି ମାଷ୍ଟର ଗୋଟିଏ ସିଲେଇ ମେସିନ୍ ପାଖରେ ବସି, ମେସିନ୍ ଚଲାଇବା ସଙ୍ଗେସଙ୍ଗେ, ସହରରେ ନୂତନତମ ଫିଲମ୍‌ର ଲୋକପ୍ରିୟ ସଙ୍ଗୀତ ଗୁଣୁ ଗୁଣୁ କଣ୍ଠରେ ଗାଉଥିଲା, ବେଳେ ବେଳେ ମେସିନଟା ବନ୍ଦକରି ଗୀତରେ ତନ୍ମୟ ହୋଇ ପଡ଼ୁଥିଲା, ନୋହିଲେ ଗୀତ ବନ୍ଦ କରି ନିଜର ସୂଚୀଶିଳ୍ପରେ ଆତ୍ମବିସ୍ମୃତ ହୋଇ ପଡ଼ୁଥିଲା । ଖଦେଦାର-ମାନଙ୍କର ଭିଡ଼ ସେଦିନ ଏଠାରେ ଥିଲା ପ୍ରଚୁର, ହନି ମାଷ୍ଟରର କଟିଙ୍ଗ୍‌ରେ ମଧ୍ୟ ଥିଲା ଏକ ବିଶେଷତ୍ୱ--ସେ ଫତେଇ ହେଉ, କୁର୍ତ୍ତା ହେଉ, ପଞ୍ଜାବୀ ହେଉ ବା 'ଓପନ୍-କଲର୍' କାମିଜ୍ ହେଉ ।

ମଧ୍ୟବୟସ୍କ, ସୁପୁଷ୍ଟ ଦେହ, ଓସ୍ତାଦି ଆଖଡ଼ାରେ ବଳା ନିଟୋଳ ମାଂସପେଶୀ, ମୁହଁରେ ତ୍ରିକୋଣାକାରରେ କଟା ସୁଦୃଶ୍ୟ ଦାଢ଼ି, ଆଖିରେ ସୁର୍ମା, କାନରେ ଅତରଦିଆ ତୁଳା, ଗ୍ଳାରେ କଳା ଫିତାରେ ବନ୍ଧା

ଘୁରିକୋଣିଆ ଗୋଟିଏ ରୁପାଚାଦର ଓ ପିନ୍ଧାରେ ଖଣ୍ଡେ ଗାରଟଣା ସାବଜା ଲୁଙ୍ଗି······ସେଦିନର ହନି ମାଷ୍ଟର ସମ୍ଭବତ, ଜନମ୍ମୃତିରେ ବର୍ଜିତ, ଉପେକ୍ଷିତ ଓ ବିସ୍ମୃତ ଏ ବ୍ୟକ୍ତିଟିର ଅବଶ୍ୟ କୌଣସି ସାମଞ୍ଜସ୍ୟ ନାହିଁ । ସେଦିନ ଯେଉଁଠାରେ କଳା ମୁର୍ ମୁଚ ବାଳର ଲହର ଖେଳୁଥିଲା, ଏବେ ତାହା ଚନ୍ଦା ପଡ଼ି ଆସିଥିଲା । ଆଖି ଦୁଇଟି କୋଟରଗତ । ଦୁଇ ପାଖର ଗାଲ ତଳକୁ ଝୁଲି ଆସିଥିଲା । ଗ୍ରୀବା ଓ ବାହୁର ମାଂସପେଶୀମାନ ଶିଥିଳ ଓ ଲୋଳିତ ହୋଇ ଶୁଖିଲା ଫଳପରି, ଦେହର ଶୀର୍ଣ୍ଣ ଶାଖାରେ ଯେପରି ଝୁଲି ରହିଥିଲା । ଆଖିରେ ସୁର୍ମାର ଅଞ୍ଜନ ନଥିଲା, କାନରେ ଅତର କାଠିର ବାହାର୍ ନ ଥିଲା । ଅଠର ବର୍ଷ ତଳର ସେହି ସଯତ୍ନ ଲାଳିତ ଦାଢ଼ି ଏବେ ରୁକ୍ଷ ଓ ପିଙ୍ଗଳ ଦିଶୁଥିଲା । କେତୋଟି ଦାନ୍ତ ଖସି ପଡ଼ିଥିବାରୁ ହନି ମାଷ୍ଟରର ବଳିଷ୍ଠ ସୁଗଠିତ ମୁହଁଟି ଆକୃତିହୀନ ଦିଶୁଥିଲା ।

*　　*　　*　　*

ପିତୃଦତ୍ତ ହନିଫ୍ ମିର୍ଜା ନାମଟି କପରି ହନେ ହନି ମାଷ୍ଟରରେ ପରିଣତ ହେଲା, ସେ ତଥ୍ୟ ଅବଶ୍ୟ ଜଣା ନାହିଁ । ସମ୍ଭବତଃ ସୂଚୀ-ଶିଳ୍ପରେ କୁଶଳତା ହେତୁ, କେହି ବିଦଗ୍‌ଧ ଗୁଣଗ୍ରାହୀ ତା'ର ନାମ ସହିତ, ମାଷ୍ଟର ଉପାଧିଟି ଯୋଡ଼ି ଦେଇଥିଲା । ହନିଫ୍ ମାଷ୍ଟର ସଂକ୍ଷେପିତ ହୋଇ ଅବଶେଷରେ ରହିଥିଲା "ହନି ମାଷ୍ଟରରେ" ! ମାତ୍ର ଏହି ସମ୍ବୋଧନ ମଧ୍ୟରେ ଥିଲା, ଏହି ବ୍ୟକ୍ତିଟି ପ୍ରତି ଏକ ସାର୍ବଜନୀନ ଶ୍ରଦ୍ଧା ଓ ସମ୍ବେଦନ । ବସ୍ତି ଆଖଡ଼ାଠାରୁ ସୌଖୀନ ଗରାଖମାନଙ୍କର ମହଲ ପର୍ଯ୍ୟନ୍ତ, ସବୁଠାରେ ତା'ର ପରିଚୟ ଥିଲା···ହନି ମାଷ୍ଟର ।

ସାହାର ଦଶହରା ବଡ଼୍‌ବାଲି ଉତ୍ସବରେ, ମେଢ଼ ବିସର୍ଜନ ପାଇଁ ବନ୍ଧୁମାନଙ୍କର ପଟୁଆର ବାହାରିବା ବେଳେ, ହନି ମାଷ୍ଟର ସମସ୍ତଙ୍କର ପୁରୋଭାଗରେ ନବାହାରିଲେ ମେଢ଼ ଉଠୁ ନଥିଲା । ପିନ୍ଧାରେ ଗାରକଟା ଲୁଙ୍ଗି, ଦେହରେ ଫୁଲପକା ପାତଳା ଅଦ୍ଧି କନାର ପଂଜାବୀ, ମୁଣ୍ଡରେ ଗୋଲାପି ଜରକୋଟରପଗଡ଼ି, ବେକରେ ହଳଦିଆ କଲପିର ମାଳା, ହାତରେ

ତଡାଏ ଜଣାର ରୂପାଗୋବବସା ବାଉଁଶ ଠେଙ୍ଗା·····ହନି ମାଷ୍ଟରର ଏହି ମୂର୍ତ୍ତିଟିକୁ ସାହ୍ୱରେ ଛାପି କେହ୍ୱକେହ୍ୱ ମନେ ରଖିଅଛନ୍ତି ।

* * * *

ହନି ମାଷ୍ଟର, କିଛି ସମୟ ପରେ ଅନ୍ଧାର-ଗୁମ୍ଫାର ଗହ୍ୱର ପରି ଦିଶୁଥିବା ଦୋକାନ ଭିତରୁ ବାହାରି, ପ୍ରଥମେ ଚୈତ୍ର ମଧ୍ୟାହ୍ନର ଉତ୍ତପ୍ତ ଆକାଶ ଓ ତା'ପରେ ଜନବିରଳ ଗଳିସଡ଼କର ବାମ ଓ ଦକ୍ଷିଣକୁ ଶୂନ୍ୟ, ଅର୍ଥହୀନ ଦୃଷ୍ଟିରେ ଚାହିଁ, ପୁଣି ସେହି ଗୁମ୍ଫା ଭିତରକୁ ଚାଲିଗଲା । ଇତି-ମଧ୍ୟରେ ଟ୍ରୁଲାଇ ପଡ଼ିଥିବା ଯାତ୍ରୀମାନଙ୍କ ଉଠା, ପୁଣି ପରସ୍ପର ଜଣଙ୍କ ପିଠିରେ ଚଢ଼ାଉ କରି ନାଚ କୁଦ ଖୁଣ୍ଟ ଉପରକୁ ଉଠି, ହନି ମାଷ୍ଟରର ଦୃଷ୍ଟି ଆକର୍ଷଣ କରିବାପାଇଁ ଟ୍ରାଫିକ୍ ଖେଳ ଆରମ୍ଭ କରି ଦେଇଥିଲା ।

ଅମିତାଭ ମନେମନେ ବିଶ୍ଳେଷଣ କରୁଥିଲା···ସେ ଅଚହ୍ନା ଗାଉଁଲିଟି ମଧ୍ୟ ନିଶ୍ଚୟ ଅନ୍ୟ ଏକ ସ୍ପାଇ; କୌଣସି ଗୁପ୍ତ ସମ୍ବାଦ ଧରି ହନି ମାଷ୍ଟର ନିକଟକୁ ଆସିଥିଲା । ତା ନହେଲେ, ଏହି ଅଶ୍ଳୀଳ ଦୋକାନକୁ କୌଣସି ମାର୍ଜିତ, ରୁଚିବନ୍ତ ଲୋକ ପୋଷାକ ସିଲାଇପାଇଁ କେବେ ଆସନ୍ତା କି ? ସେ ହୁଏତ ଆଣିଥିଲା, ଓ୍ୱାୟାରଲେସ ଟ୍ରାନ୍ସମିଟର ସେଟ୍, ହାଣ୍ଡ ଗ୍ରେନେଡ଼···ନୋହିଲେ ସଙ୍ଗରେ ନେଇଗଲା ଏହି ସହର ସମ୍ପର୍କରେ କେତେକ ଗୋପନୀୟ ତଥ୍ୟ ! ତା ନହେଲେ ହନି ମାଷ୍ଟର ଦୋକାନ ପିଣ୍ଡାରେ ଠିଆ ହୋଇ, ବିବେକଦଂଶ୍ଟ୍ର ଅପରାଧୀପରି ଏଣେ ତେଣେ ସେ ସେପରି ଚାହୁଁଛି କାହିଁକି ?

ଗଳିମୋଡ଼ରେ ଦୁଇଜଣ କନେଷ୍ଟବଲ୍ ଅପଥାରେ ବୁଟ୍‌ଯୋଡ଼ା ମଚ୍ ମଚ୍ କରି ଟ୍ରାଫିକ୍ ଉଜଡ଼ିରୁ ଫେରୁଥିଲେ ···ଯେପରି ସବୁ ଦମ୍ଭ ଓ ଅହଙ୍କାର ସେମାନଙ୍କର ସେହି ବୁଟ୍‌ଯିଣା ଟାଙ୍ଗରେ । ସେମାନଙ୍କୁ ଦେଖିବା-ମାତ୍ରେ ହନି ମାଷ୍ଟର ଦୋକାନ ଭିତରକୁ ପଶିପାଇଁ ଭିତରୁ କବାଟ ଆଉଜାଇ ଦେଲା ।

ଅମିତାଭ ଗୋଟିଏ ଅଭିନବ ଆବିଷ୍କାରର ସଫଳତାରେ ପ୍ରୀତ ହୋଇ, ଏକ ପ୍ରଚଣ୍ଡ ଆତ୍ମସନ୍ତୋଷରେ, ଖଣ୍ଡେ ସିଗାରେଟରେ ନିଆଁ ଲଗାଇଲା । ହନି ମାଷ୍ଟର ଦୋକାନ ଭିତରେ ମେସିନ ଚଳାଇବା ଆରମ୍ଭ କରିଥିଲା । ମେସିନର ଶବ୍ଦରେ ସେଣ୍ଟ୍ର ଜନବିରଳ ଗଳିରାସ୍ତାର ନିଶୂନ୍ତି ହଠାତ୍ ଯେପରି ଭାଙ୍ଗ ପଡ଼ୁଥିଲା ।

ଆଜକୁ ଅଠର ବର୍ଷ ତଳେ···

ସ୍ତ୍ରୀ ଅସଗରିଜାନ୍‌ର ମୃତ୍ୟୁ ପରେ, ହନିମାଷ୍ଟରର ଚିରପ୍ରଫୁଲ୍ଲ ବେପରୁଆ ମିଜାଜ୍ ହଠାତ୍ ଫସାର୍-ବିମୁଖ ଓ ଉଦାସ ହୋଇ ପଡ଼ିଥିଲା । ଦୁଇ ପୁଅ ରମଜାନ୍ ଓ ଉସମାନ୍ କଲିକତା ପୋର୍ଟରେ ଖଲସି କାମ କରୁଥିଲେ, ମାତ୍ର ବହୁଦିନୁ ସେମାନଙ୍କର କୌଣସି ପତ୍ର ନଥିଲା । ପ୍ରତିବେଶୀ ଅନ୍ୟ କଲିକତା ପ୍ରତ୍ୟାଗତମାନଙ୍କଠାରୁ ଶୁଣାଶୁଣିରେ ଖବର ମିଳିଥିଲା, ସେମାନେ ଯାଇଥିଲେ ଢାକା ମୁହଁରେ !

ଉତ୍କଟ ସାମ୍ପ୍ରଦାୟିକତାରେ ବିଷାକ୍ତ ସେଣ୍ଟ୍ରସବୁ ଭୟଙ୍କର ଦିନ··· ଆଜି କଳ୍ପନା କଲେ ସୁଦ୍ଧା ଦେହ ଶୀତେଇ ଉଠେ ! ମାତ୍ର ସେତେବେଳକୁ ଏହି ସହରରେ ସଂଖ୍ୟାଗରିଷ୍ଠମାନଙ୍କର ଆଖି, କାତର ଆକ୍ଷେପରି ଶୀତଳ କଠୋରତାରେ ନିଷ୍ପ୍ରାଣ ଓ ଅଭିବ୍ୟକ୍ତିହୀନ ହୋଇ ନଥିଲା; କିମ୍ବା ସଂଖ୍ୟାଲଘୁମାନଙ୍କର ଆଖି ଆଶଙ୍କା ପୁଣି ଆତଙ୍କରେ ଘୁଇଡ଼ାଙ୍କା କଳାଦ୍ରୁମର ପାଣିପରି ଛଳଛଳ ହୋଇ ନଥିଲା, କିମ୍ବା ଗୁମ୍‌ଗୁମିଆ ରଡ଼ନିଆଁ ଉପରେ ପାଉଁଶର ଆବରଣ ପରି, ପ୍ରଚ୍ଛନ୍ନ-ଶତ୍ରୁତାରେ ବିଦ୍ଧସ୍ତ ଦିଶି ନ ଥିଲା । ଏହି ଶ୍ରେଷ୍ଠ ସହରଟି ସେଦିନ, ଗଦାଏ ବାରୁଦପରି, ବିସ୍ଫୋରଣର ଅପେକ୍ଷାରେ ଜ୍ୱାଳାମୟ, ଅସହମୀୟ ଓ ଅକଥନୀୟ ହୋଇ ନଥିଲା । ସେ ଦିନଗୁଡ଼ିକ ଏବେ ସ୍ମରଣ କଲେ ଏକ ଅସ୍ୱସ୍ତିରେ, ହନି ମାଷ୍ଟରର ଚେତନା ଜର୍ଜରିତ ଓ ଶିହରିତ ହୋଇ ଉଠେ ।

ଖରିଦ୍‌ଦାରମାନଙ୍କର ଆସିବା ହଠାତ୍ ଦିନେ ବନ୍ଦ ହୋଇଗଲା । ନିଜ ସମ୍ପ୍ରଦାୟର ଯେଉଁମାନେ ଆସନ୍ତି, କେହି ଖଣ୍ଡେ ଫତେଇ ବା କୁର୍ତ୍ତା

ବା ଜଂଘିଆ ସିଲେଇପାଇଁ; ହଜ ମାଷ୍ଟର ସେମାନଙ୍କୁ ଦୁର୍ ଦୁର୍ କରି ତଡ଼ିଦିଏ । ଏସବୁ ହଜମାଷ୍ଟରର କର୍ମ ନୁହେଁ । ସେଥିପାଇଁ ଦୁଷ୍ଟ ଦୋକାନ ଅଛି, ଦୁଷ୍ଟ ମିସ୍ତ୍ରୀ ଅଛନ୍ତି । ସନ୍ଧ୍ୟାରେ ବସ୍ତିର ଟୋକାମାନେ ହଜ ମାଷ୍ଟରର ଦୋକାନପିଣ୍ଡାରେ ଆଉ କର୍ଓ୍ୱାଲ୍ଲି ଆଡ୍‌ଡ଼ାରେ ଜମନ୍ତି ନାହିଁ; ଦୋକାନ ସାମ୍‌ନା ରାସ୍ତା ଉପରେ ଅଖା ବଛେଇ, ରାସ୍ତାର ବିଜୁଳି ଆଲୁଅରେ ତାସ ଖେଳ ଲଗାନ୍ତି ନାହିଁ ।

କଲିକତା, କାନପୁର, ଦିଲ୍ଲୀ, ବମ୍ବେ···ସବୁଠି ରକ୍ତର ହୋରି-ଖେଳ । ଏହି ଶ୍ରେଷ୍ଠ ସହରଟି ସେତେବେଳେ, ସାମ୍ପ୍ରଦାୟିକ ହିଂସାର ଉତ୍ତରଳ, ଫେନିଳ ଜଳରାଶି ମଧ୍ୟରେ, ଏକ ଦ୍ୱୀପପରି ଅବଶ୍ୟ ବିଚ୍ଛିନ୍ନ ରହିଥିଲା । ତଥାପି ତାହାର ବିଷାକ୍ତ ଲହରୀର ଆଘାତରେ ଏହି ସହରର ମର୍ମମୂଳ ଯେପରି ପ୍ରକମ୍ପିତ ହୋଇ ଉଠିଥିଲା ।

ପ୍ରତ୍ୟେକଟି ମୁହୂର୍ତ୍ତ ଆଶଙ୍କା ଓ ସନ୍ଦେହରେ ଦୁର୍ବିସହ । ପ୍ରତ୍ୟେକଟି ରାତି ଆତଙ୍କିତ ଓ ବିନିଦ୍ର । ପ୍ରତ୍ୟେକଟି ପ୍ରହରରେ ଆତ୍ମରକ୍ଷା ନଚେତ୍ ଆକ୍ରମଣ ପାଇଁ ପ୍ରସ୍ତୁତ ।

ସେତେବେଳେ ସାମାନ୍ୟ ଦିଆସିଲି କାଠି ଖଣ୍ଡେ ସୁଦ୍ଧା, ସେହି ବାରୁଦ ସ୍ତୂପକୁ ଏକ ଅଗ୍ନ୍ୟୁଦ୍‌ଗାରରେ ପରିଣତ କରି ଦେଇ ପାରନ୍ତା । ଅଗ୍ନ୍ୟୁଦ୍‌ଗାର ହୋଇଥିଲେ ତାହା ଅବଶ୍ୟ ଜଳି ପୁଣି ନିଭି ଯାଇଥାନ୍ତା··· ମାତ୍ର ପ୍ରତିମୁହୂର୍ତ୍ତରେ ଜଳି ଉଠିବାର ଆଶଙ୍କା, ଜଳିବାଠାରୁ ଥିଲା ଆହୁରି ଉତ୍ପୀଡ଼କ—!

ଏଇ ଆଜି ରାତିଅଧରେ ହେବ ଚଢ଼ାଉ···କାଲି ହେବ ଆକ୍ରମଣ, ···ପ୍ରତ୍ୟେକଟି ମୁହୂର୍ତ୍ତ ଉଦ୍‌ବେଗ ଓ ଆଶଙ୍କାରେ ଅସ୍ଥିର । ସବୁଆଡ଼େ ଅସୁମାରି କାଚ ଆଖି; ଅନ୍ଧାରରେ ମହାବଳର ଜଳନ୍ତା ଆଖି ପରି ।

ଓଃ···ମଣିଷର ଆଖି ପୁଣି ଏପରି ଭୟଙ୍କର ହୋଇପାରେ ?

ପାକିସ୍ଥାନ କ'ଣ ସେ ବୁଝି ନଥିଲା···

ଏବେ ଅବଶ୍ୟ ସେ ପାକିସ୍ଥାନର ସ୍ୱରୂପ ନିଜ ଆଖିରେ ଦେଖିଛି ···ମୁଷ୍ଟିମେୟ ଧର୍ମାନ୍ଧଙ୍କର କ୍ଷମତାଲିପ୍ସାର ଚରିତାର୍ଥତା ପାଇଁ ରକ୍ତର ଏକ ଜୁଆଖେଳ ରୂପେ ପାକିସ୍ଥାନକୁ ସେ ଚିହ୍ନିଛି; କିନ୍ତୁ ସେଦିନ ପ୍ରତ୍ୟେକ ମୁସଲମାନର ଦୃଷ୍ଟିରେ ପାକିସ୍ଥାନ ଥିଲା, ନୂତନ ମକ୍କା, ମର୍ତ୍ତ୍ୟରେ ଜନ୍ନତ୍ ।

ଏହି ପରିସ୍ଥିତିରେ ଦିନେ ହନି ମାଷ୍ଟର ତାହାର ପୁରୁଣା ସିଙ୍ଗର ମେସିନର ବନ୍ଧୀଲବ୍ଧ ପାଣ୍ଡିଧରି, ଦୋକାନରେ ତାଲା ଝୁଲାଇ, ଶିମିଳୀ ଗଛମୂଳେ ପୀରଙ୍କ ସମାଧିତଳେ ଗୋଟିଏ ଧୂପକାଠି ଜଳାଇ, ବାହାରି ଯାଇଥିଲା ପାକିସ୍ଥାନ ଅଭିମୁଖରେ ।

*　　*　　*　　*

ମେସିନର ଶବ୍ଦ ବନ୍ଦ ହୋଇ ଯାଇଥିଲା । ହନି ମାଷ୍ଟର ଦୋକାନ ପିଣ୍ଡାରେ ଠିଆ ହୋଇ, ରାସ୍ତା ଆଡ଼େ ଶୂନ୍ୟଦୃଷ୍ଟିରେ ଏପାଖ ସେପାଖ ଚାହିଁ, ଯେପରି କାହାର ଉତ୍କଣ୍ଠିତ ଅପେକ୍ଷାରେ ଠିଆହୋଇ ରହିଥିଲା ।

ଅମିତାଭ ଖବରକାଗଜ ଉଢ଼ାଳରେ ସିଗାରେଟ ଧୂଆଁର କୁଣ୍ଡଳୀ ଉଡ଼ାଇ, ମନେ ମନେ ହନିମାଷ୍ଟରର ପ୍ରତ୍ୟେକ ଆଚରଣ ଓ ଭଙ୍ଗୀ ବିଶ୍ଳେଷଣ କରି, ତାହାକୁ ନିଶ୍ଚିତ ଭାବରେ ଜଣେ ସ୍ପାଇ ରୂପେ ପ୍ରମାଣିତ କରିବାପାଇଁ ଯେପରି ନୂଆନୂଆ ଉପାଦାନମାନ ଆବିଷ୍କାର କରୁଥିଲା ।

ସିଲେଇ ମେସିନର ଶବ୍ଦ ହଠାତ୍ ବନ୍ଦ ହୋଇଯିବାରୁ, ଅମିତାଭର ଚିନ୍ତାର ଖିଅ ଛିଣ୍ଡିଗଲା । ସେ ଆଉ ଖଣ୍ଡେ ସିଗାରେଟରେ ନିଆଁ ଲଗାଇ ବାହାରକୁ ଉଠି ଆସିଲା ।

ରେସ୍ତୁରାଁର ମାଲିକ, ପ୍ରବେଶଦ୍ୱାର ପାଖରେ ଖଣ୍ଡେ ଟେବୁଲ ପାଖରେ ଗୋଟିଏ ତେଲଚକଟାବୋଳା ଚଉକି ଉପରେ ବସି ରେଡ଼ିଓଟି ସେହି ମାତ୍ର ଖୋଲି ଦେଇଥିଲା ।

ମଧ୍ୟାହ୍ନ ଗୋଟାଏ···ରେଡ଼ିଓରେ ମଧ୍ୟାହ୍ନ ଅଧିବେଶନ ଆରମ୍ଭର ସୂଚନାସଙ୍ଗୀତ ବାଜି ଉଠୁଥିଲା । ଅମିତାଭ ସେହି ବାଟଦେଇ ଆସିବା-

ବେଳେ ସେ, ଚଉକୀ ଉପରୁ ଉଠି ଆସି, ଅତି ସନ୍ତର୍ପଣରେ ଅମିତାଭଙ୍କୁ ପଚାରିଲା···"ଆମର ଏ ସହରକୁ କେତେଜଣ ପାକିସ୍ତାନୀ କୁଆଡ଼େ ହାତବୋମା ଆଉ ବନ୍ଧୁକ ଧରି ଆସିଛନ୍ତି ?"

ଅମିତାଭ ରହସ୍ୟପୂର୍ଣ୍ଣ ଭାବରେ ମୃଦୁ ମୃଦୁ ହସି, ଦୋକାନୀ ଆଡ଼େ ଚାହିଁ କହିଲା, "ଏଇ ତୁମ ସାମନାରେ ତ ପାକିସ୍ତାନୀ ଭାଇ !"

କେତେଜଣ ପୂର୍ବପାକିସ୍ତାନୀ ଲୁଗାବିକାଳୀ, ଲୁଗାବୋଝମାନ ପିଠିରୁ ଓହ୍ଲାଇ, ହନି ମାଷ୍ଟରର ଦୋକାନପିଣ୍ଡାରେ ବସି ଦେହରୁ ଝାଳ ମାରୁଥିଲେ ।

ହନି ମାଷ୍ଟରର ଦୋକାନକୁ ଲାଗି ସ୍ଲେଟ ପଡ଼ିଆଟିରେ ଏତେଦିନ ଥିଲା ଶାଖା ପ୍ରଶାଖା ମେଲି ଠିଆ ହୋଇଥିବା ଶିମିଳୀ ଗଛଟି ଲାଲ ଫୁଲର ଭାରରେ ଭାଙ୍ଗି ପଡୁଥିଲା । ଜୀବନ ଯେପରି ନିରୁତ୍ସବ ମାସ ଓ ବର୍ଷର ପୌନପୌନିକତା ମଧ୍ୟରେ କେବଳ ଗୋଟିଏ ବର୍ଣ୍ଣାଢ୍ୟ ମୁହୂର୍ତ୍ତ ମାତ୍ର ! ଶିମିଳୀ ଫୁଲର ଲାଲ ପାଖୁଡ଼ାମାନ ତଳେ ପୀରଙ୍କ ସମାଧି ଉପରେ ଓ ତାର ଚୂରିପଟେ ପୁଷ୍ପାଞ୍ଜଳି ପରି ଝରି ପଡୁଥିଲା । ଦରବେଶ ପରି ଦିଶୁ-ଥିବା ଦୁଇଜଣ ଫକୀର ସମାଧି, ପାଖରେ ନମାଜ ପଢ଼ିବାପାଇଁ ପ୍ରସ୍ତୁତ ହେଉଥିଲେ । ସମାଧିଟା ଏତେଦିନ ଉପେକ୍ଷିତ ହୋଇ ପଡ଼ିଥିଲା, ମାତ୍ର ହନି ମାଷ୍ଟର ଆସିବାପରେ ସେଥିରେ ଚୂନ ବୋଳାଯାଇ, ତାହା ସୁରକ୍ଷିତ ଦିଶୁଥିଲା । ସମାଧି ଉପରେ ବିଭିନ୍ନ ବଙ୍କିମଚନ୍ଦ୍ରାଙ୍କିତ ଗୋଟିଏ ସାବୁଜା ରଙ୍ଗର ପତାକା ମଧ୍ୟ ଉଡୁଥିଲା । ମାଟିରେ କେତେଟା ଧୂପଦାନୀ ଓ ଝୁଣା-ପାତ୍ର ସେଠାରେ ଇତଃସ୍ତତ ବିକ୍ଷିପ୍ତ ହୋଇ ପଡ଼ିଥିଲା ।

ଅମିତାଭ କହିଲା···"ଏଇ ପତାକା ଦେଖୁଛ, ଏ ପାକିସ୍ଥାନର ଜାତୀୟ ସଙ୍କେତ ।"

ହନିମାଷ୍ଟର· ନମାଜ ପଢିବାପାଇଁ, ମୁହଁ ହାତ ଧୋଇ, ସେହି ସମାଧି ପାଖକୁ ଲମ୍ବା ଲମ୍ବା ପାଦ ପକାଇ ଚାଲି ଯାଉଥିଲା । ନମାଜ ଶେଷ ହେଲେ, ସେ ଦରବେଶ୍ ଦୁଇଜଣ ଏଠାରେ ଦୋକାନ ପିଣ୍ଡାରେ ଆସି ମଧ୍ୟ ଜୁଟିବେ । ସେମାନେ ଯେ ସ୍ଥାନୀୟ ଅଧିବାସୀ ନୁହନ୍ତି, ତାହା

ସେମାନଙ୍କ ବେଶଭୂଷାରେ ସୁସ୍ପଷ୍ଟ ଥିଲା । ଦେହରେ କଳା ଅଲଖାଲ୍ଲା, ବେକରେ ନାନାରଙ୍ଗର କାଚମାଳ, ମୁଣ୍ଡରେ କାନ୍ଧ ପର୍ଯ୍ୟନ୍ତ ଲମ୍ବି ଆସିଥିବା ବାବୁରିବାଳ ଓ ମୁହଁରେ ଲମ୍ବା ଅଯତ୍ନ-ବନ୍ୟସ୍ତ ଦାଢି—ସବୁ ମିଶି ସେମାନଙ୍କ ଚେହେରାକୁ ରହସ୍ୟାବୃତ କରି ରଖିଥିଲା ।

ଦୋକାନୀ ସେଇ ସମାଧିସ୍ଥାନ ଆଡକୁ ଗୁହିଁ ଭାବୁଥିଲା, ହନି ମାଷ୍ଟର ଦେଶାନ୍ତରୀ ହେବା ପରେ, ତା'ର ଚିଅଖଣ୍ଡକୁ ମିଶାଇ ଏ ଜାଗାଟି ଦଖଲ କରିବା ପାଇଁ ଅତୀତରେ ତାର ବହୁ ବ୍ୟର୍ଥଚେଷ୍ଟାର କଥା । ସାହିର ହିନ୍ଦୁ ଲୋକେ ସୁଦ୍ଧା, ସେଥିରେ ବାଧା ଦେଲେ ! ପୀରସ୍ଥାନ ସେମାନଙ୍କ ପକ୍ଷରେ ସୁଦ୍ଧା ପବିତ୍ର ! ଏଇ ସମୟରେ କେଉଁଆଡୁ ହଠାତ୍ ଅନଦ୍ଭୁତ ପରି ହନି ମାଷ୍ଟର ଦିନେ ଆସି ପହଞ୍ଚି ସେଠାରେ ପୁଣି ଦର୍ଜି ଦୋକାନ ଆରମ୍ଭ କରିଦେଲା ।

ଦୋକାନୀ ମଧ୍ୟ ଏ ସାହିର ଜଣେ ବିଶିଷ୍ଟ ରାଜନୀତିକ ମୁଖପାତ୍ର । ନିର୍ବାଚନବେଳେ ଏଇ ରେସ୍ତୁରାଁରେହିଁ ଏ ସାହିର ଭୋଟ ନିଷ୍ପତ୍ତି ହୋଇଥାଏ ।

ସେ ଅଭିଯୋଗର କଣ୍ଠରେ କହିଲା··· "ସରକାର ତ ନାକରେ ତେଲ ଦେଇ ଶୋଉଛନ୍ତି ! ଖବରକାଗଜବାଲାମାନେ ବି ଚୁପ୍ ! ଏଣେ ଗୁପ୍ତଚରମାନେ ଆମ ଦାଣ୍ଡଦୁଆରେ, ଘରଭିତରେ ! ଆପଣ ଜାଣନ୍ତି ହନି ମାଷ୍ଟର ଦୋକାନ ଭିତରେ ହାତବୋମା, ଓ୍ୱାୟାରଲେସ୍, ବନ୍ଧୁକ ସବୁ ମହଜୁଦ ହୋଇ ଅଛି ! ଇସାରା ମିଳିଲେ ହିଁ, ସେମାନେ ଦେଖିଲା କାମ ଆରମ୍ଭ କରିଦେବେ ।"

ଅମିତାଭ ଗମ୍ଭୀରଭାବରେ ସିଗାରେଟରୁ କଳେ ଧୂଆଁ ଛାଡ଼ି କହିଲା ·· "ମୋର ମଧ୍ୟ ଠିକ ସେଇ ସନ୍ଦେହ । ତା ନହେଲେ ସେ ହଠାତ୍ ପାକିସ୍ଥାନ ଛାଡ଼ି ଏଠାକୁ ପଳାଇ ଆସିଥାନ୍ତା କାହିଁକି ? ଏ ସାଧାରଣ ଲୋକଟା ଉପରେ କିନ୍ତୁ ବରାବର କଡ଼ା ନଜର ରଖିଥିବ ।"

ସେଇ ସାଧାରଣ ଲୋକ, ଅର୍ଥାତ୍ ହନି ମାଷ୍ଟରର ନମାଜ ପଢ଼ା ସେତେବେଳକୁ ଶେଷ ହୋଇଥିଲା । ଦରବେଶ୍ ମାନଙ୍କ ପଚ୍ଛପଚ୍ଛେ, ସେ

ମାରବରେ ଅଣଷଣ ଗୁପ୍ତା ପଣ ସମାଧି ବେଗ ଉପରୁ ଓହ୍ଲାଇ ଦୋକାନ ଭିତରକୁ ଆସୁଥିଲ ।

ଅମିତାଭ ରେସୁଙ୍କ ବାହାରେ ଅପେକ୍ଷା କରିଥିବା ସ୍କୁଟର ଉପରେ ଏକ ଲମ୍ଫ ଦେଇ, ପଛରେ ଧୂଳିର ଘୂର୍ଣ୍ଣୀ ଉଡ଼ାଇ, ଗଳି ମୋଡ଼ରେ ଝଟପଟ ଅଦୃଶ୍ୟ ହୋଇଗଲା ।

* * * *

ହେୟାର-କଟ୍ଟରରେ ବାଳକଟାର ଏକଟଣା ଶବ୍ଦ ଓ ନାପିତର ଅଭ୍ୟସ୍ତ ହାତର ମୋଲାୟମ ସାଉଁଳା ଭିତରେ, ଅମିତାଭର ଦୁଇ ଆଖି ମୁଦ ହୋଇ ଆସୁଥିଲା । କଟ୍ଟର୍ ବନ୍ଦ କରି, କଇଁଚି ଲଗାଇଲାବେଳେ, ହଠାତ୍ କଇଁଚୀର ତୀକ୍ଷ୍ଣଧାର, ଚମଡ଼ାରେ ଲାଗି ଯିବାରୁ, ଏକ ବେଦନାର ଶିହରଣରେ, ଅମିତାଭ ଦୁଇ ଆଖି ବିସ୍ଫାରିତ କରି, ଚଉକୀ ଉପରେ ସିଧା ହୋଇ ବସିପଡ଼ିଲା ।

ସାମନା କାଚ-ଅଇନାରେ ନିଜର ପ୍ରତିମୂର୍ତ୍ତି ଦେଖି, ଅମିତାଭ ମୁଗ୍ଧ ହୋଇ ଉଠୁଥିଲା । ସାଲୁନ କାନ୍ଥରେ ଝୁଲୁଥିବା "ଅକ୍ସଫୋର୍ଡ କଟିଙ୍ଗ୍" ବାଳକଟା-ଚିତ୍ରରେ, ସାର୍ଟ ଓ ଟାଇ ପିନ୍ଧା ସୁ-ଦର୍ଶନ ବ୍ୟକ୍ତିଟିର କେଶକର୍ତ୍ତନ-ଶୈଳୀ ସହିତ ନିଜର କେଶକର୍ତ୍ତନଶୈଳୀ ତୁଳନା ଓ ବିଶ୍ଳେଷଣ କରୁଥିଲା ।

ମାତ୍ର ନିଜର ନିଜେ ସନ୍ତୁଷ୍ଟ ହେବାପାଇଁ, ଅମିତାଭ ସବୁବେଳେ ଭଲ କରେ । ସେଥିପାଇଁ ମୁଣ୍ଡ କୁଣ୍ଡାଇବାବେଳେ, ଏପରିକି ହାତରେ ଖିଅର ହେବାବେଳେ ସୁଦ୍ଧା, ସେ କ୍ୱଚିତ୍ ଦର୍ପଣ ବ୍ୟବହାର କରିଥାଏ । ତାହାର ହାତର ଆଙ୍ଗୁଳି ଗୁଡ଼ିକ ଯେପରି ଷଷ୍ଠେନ୍ଦ୍ରିୟସମ୍ପନ୍ନ, ମୁଣ୍ଡ ଉପରେ ଥରେ କେବଳ ଆଙ୍ଗୁଳି ବୁଲାଇ ସେ ସୂକ୍ଷ୍ମତମ କେଶଟିର ବିଶୃଙ୍ଖଳା ଲକ୍ଷ୍ୟକରି ତାହାକୁ ସଜତ କରିପାରେ । ଗାଲ ଉପରେ ଆଙ୍ଗୁଳି ଚଳାଇ ସେଫ୍ଟି ରେଜରର ଦାଢରୁ ବର୍ତ୍ତିଥିବା କ୍ଷୁଦ୍ରତମ ଦାଢିଅଂଶଟିକୁ ସୁଦ୍ଧା ସେ ସନ୍ଧାନ କରିପାରେ ।

ଦର୍ପଣରେ, ଅମିତାଭର ଦୁଇ ଆଖି ପ୍ରାଗୈତିହାସିକ ଗହ୍ୱର ମଧ୍ୟରୁ ଦୁଇଟି ଧ୍ୱଂସ୍ତ, କ୍ଷୁଧିତ, ଜ୍ୱଳନ୍ତ ଅଗ୍ନିପିଣ୍ଡ ଭଳି ଦିଶୁଥିଲା । ଆଖିତଳେ ଗୋଟିଏ ଗଭୀର କଳାରେଖା ଆଖିର କ୍ଷୁଧିତ ଧ୍ୱଂସ୍ତତାକୁ ରେଖାଙ୍କିତ କରି ଦେଇଥିଲା । ଆଖି କୋଣରେ କୁଞ୍ଚିତ ରେଖାଗୁଡ଼ିକ ଅମିତାଭର ଆଖି ଦୁଇଟିକୁ ଏକ ଅବର୍ଣ୍ଣନୀୟ ଆତ୍ମମଗ୍ନତାରେ କଠୋର କରି ଦେଇଥିଲା ।

କିନ୍ତୁ ସିନେ ଏଇ ଆଖି ଦୁଇଟି ଅମିତାଭର ବ୍ୟକ୍ତିତ୍ୱରେ ଥିଲା ଶ୍ରେଷ୍ଠ ଆକର୍ଷଣ ।

ନନ୍ଦିତା ସେଦିନ କ'ଣ ଏଇ କୋଟରଗତ ଆଖି ଉପରେ, ଏଇ କୁଞ୍ଚିତ ଆଖିପତା ଉପରେ, ବାରମ୍ବାର ଚୁମ୍ବନ ଦେଇ କହିଥିଲା···"ତମର ଏ ଆଖି, ଆଖି ନୁହେଁ, ଉଜ୍ଜଳ ପାନପାତ୍ର !"

ବେକ ପଛରେ କ୍ଷୁର ଚଳାଇବାବେଳେ, ଯେଉଁଠାରେ କ୍ଷୁରର ଧାର ଲାଗି ଯାଇଥିଲା, ସେଠାରେ ଲୋସନ୍ ଦେବା ମାତ୍ରେ ସେଇ ଅଂଶ ସବୁ ପୋଡ଼ି ଉଠୁଥିଲା ।

ନନ୍ଦିତାର ସ୍ମୃତି ମଧ୍ୟ, ମର୍ମଭୂମିର ଏକ ପ୍ରଶ୍ଣକାତର କୋମଳ ସ୍ଥାନରେ କ୍ଷୁରଧାର ପରି ଲାଗି ଯାଉଥିଲା ।

ବହୁବର୍ଷ ତଳର ଗୋଟିଏ ରାତି···

ନିଦ୍ରିତ ସହର···ମୂର୍ଚ୍ଛିତ ରାସ୍ତା···ଆକାଶରେ ଫିକା ଜହ୍ନ ଓ ରାସ୍ତାର ବାଣ୍ଟଖୁଣ୍ଟରେ ଇଲେକ୍ଟ୍ରିକ ଆଲୁଅ ସୁଦ୍ଧା ରାତିର ନିଶୁନ୍ତ ଭିତରେ ଝିମେଇ ପଡ଼ିଥିଲା । ଅମିତାଭ ସେଇ ମୂର୍ଚ୍ଛିତ ରାସ୍ତା ଓ ମଳିନ ଆଲୋକରେ ପ୍ରେତଛାୟା ପରି ଏ ପାଖରୁ ସେପାଖ ପାଦଚାରଣା କରୁଥିଲା, ଆଉ ବୁଲି ବୁଲି ଚାହୁଁଥିଲା, ସାମନା ଫ୍ଲାଟର ଉପର ମହଲାରେ ଗୋଟିଏ ଅନ୍ଧାର କୋଠରୀ ଆଡ଼େ ।

ହଠାତ୍ ମୁଣ୍ଡ ବିନ୍ଧିବାର ଛଳନା କରି, ନନ୍ଦିତା ସେଦିନ, ଅମିତାଭ ସହିତ ସନ୍ଧ୍ୟାରେ ବାହାରିବାର ପ୍ରୋଗ୍ରାମ, ଶେଷ ମୁହୂର୍ତ୍ତରେ କାଟି

ଦେଇଥିଲା । ଅମିତାଭ କିନ୍ତୁ ମନେମନେ କଳ୍ପନା କରି ଆସିଥିଲା, ଅଳକାସ୍ପୃଷ୍ଟ କେଶ, ବିବର୍ଣ୍ଣମୁଖୀ ନନ୍ଦିତାର ମଳିନ କପାଳ ଉପରେ ସ୍ପର୍ଶାତୁର ଅଙ୍ଗୁଳି ଚଳାଇ ପଚାରିବାପାଇଁ···"କିପରି ଅଛ ନନ୍ଦିତା ?"

ମାତ୍ର, ଅମିତାଭ ଗୋଟିଏ ଗୋଟିଏ ପଦକ୍ଷେପରେ ଏକାଥରେ ଦୁଇ ପାହାଚ, ତିନି ପାହାଚ, ସିଡ଼ି ଅତିକ୍ରମ କରି, ଫ୍ଲାଟ ଦୁଆରେ ପହଞ୍ଚିବା ପରେ, ସେଠାରୁ ତାକୁ କିଏ ଯେପରି ଏକ ନିଷ୍ଠୁର ଧକ୍କାରେ ତଳକୁ ଠେଲି ଫିଙ୍ଗି ଦେଇଥିଲା !

ଫ୍ଲାଟ ଦୁଆରେ ଝୁଲୁଥିଲା, ଗୋଟିଏ ୱାଭଗ୍ର ଅଶ୍ଳୀଳ ତାଲା !

ନନ୍ଦିତାର ଜଣେ ପ୍ରତିବେଶିନୀ—ଟେଲିଫୋନ ଏକ୍ସଚେଞ୍ଜରେ ଅପରେଟର—ରାତି ଡିଉଟିରେ ବାହାରିବାବେଳେ, ସିଡ଼ି ପାହାଚରେ କିଂକର୍ତ୍ତବ୍ୟବିମୂଢ଼ ଅମିତାଭକୁ ଦେଖି ମୁହଁରେ କୌତୁକୋଜ୍ଜ୍ୱଳ ହସର ଗୋଟିଏ ରେଖା ଫୁଟାଇ କହିଲେ···"ନନ୍ଦିତା ଏଇ ଅଳ୍ପ ପୂର୍ବେ ବାହାରକୁ ଚାଲିଗଲେ ।"

ଏକା ନା କାହା ସାଥିରେ, ପଚାରିବାପାଇଁ, ଅମିତାଭ ମନରେ ସାହସ ଖୋଜି ପାଇଲା ନାହିଁ ।

ରାସ୍ତାକଡ଼ର ଗୋଟାଏ ଘର ଭିତରୁ କାନ୍ଥଘଣ୍ଟାରେ ରାତି ଦୁଇଟା ବାଜିବାର ଶବ୍ଦ, ରାତିର ନିଶୁନ୍ତି ଭିତରେ ପୁଣି ନୀରବ ହୋଇ ଯାଉଥିଲା । ଗୋଟାଏ କଳାରଙ୍ଗର ଲମ୍ବା ମଟର ଗାଡ଼ି, ମସୃଣ ଗତିରେ ଆସି ରାସ୍ତାର ଅପର ପାଖରେ ବ୍ରେକ୍ କଷି ରହିଗଲା । ଅମିତାଭ, ରାସ୍ତା-ଧାରରେ କୃଷ୍ଣଚୂଡ଼ା ଗଛର ଝଙ୍କାଳିଆ ଛାଇତଳକୁ ଘୁଞ୍ଚି ଆସିଲା । ସେହି ଆଲୋଡ଼ନହୀନ, ନୈଶ ନିସ୍ତବ୍ଧତା ମଧ୍ୟରେ, ଅମିତାଭ ଯେପରି ନିଜ ହୃତ୍‌ପିଣ୍ଡର ଅଶାନ୍ତ ସ୍ପନ୍ଦନ ସ୍ପଷ୍ଟ ଶୁଣି ପାରୁଥିଲା ।

ଗାଡ଼ି ଭିତରୁ ପ୍ରଥମେ ବାହାରି ଆସିଲା ନନ୍ଦିତା । ପିନ୍ଧିଥିଲା ସେହି ଅପରାଜିତା ରଙ୍ଗର ଶାଢ଼ୀ; ଯେଉଁ ରଙ୍ଗ ଅମିତାଭ ଆବିଷ୍କାର କରିଥିଲା, ନନ୍ଦିତାର ଉଜ୍ଜ୍ୱଳ ଶ୍ୟାମବର୍ଣ୍ଣ ଦେହର ମସୃଣତାକୁ ଏକ ନୂତନ ଲୋଭନୀୟତାରେ ପ୍ରଳିପ୍ତ କରିଦେବାପାଇଁ ।

ନନ୍ଦିତା ପଛେପଛେ ଗାଡ଼ି ଭିତରୁ ବାହାରି ଆସିଲା, କ୍ରିକେଟ-ଖେଳାଳୀ, ସୌଖୀନ, ଧନୀର ଦୁଲାଳ ଇସମାଇଲ । ତା'ର ଲମ୍ବା ଋଜୁ ଦେହ, ଓଠତଳେ ଫ୍ରେଞ୍ଚକଟ୍ ଦାଢ଼ି, ଅସ୍ପଷ୍ଟ ଚନ୍ଦ୍ରାଲୋକରେ ସ୍ପଷ୍ଟ ବାରି ହେଉଥିଲା ।

ଇସମାଇଲ୍ କ୍ଳାନ୍ତ କଣ୍ଠରେ କହିଲା···"ଗୁଡ୍ ନାଇଟ୍ ।"

ପରିତୃପ୍ତ, ହାସ୍ୟୋଜ୍ଜ୍ୱଳ, ମସୃଣ କଣ୍ଠରେ ନନ୍ଦିତା ହାଇ ମାରି କହିଲା · "ଗୁଡ୍ ମର୍ଣ୍ଣିଙ୍ଗ୍" ।

ରାତି ସେତେବେଳକୁ, ଦୁଇଟା ବାଜି ସାରିଥିଲା !
ଇସମାଇଲ୍ ହସି ହସି କହିଲା···"ଗୁଡ୍ ମର୍ଣ୍ଣିଙ୍ଗ" !

ଇସମାଇଲ୍‌ର ଗାଡ଼ି ତା' ପରେ ଏକ ଅଶାନ୍ତ ଝଡ଼ ପରି ରାସ୍ତା ମୋଡ଼ରେ ଅଦୃଶ୍ୟ ହୋଇଗଲା ।

ନନ୍ଦିତାର ଫ୍ଲାଟରେ ଆଲୁଅ ପୁଣି ଜଳି ଉଠିଲା ।

ଅମିତାଭ ସିଡ଼ି ପର୍ଯ୍ୟନ୍ତ ଆସିଥିଲା, ସିଡ଼ି ଉପରକୁ ଉଠୁଥିଲା, ନନ୍ଦିତାର ଦରଜାରେ ଆଘାତ କରିବା ପାଇଁ ମନେମନେ ପ୍ରସ୍ତୁତ ହେଉଥିଲା; କିନ୍ତୁ ତନ୍ଦ୍ରାଚ୍ଛନ୍ନ ପରି ସେ ପୁଣି ପାଦ ଫେରାଇ, ଧୀରେ ଧୀରେ ସେଠାରୁ ଫେରି ଆସିଲା ।

ବାଁପଟ କାନମୁଣ୍ଡା ଉପରେ କଇଁଚି ଚଳାଇବା ପାଇଁ, ନାପିତ ଅପେକ୍ଷା କରି ରହିଥିଲା । ମାତ୍ର ଅମିତାଭ ଆତ୍ମବିସ୍ମୃତ ପରି, ମୁଣ୍ଡ ନ ଫେରାଇ ପାଷାଣର ମୂର୍ତ୍ତି ପରି ବସି ରହିଥିବାରୁ, ନାପିତ ନିଜ ହାତରେ ଅମିତାଭର ମୁଣ୍ଡଟା ବୁଲାଇ ଦେବା ବେଳେ, ତାହାର ମ୍ନ ଶ୍ବରି ତନ୍ଦ୍ରା ଭାଙ୍ଗିଗଲା ।

ଅମିତାଭ କହିଲା···"କ୍ଲୋଜ୍-କ୍ରପ୍ଡ୍ କରି କାଟିବ ।"

ବାଁପଟ କାନ୍ଥରେ, ଏକ ରଙ୍ଗୀନ ସିନେମା-ମାଗାଜିନ୍ ପୃଷ୍ଠାରେ କେଉଁ ଏକ ଅଭିନେତ୍ରୀର ଛବି, ପିନ୍‌କଣ୍ଟାରେ ଝୁଲୁଥିଲା···ମସୃଣ,

ସବୁଜ ଘାସ ଉପରେ ତଳକୁ ମୁହଁମାଡ଼, ନିତମ୍ବ ଓ ଜଘନର ତରଙ୍ଗ ଖେଳାଇ, ଘାସ ଉପରେ ମୁହଁ ରଖି ଅଳସରେ ଦେହ ଢାଳି ଶୋଇବାର ଛବି······

ନାପିତର ପିନ୍-ଅପ୍ ଗାଲ୍ !

ଅମିତାଭ ସେ ଆଡ଼ୁ ମୁହଁ ଫେରାଇ ନେଲା ।

* * * *

ରେଡ଼ିଓରେ କୌଣସି ଜନନେତାଙ୍କ ଭାଷଣ ପ୍ରସାରିତ ହେଉଥିଲା ·· ଶାନ୍ତି, ମୈତ୍ରୀ ଓ ସମ୍ପ୍ରୀତିର ଉଦ୍‌ବୋଧନ···ବୁଦ୍ଧ, ଗାନ୍ଧୀ ଓ ଭାରତୀୟ ସଂସ୍କୃତି ପ୍ରଭୃତି ଲକ୍ଷାଧିକବାର ଉଚ୍ଚାରିତ କେତେକ ଶବ୍ଦର ଅର୍ଥହୀନ ରୋମନ୍ଥନ······

ଅମିତାଭର ଆଖି ଆଗରେ ପୁଣି ଭାସି ଉଠୁଥିଲା, ବହୁ ମହା-ନଗରୀର ପଥେ ପଥେ, ବହୁ ସମ୍ଭ୍ରାନ୍ତ, ଶୀତାତପ ନିୟନ୍ତ୍ରିତ ରେଷ୍ଟୁରାଁ, ହୋଟେଲ ଓ ସିନେମାର ପ୍ରେକ୍ଷାଳୟ ସାମନାରେ, ବହୁ ଅଭିଜାତ ବିପଣୀର କାଚ-ଅଣ୍ଟା "ସୋ କେସ" ବାହାରେ, ଶୂନ୍ୟ ଦୃଷ୍ଟିରେ ବୁଲୁଥିବା ଗୋଟିଏ ଅତୃପ୍ତ ଯୁବକର କ୍ଷୁଧିତ ଶବ !

ଆଃ···ଜୀବନରେ ଆଜି ପରସ୍ତ ପରସ୍ତ ହୋଇ ଜମି ଯାଉଛି ଅନେକ ଗ୍ଲାନି, ଅକଳ୍ପିତ ବ୍ୟର୍ଥତା, ଅତୃପ୍ତି, ଅଶାନ୍ତି, ସ୍ୱର୍ଣ୍ଣ-କାତରତା ହୀନ ଅଥବା ମେଦ ଓ କଳଙ୍କି ! ଏସବୁ ଛଡ଼ାଇବା ପାଇଁ ଲୋଡ଼ା ଯୁଦ୍ଧ, ଅନ୍ତର୍ବିପ୍ଲବ, ରକ୍ତସ୍ନାନ ! ଏକ ଅଗ୍ନ୍ୟୁଦ୍‌ଗାର ହିଁ କେବଳ, ଜୀବନ ଓ ପରିବେଶରୁ ଏ ଜଞ୍ଜାଳ ସବୁ ଜାଳି ପୋଡ଼ି ତାକୁ ପୁଣି ଶୁଭ୍ର ଓ ନିଷ୍କଳଙ୍କ କରିଦେଇ ପାରିବ !

ଜନନେତା କହୁଥିଲେ···"ଶାନ୍ତି ଓ ମୈତ୍ରୀ ପାଇଁ ସାଧନାର ଇତିହାସ···ଭାରତର ଇତିହାସ !"

ଅମିତାଭ ଉନ୍ମାଦ ପରି ଚିତ୍କାର କରି ଉଠିଲା···"ବାଜେ, ବାଜେ, ସବୁ ବାଜେ କଥା ! ଶାନ୍ତିର ଅର୍ଥ ମିଥ୍ୟା ସହିତ ସାଲିସ, ଶୋଷଣ ସହିତ ବୁଝାମଣା, ଲୁଣ୍ଠନ ସହିତ ସହାବସ୍ଥାନ !"

ନିଜ ଜୀବନର ଅକଳନ୍ତ ବ୍ୟର୍ଥତା, ଅମିତାଭର ଦୃଷ୍ଟିରେ ହଠାତ୍ ଏକ ଜାଗନ୍ତିକ ସତ୍ତା ଲଭ କରିଥିଲା । ଏକ ସ୍ୱପ୍ନ ବିସ୍ଫୋରଣ ମଧ୍ୟରେ ସେ ଖୋଜୁଥିଲା ଜୀବନର ସବୁ ବ୍ୟର୍ଥତା ଓ ଗ୍ଲାନି ନଷ୍ଟ ଭ୍ରଷ୍ଟ କରିଦେବା ପାଇଁ ।

ନାପିତ ବନ୍ଧୁଙ୍କ ଦୃଷ୍ଟିରେ ଅମିତାଭ ଆଡ଼େ ଚାହିଁ ପଚାରୁଥିଲା··· ଦାଢ଼ି କାଟିବ କି ନାହିଁ !

*　　*　　*　　*

ରାତି ନିଶୂନ୍ ହୋଇ ଆସିଥିଲା । ଛିଣ୍ଡାଛିଣ୍ଡା ବଉଦର ମାଛକାତିଆ ଆକାଶରେ, ଟୁକୁରାଏ ଆକୃତିହୀନ ଚନ୍ଦ୍ର ଭାସି ଭାସି ଯାଉଥିଲା ।

ସୁଲେମାନ୍ ଦରବେଶ୍, ଶିମିଳୀ ମୂଳେ, ସେଇ ସମାଧି ପାଖରେ ବସି ଏକତାରା ବଜାଉଥିଲା । ହନି ମାଷ୍ଟରର ଦୋକାନ ପଛରେ, ଅଖାର ପର୍ଦ୍ଦାଢଙ୍କା, ପାଉଣ୍ଡ ପରି କୋଠରୀଟି ଭିତରେ, କେତେଜଣ ଏକାଠି ଜମିଥିଲେ । ଚୁପାକଣ୍ଠରେ ସେମାନଙ୍କ କଥାବାର୍ତ୍ତା, ରାତିର ସ୍ତବ୍ଧତା ମଧ୍ୟରେ ବେଳେ ବେଳେ ଶୁଭୁଥିଲା । ହନିମାଷ୍ଟର ଦୋକାନ ବାହାରେ ଖଣ୍ଡେ ଟୁଲ ପକାଇ ବସିଥିଲା । ଅଶରୀରୀ ଛାୟା ପରି ଗୋଟିଏ ଗୋଟିଏ ମୂର୍ତ୍ତି, ସେଇ ଦୋକାନ ଘର ଭିତରକୁ ବେଳେ ବେଳେ ଯାଉଥିଲେ, ପୁଣି ଫେରି ଆସୁଥିଲେ ।

ରାତି ବୀଟ୍‌ର ଦୁଇଜଣ କନେଷ୍ଟବଲ୍, ଭାରି ବୁଟ୍ ଜୋତା ମିଶା ପାଦରେ ମଚ୍ ମଚ ଶବ୍ଦ କରି ସେଇବାଟେ ଚାଲିଗଲେ । ହନି ମାଷ୍ଟର୍ ଟୁଲ୍ ଉପରୁ ଭିତରକୁ ଉଠିଆସି, କନେଷ୍ଟବଲ ଦୁଇଜଣ ଗଳୀ ମୋଡ଼ରେ ଅଦୃଶ୍ୟ ନହେବା ପର୍ଯ୍ୟନ୍ତ ସନ୍ତର୍ପିତ ସାବଧାନତାରେ ସେମାନଙ୍କ ଆଡ଼େ ଚାହିଁ ଠିଆ ହୋଇ ରହିଲା । ଦୋକାନ ଭିତରୁ ତେନାଏ ଲଣ୍ଠନ ଆଲୁଅ ରାସ୍ତା ଉପରେ ତେରଚ୍ଛ ହୋଇ ପଡ଼ିଥିଲା ।

ସୁଲେମାନ୍ ଦର୍‌ବେଶ୍ ଏକତାରାରେ ଗୋଟିଏ ବିଚିତ୍ର ରାଗିଣୀ ବିଳାପ କରି ଉଠୁଥିଲା······ଗୋଟିଏ ମର୍ମଭେଦୀ, ଉଷ୍ମ ଦୀର୍ଘଶ୍ୱାସ ପେପରି କେଉଁ ପ୍ରିୟତମାର କର୍ଣ୍ଣମୂଳର ଚୂର୍ଣ୍ଣ କୁନ୍ତଳରାଶି ମଧ୍ୟରେ ମରିଯିବାପାଇଁ ବ୍ୟାକୁଳ ଭାବରେ ଖୋଜି ଖୋଜି ବୁଲୁଥିଲା ।

ହନ ମାଷ୍ଟର ଟିକ୍ ଏହି ଅଶାନ୍ତ ରାଗିଣୀ ପରି, ପୂର୍ବ-ପାକିସ୍ଥାନର କେତେ ଅଜଣା ସହର ଓ ଜନପଦଠାରୁ, ଭାରତରେ ଏହି ଶ୍ରେଷ୍ଠ, ନଢୁଆଳୀ ସହରର ଅନ୍ଧାର ଗଳି ପର୍ଯ୍ୟନ୍ତ, ଅଷ୍ଟାତର ଅଠରଟି ବର୍ଷ ଧରି କ'ଣ ଯେପରି ଖୋଜିଖୋଜି ବୁଲିଅଛି, ମାତ୍ର କେଉଁଠାରେ ତାହାର ସନ୍ଧାନ ତଥାପି ପାଇନାହିଁ ! ଢାକ୍କା···ସୁଲ୍ତାନ୍‌ଗଞ୍ଜ···ଖୁଲ୍‌ନା···ଯେଶୋର···ମୈମନ୍‌ସିଂହ··· ନାରାୟଣଗଞ୍ଜ··· ଚିଟାଗଙ୍ଗ୍ ··· ଦେଶବିଭାଗ ପରେ, ବହୁ ସହରରେ ସେ ଅନୁସନ୍ଧାନ କରି ବୁଲିଛି, ଜୀବନର ଉତ୍ସମୂଳ । କେଉଁଠି ହୁଏତ ସେ ପାଇଛି ଆଶ୍ରୟ, କେଉଁଠାରେ ଅବା ପାଇଛି ଅବଲମ୍ବନ; ମାତ୍ର କୌଣସିଠାରେ ସେ ପାଇନାହିଁ ଜୀବନର ସେହି ଉତ୍ସମୂଳ ! ସବୁଠାରେ ସେ ଅନୁଭବ କରିଅଛି, ନିଜକୁ ଏକାନ୍ତ ନିଃସଙ୍ଗ, ଏକାନ୍ତ ଅବାଞ୍ଛିତ, ଏକାନ୍ତ ଅପରିଚିତ ଓ ଏକାନ୍ତ ଆଗନ୍ତୁକ ପରି ।

ହନମାଷ୍ଟର୍ ନାମଟା ତ ପ୍ରଥମେ ପରିହାସ ଓ ଉପହାସର ବିଷୟ ହୋଇ ପଡ଼ିଥିଲା । ତା' ଛଡ଼ା ହନ ମାଷ୍ଟରର ଉର୍ଦ୍ଦୁ ଉଚ୍ଚାରଣ, ପୁଣି ପୂର୍ବପାକିସ୍ଥାନୀ ବଙ୍ଗଳା କହିବାର ଭଙ୍ଗୀ ମଧ୍ୟ ତାକୁ ସେଠାରେ ଅପାଙ୍-କ୍ତେୟ କରି ଦେଇଥିଲା । ଯେଉଁ ହନମାଷ୍ଟର୍ ଦିନେ ଥିଲା, ଏକ ଅନୁଷ୍ଠାନ, ନୂତନ ପରିବେଶ ଓ ସମାଜରେ ସେ ଏକ ଅବହେଳିତ ଓ ଉପେକ୍ଷିତ ବ୍ୟକ୍ତିରେ ପରିଣତ ହୋଇ ପଡ଼ିଥିଲା । ପୁଣି ହନ ମାଷ୍ଟର୍ ହାତରେ ଯେଉଁ କଟିଙ୍ଗ୍ ଏକଦା ସୌଖୀନ ଓ କଳାବନ୍ତ ରୂପେ ବିବେଚିତ ହେଉଥିଲା, ତାହା ମଧ୍ୟ ଏଠାରେ ନିତାନ୍ତ ଗ୍ରାମ୍ୟ ଓ ଅମାର୍ଜିତ ରୂପେ ଉପେକ୍ଷିତ ହୋଇପଡ଼ିଥିଲା ।

ହନ ମାଷ୍ଟର୍ ବଞ୍ଚିବାର ଅବଲମ୍ବନ ପାଇଁ, କଞ୍ଚିଦାନ ବୁଲିବାକାଳୀ ସାଜ ଲୁଗା ଗଣ୍ଠିରି ପିଠିରେ ବୋହି, ବହୁ ଅଞ୍ଚଳ ବୁଲିଲା । ସେହିପରି ବୁଲି ବୁଲି, ସେ ପୂର୍ବବଙ୍ଗଳାର ସୀମା ଅତିକ୍ରମ କରି, ଦିନେ ଆସିଥିଲା ଆସାମ ଭିତରକୁ । ଆସାମରୁ ଆସିଥିଲା ପୁଣି ପଶ୍ଚିମ-ବଙ୍ଗଳା · ସେଠାରୁ ଲୁଚି ଲୁଚି ସେ ପଳାଇ ଆସିଥିଲା ଏହି ସହରକୁ । ତାହାର ପାସ୍‌ପୋର୍ଟ ଅଥବା ଭିସା ନଥିଲା । ସେ ପୁଣି ଜାଣି ନଥିଲା, ସେ କେଉଁ ଦେଶର ନାଗରିକ ! ସେ ଆସିଥିଲା ବ୍ୟାଧିଗ୍ରସ୍ତ ପଶୁପରି, ଭୟରେ, ସନ୍ତର୍ପଣରେ,

ଲୁଚି ଲୁଚି, ବନରେ ଆତ୍ମଗୋପନ କରି, ଅନ୍ତରେ ପୁଣି ବାଟ ଚାଲି… ଶୁଣିଲି ପରପରି ଉଡ଼ ଉଡ଼ !

ସେଦିନଠୁ କୌଣସି ପୁଲିସ ଅଥବା ସରକାରୀ ଲୋକ ଦେଖିଲେ ହନ ମାଷ୍ଟର ଆତଙ୍କିତ ହୋଇପଡ଼େ । ଏକ ଅହେତୁକ ଆଶଙ୍କା ଓ ଆତଙ୍କରେ ସେଦିନଠୁ ତାହାର ଅବଚେତନ ଆଚ୍ଛନ୍ନ ହୋଇପଡ଼ିଥିଲା । ଅକାରଣରେ ଏଣେତେଣେ ସନ୍ତର୍ପଣରେ ଚାହିଁବା, ତାହାର ଏକ ଅଭ୍ୟାସରେ ପରିଣତ ହୋଇ ପଡ଼ିଥିଲା । ଏଠାରେ ମଧ୍ୟ ସେ ରହିଥିଲା ଯେପରି ସେହି ପ୍ରଚ୍ଛନ୍ନ ଅଜ୍ଞାତବାସରେ !

ହନ ମାଷ୍ଟର୍ ଭାବୁଥିଲା…

ଏଇ ଦେଶ, ଏଇ ମାଟି, ତାର ଜୀବନର ଉତ୍ସମୂଳ ! ମାତ୍ର ଏଠାରୁ ତାକୁ ନିର୍ବାସିତ କଲା କିଏ ? ଏଠି ତାକୁ ଅଜ୍ଞାତବାସର ଦୈନ୍ୟ ଓ ଅଭିଶାପ ଦେଲା କିଏ ? ଏ ଦେଶକୁ ବିଭକ୍ତ କଲା କିଏ ?

ଏ ସବୁ ବହୁ ବିଭ୍ରାନ୍ତିକର ଜଟିଳ ପ୍ରଶ୍ନ…ହନ ମାଷ୍ଟର୍ କେବେ ତାର କୌଣସି ଉତ୍ତର ଖୋଜି ପାଇନାହିଁ ! ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସବୁ ତାର ମନେ ହୋଇଛି, ଏକ ନୀଚ ଷଡ଼ଯନ୍ତ୍ର ପରି ! ଆଜି କିନ୍ତୁ ହନ ମାଷ୍ଟର ସ୍ୱସ୍ତିର ଦୀର୍ଘ ନିଶ୍ୱାସ ପକାଇ ଭାବୁଥିଲା, ଯାହା ହେଉ ପଛେ; ପୃଥିବୀ ଆଉ କେଉଁଠାରେ ଏପରି ନିବିଡ଼ ନୁହେଁ, ଆକାଶ ଏପରି ତାରାଖଚିତ ନୁହେଁ, ପବନ ଏପରି ଶୀତଳ, କୋମଳ ନୁହେଁ !

ଏଇ ତାର ମାତୃଭୂମି…ତାର 'ବେହସ୍ତ' !

*  *  *  *

"ସ୍ୱଦେଶ-ମିତ୍ର"ର ସକାଳ-ସଂସ୍କରଣରେ ବଡ଼ ବଡ଼ ହରଫ୍‌ରେ ଚାଞ୍ଚଲ୍ୟକାରୀ ଶିରୋନାମା ତଳେ, ହିଂସା ଓ ଘୃଣାର ଫୁଲ୍‌କଜଡ଼ା ଭାଷାରେ ପ୍ରକାଶ ପାଇଥିଲା, ସହରରେ ପାକିସ୍ତାନୀ ଗୁପ୍ତଚର-ଚକ୍ର ଓ ତାହାର ସୂତ୍ରଧର ହନମାଷ୍ଟରର ଚାଞ୍ଚଲ୍ୟକର ବିବରଣୀ । ରେଷ୍ଟୁରାଁରେ ମାଛି ଅଡ଼େଇ ଅଡ଼େଇ, ରିପୋର୍ଟର ଯେଉଁ ପ୍ରାରମ୍ଭିକ ବାକ୍ୟଟି ଅମିତାଭର ଚେତନାରେ ସେଦିନ ପ୍ରଥିତ ହୋଇଥିଲା, ସେହି ବାକ୍ୟଟିରେ ଆରମ୍ଭ

ହୋଇଥିଲା, ଅମିତାଭର ରିପୋର୍ଟ୍…ଗୁପ୍ତଚରମାନଙ୍କର ଚକ୍ରାନ୍ତ, ବିନା ଭିସା ଓ ପାସପୋର୍ଟରେ ସେମାନଙ୍କ ଅନୁପ୍ରବେଶ, ହାଣ୍ଡ୍‌ଗ୍ରେନେଡ୍ ଓ ଅନ୍ୟ ମାରାତ୍ମକ ଅସ୍ତ୍ରଶସ୍ତ୍ରରେ ସେମାନଙ୍କ ପ୍ରସ୍ତୁତି, ଶାସନର ଉଦାସୀନତା ପୁଣି ଜାତୀୟ ନିରାପତ୍ତାର ସଙ୍କଟ, ଇତ୍ୟାଦି ! …"ସହରର ଜନସ୍ୱାସ୍ଥ୍ୟ ଓ ରାଜନୈତିକ ସ୍ୱାସ୍ଥ୍ୟ, ମାଛି ଓ ଗୁପ୍ତଚରମାନଙ୍କ ଦ୍ୱାରା ବିପନ୍ନ !"

ବର୍ଷ୍ ଷ୍ଟ୍ରୀଣ୍‌ରେ, ରେଷ୍ଟୁରାଁରେ, ହୋଟେଲ୍‌ରେ, ବୈଠକଖାନାରେ, ଦପ୍ତରରେ, ଘରେ, ବାହାରେ, ସବୁଠାରେ ତାହାହିଁ ଥିଲା ସହସ୍ର ମୁଖରେ ଆଲୋଚନାର ବିଷୟ !

ସକାଳୁ ହନି ମାଷ୍ଟର୍‌ର ଦୋକାନ ବନ୍ଦ !

ସଶସ୍ତ୍ର ପୋଲିସ ଏକ ଓ୍ୱାୟାର୍‌ଲେସ୍ ଭ୍ୟାନ୍‌ରେ ଚଢ଼ି, "ମାଷ୍ଟର କଟିଙ୍ଗ୍‌ଆଣ୍ଡ୍ ଟେଲରିଙ୍ଗ୍" ଦୋକାନରେ ପହଞ୍ଚିବା ପୂର୍ବରୁ, ହନି ମାଷ୍ଟର ସେଠାରୁ ପଳାଇ ଯାଇଥିଲା । ବିନା ପାସ୍‌ପୋର୍ଟ ଓ ଭିସାରେ ଏକ ବିଦେଶ ଭୂମିରେ ଧରା ପଡ଼ିବାର ଶାସ୍ତି ତାହାକୁ ଅଜଣା ନଥିଲା ।

ମୁସଲମାନ ବସ୍ତିରେ କେତେଟା କୁକୁଡ଼ା ସେଇ ମାତ୍ର ରାବିବା ଆରମ୍ଭ କରିଥିଲେ । ଶିମିଳୀ ଗଛ ଉପରେ ପୂର୍ବର ରଙ୍ଗା ଆକାଶରେ ପାହାନ୍ତି ତାରା ମହଳ ପଡ଼ି ଆସୁଥିଲା ।

ଏଇ ତାର ଜନ୍ମମାଟି…ଏହି ଶିମିଳୀଗଛ ପରି ସେ ମଧ୍ୟ ଏଠାରେ ବଢ଼ିଥିଲା ଏହି ଉଦାର, ସୁବିସ୍ତୃତ ଆକାଶ ତଳେ । ଆଜି ଶିମିଳୀର ଶାଖାରେ ଶାଖାରେ ଗଣି ଗଣି ଲାଲ ଫୁଲର ସ୍ତବକ । ସେ କିନ୍ତୁ ଏଠାରୁ ବିଦାୟ ନେଉଥିଲା, ରାତିର ଦସ୍ୟୁ ପରି, ସନ୍ତର୍ପଣରେ, ଲୁଚିଲୁଚି । ଗତ ଅଠର ବର୍ଷ ମଧ୍ୟରେ, ଏ ବିଦ୍ୟାରେ ସେ ପ୍ରବୀଣ ଓ ପାରଙ୍ଗମ ହୋଇ ଉଠିଥିଲା । ପାଦଚିହ୍ନଟିଏ ସୁଦ୍ଧା ସେଠାରେ ନଥିଲା !

ଖବରକାଗଜ ରିପୋର୍ଟର, ପୋଲିସ, ମାଜିଷ୍ଟ୍ରେଟ ଓ ସାଧାରଣ କୌତୂହଳୀ ଜନତା, ସମସ୍ତଙ୍କ ଉପସ୍ଥିତିରେ ଦୋକାନର ଦରଜା ଭଙ୍ଗାଯାଇ ଖାନ୍ ତଲ୍ଲାସ ହେଲା । ଗୋଟାଏ ପୁରୁଣା ସିଲେଇ ମେସିନ୍,

ଟ୍ରକ୍‌ର ଟ୍ରକ୍‌ର କଳା, ସୀଲେଇ ଟ୍ରକ୍‌ର, ମେସିନ୍‌ର ଦରଜ ଭିତରେ କେତେଟା ଅର୍ଡରର ମାପ, ଗୋଟାଏ କୋଣରେ ସନ୍ଦେହଜନକ ଭାବରେ ଯେଉଁ ପୁଟୁଳୀଟା ପଡ଼ିଥିଲା; ତା' ଭିତରେ କେତେଖଣ୍ଡ ପୁରୁଣା ଟ୍ରାଉଜର ଆଉ ହାଓ୍ୱାଇନ୍‌··· କିନ୍ତୁ କାହିଁ ସେ ସବୁ ମାରାତ୍ମକ ହାଣ୍ଡ ଗ୍ରେନେଡ୍‌, ଟ୍ରାନ୍‌ସମିଟର୍‌ ଓ ଗୁପ୍ତ ଚିଠିପତ୍ର ?

ଅମିତାଭ କୈଫିୟତ୍ ଦେଉଥିଲା···"ଆଃ; ସେ ସବୁ କଣ କେହି ପଛରେ ଛାଡ଼ିଯାଏ ?"

କିନ୍ତୁ ସେ ଯେ ଗୁପ୍ତଚର, ତାର ସବୁଠାରୁ ବଡ଼ ପ୍ରମାଣ ହେଉଛି ତ, ପୁଲିସ ଖାନତଲ୍ଲାସୀର ଆଶଙ୍କାରେ ହନମାଷ୍ଟରର ଏହିପରି ଆକସ୍ମିକ ପଳାୟନ ! ରେଷ୍ଟୁରାଁର ମାଲିକ, ଆଖିରେ ମୁହଁରେ ଗଡ଼ କଣିବାର ଏକ ଦର୍ପିତ ହସ ଫୁଟାଇ, ସମସ୍ତଙ୍କୁ ସେହି କଥା ବାରମ୍ବାର ବୁଝାଉଥିଲା !

ଦୋକାନ ପଛରେ, ଅନ୍ଧାର ଗୁମୁଟା ପରି ଯେଉଁ ସନ୍ତସନ୍ତିଆ କୋଠରିଟିରେ ହନ ମାଷ୍ଟର ରହୁଥିଲା, ତାହା ମଧ୍ୟ ଖାନ୍‌ତଲ୍ଲାସ କରାଗଲା ! ଗୋଟାଏ କୋଣରେ ପଡ଼ିଥିଲା କେତେଟା ଚିଲମ୍‌, ପୋଡ଼ା ଗଞ୍ଜେଇ ଗୁଣ୍ଡ, ଗୋଟାଏ ଡବ୍‌, ମେଞ୍ଚାଏ ଶୁଖିଲା ପିଜୁଳିପତ୍ର ଓ ଗୁଳି ରାନ୍ଧିବାର ଅନ୍ୟାନ୍ୟ ସରଞ୍ଜାମ ।

ଏଠାରେ ତାହେଲେ ଏକ ଗୁଳିଖଟି ମଧ୍ୟ ଥିଲା ! ଯେଉଁ ଉଚ୍ଚପଦସ୍ଥ ପୁଲିସ ଅଫିସରଙ୍କ ନେତୃତ୍ୱରେ ଖାନତଲ୍ଲାସୀ ଚାଲିଥିଲା, ସେ ଏକ ପ୍ରଚଣ୍ଡ ତାଚ୍ଛଲ୍ୟରେ, ଜୋତାମିଣା ପାଦରେ ସେ ସବୁ ଆବର୍ଜନା ଠେଲିଦେଇ କହିଲେ, "ଦୁତ୍‌, ଏସବୁ ଏକସାଇଜ୍‌ ମାମଲା !"

କିନ୍ତୁ କାହିଁ ସେ ଦେଶଦ୍ରୋହୀ ଷଡ଼ଯନ୍ତ୍ରର ମାରାତ୍ମକ ବ୍ୟୁହକେନ୍ଦ୍ର ? ଗୋଟାଏ ଚେପା ବଦ୍‌ନା, କଳେଇଛଡ଼ା କେତେଟା ଆଲୁମିନିୟମ ବାସନ, ଛିଣ୍ଡା ଗୋଦଡ଼ି, ଦରିବେଶ୍ୱମାନଙ୍କର ଗୋଟାଏ କାଠମାଳୀ ବ୍ୟତୀତ ହନମାଷ୍ଟର ଆଉ ଅନ୍ୟ କୌଣସି ରହସ୍ୟ ଜନକ ସଙ୍କେତ ପଛରେ ଛାଡ଼ି ଯାଇ ନଥିଲା ।

"ସ୍ୱଦେଶ-ମିତ୍ର"ରେ ସମ୍ବାଦ ବାହାରିଲା... "ପୁଲିସ ଆସିବା ପୂର୍ବରୁ ହନ ମାଷ୍ଟର ଓ ଅନ୍ୟ ଗୁପ୍ତଚରମାନଙ୍କର ପଳାୟନ ! ନିରାପତ୍ତା ଦୃଷ୍ଟିରୁ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ସେମାନେ ସଙ୍ଗରେ ନେଇ ଯାଇଥିବାର ଆଶଙ୍କା ।"

ଏଡ୍‌ଗାର୍ ଓ୍ୱାଲେସ୍ ବା ଆଗାଥା କ୍ରିଷ୍ଟିଙ୍କର ଗୋଇନ୍ଦା ଉପନ୍ୟାସର ଏକ ଚରିତ୍ର ପରି ହନ ମାଷ୍ଟର ହଠାତ୍ ପ୍ରଖ୍ୟାତ ଓ ରହସ୍ୟାବୃତ ହୋଇ ଉଠିଲା ।

କିନ୍ତୁ ତାପରେ ସହରଠାରୁ ଦୂରରେ; ଗ୍ରାମାଞ୍ଚଳର ପଥେ ପଥେ ଯେଉଁ ଅଚହ୍ଲା ଫକୀରଟିଏ ବୁଲିବାର ଦେଖାଗଲା; ପାରିପାର୍ଶ୍ୱିକ ପରିସ୍ଥିତି ସହିତ ସେ ଏପରି ମିଶି ଯାଇଥିଲା ଯେ, ସେ କାହାର ଦୃଷ୍ଟି ଆକର୍ଷଣ କରୁ ନ ଥିଲା । ସଙ୍ଗରେ ତାର ଗୋଟିଏ ପାତିମାଙ୍କଡ଼; ହାତରେ ଗୋଟିଏ ଡମ୍ବରୁ । ଡମ୍ବରୁ ବଜାଇଲେ ପାତିମାଙ୍କଡ଼ଟି ନାନା ଭଙ୍ଗୀରେ ନାଚେ, ଅଭିନୟ କରେ, ହାତଯୋଡ଼ି ପଇସା ମାଗେ । ଫକୀରଟିର ଆଶ୍ରୟ ଉପରର ସୁନୀଳ ଆକାଶ ଓ ତଳର ମାଟି...ସାଥୀ ଓ ସହଚର ଗୋଟିଏ ପାତିମାଙ୍କଡ଼ ।

ଆକାଶ ଏଠି ତଥାପି ସୁନୀଳ, ମାଟି ତଥାପି ମମତାଭରା, ବୃକ୍ଷଗୁଳ୍ମ ତଥାପି ନିବିଡ଼...ଏଠୁ ତାକୁ ନିର୍ବାସିତ କଲା କିଏ ? ଏଠି ବଞ୍ଚିବାର ଅଧିକାରରୁ ତାକୁ ବଞ୍ଚିତ କଲା କିଏ ? ସତରଞ୍ଜ ଖେଳରେ କିସ୍ତିମାତ ପାଇଁ ବୋଡ଼ଆଟି ପରି ତାକୁ ବିସର୍ଜନ ଦେଲା କିଏ ?

ଏ ସବୁ ତର ଅସମାଧିତ ପ୍ରଶ୍ନ !

ଏବେ ମଧ୍ୟ ହନମାଷ୍ଟର ତାହାର କୌଣସି ଉତ୍ତର ଖୋଜି ପାଉ ନଥିଲା ! (୧୯୬୪)



# ନିଯୁକ୍ତିପତ୍ର

**କା**ଲି ରାତିର ମୂର୍ଚ୍ଛିତ ମୁହୂର୍ତ୍ତରେ ନିତାନ୍ତ ଅପ୍ରତ୍ୟାଶିତ ଭାବରେ ଗୋଟାଏ ଘଟଣା ଘଟିଗଲା, ଯାହା ସୁନନ୍ଦର ସମସ୍ତ ଚେତନା ଓ ସତ୍ତାକୁ ଗଭୀର ଭାବରେ ଆଲୋଡ଼ିତ କରି ଦେଇଥିଲା । ସେ ଆଲୋଡ଼ନ, ଏବେ ସକାଳେ ସୁଦ୍ଧା, ସୁନନ୍ଦକୁ ପ୍ରଭାବିତ କରୁଥିଲା···

କାଲି ରାତିରେ, ନିତାନ୍ତ ଆକସ୍ମିକ ଭାବରେ ସୁନନ୍ଦର ଚନ୍ଦ୍ର-ଦର୍ଶନ ଯୋଗ ଘଟିଥିଲା ।

ସେଇଥିପାଇଁ ତ ସୁନନ୍ଦ କହେ, ନିଉଟନ୍‌ଙ୍କ ଆତ ଖସିବା ପରି, ଜୀବନ କେତେକ ଆକସ୍ମିକତାର ସମଷ୍ଟି !

ଖପରଲି-ଛାଉଣି ଏ ମାଟି ମାଟି ଘର ଗୁଡ଼ାକର ଝରକା ବାଟେ, ଭଙ୍ଗା ପୋର୍ସିଲେନ୍ ପରି ଯେଉଁ ଟୁକୁରା ଟୁକୁରା ଆକାଶ, ଉପରେ ବିଛେଇ ପଡ଼ିବା ପରି ଏକଦା ଦିଶୁଥିଲା; ଚୋରା ମଦ ଓ ଅଫିମ ବ୍ୟବସାୟରେ ହଠାତ୍ ଧନପତି ଓ ସମାଜପତି ହୋଇଥିବା, ସେହି ନବ୍ୟ-କୁବେରଙ୍କ ବହୁ ମହଲା କୋଠାର ନେପଥ୍ୟରେ, ତାହା କେବେଠାରୁ ନିଶ୍ଚିହ୍ନ ହୋଇଥିଲା । ସେଥି ସଙ୍ଗେସଙ୍ଗେ ଚନ୍ଦ୍ର ମଧ୍ୟ, ସୁନନ୍ଦର ଜୀବନରୁ ବିଦାୟ ନେଇଥିଲା !

କିନ୍ତୁ କାଲି ରାତିରେ ହଠାତ୍······

ସୁନନ୍ଦ କେଜାଣି କାହିଁକି ବିଛଣାରୁ ଉଠି ଝରକା ବାଟେ ବାହାରକୁ ଚାହିଁବା ବେଳକୁ, ଗଳି ରାସ୍ତା କଡ଼ର ସେହି ନର୍ଦ୍ଦମାରେ, ଯେଉଁଠି ପଙ୍କର ଭୁଡ଼୍‌ଭୁଡ଼-ସ୍ରୋତରେ ବସ୍ତିର ଆବର୍ଜନା ବହିଯାଏ, ରାସ୍ତାକଡ଼ର ଗୋଟାଏ କଞ୍ଚନ ଗଛର ପତ୍ରଗହଳ ଭିତରେ, ଆକାଶର ଚନ୍ଦ୍ର ସେହି ନର୍ଦ୍ଦମାର ବକ୍ଷରେ ଝଲମଲ ହୋଇ ଉଠିଥିଲା !

ସେହି 'ଦୃଶ୍ୟଦେଖି, ଉତ୍ସବ କରିବା ପାଇଁ, ସୁନନ୍ଦର ସ୍ନାୟୁ ସବୁ ହଠାତ୍ ଯେପରି ଉତ୍ତେଜିତ ହୋଇ ଉଠିଥିଲା । ସୁନନ୍ଦ, ସୁରମାକୁ କେତେ ଥର ଡାକି ନିଦରୁ ଉଠାଇବାର ଚେଷ୍ଟା ମଧ୍ୟ କଲା । ମାତ୍ର ଦିନର ଶତ ଦୁଶ୍ଚିନ୍ତା ଓ ପରିଶ୍ରମ ପରେ ବିଚାରୀ ସୁରମା କାଠଗଡ଼ ପରି ନିଦରେ ଅଚେତ ହୋଇ ପଡ଼ିଥିଲା ।

ଆଃ···ବିଚିତ୍ର, ଅବିସ୍ମରଣୀୟ ! ସେହି ଜ୍ୟୋତ୍ସ୍ନାର ଗୋଟିଏ କ୍ଷୀଣ ରେଖା ସୁଦ୍ଧା ସୁରମାର ମୁଦ୍ରିତ ଆକ୍ଷିପତା ଉପରେ ଆସି ପଡ଼ିଥିଲା । ସୁରମା ବୟସରେ ହଠାତ୍ କେତେ ବର୍ଷ ପଛେଇ ଯାଇଥିଲା !

ସକାଳ ଡାକରେ, ପୁଣି ଆଉ ଖଣ୍ଡେ ବାଦାମୀ ରଙ୍ଗର ଲଫାପା ଆସିଥିଲା । ଏସବୁ ସରକାରୀ ଲଫାପା ପ୍ରତି, ସୁରମାର ପ୍ରଚଣ୍ଡ ସମ୍ମାନ··· ଏଥିରେ ଅଛି କେଜାଣେ ସୁନନ୍ଦର ନିଯୁକ୍ତି ପତ୍ର; ଆଗାମୀ ସୁଦିନର ସମ୍ଭାବନା; ସ୍ୱସ୍ତିରେ ନିଃଶ୍ୱାସ ମାରି ବଞ୍ଚିବାର ନିଶ୍ଚିତ ଅବଲମ୍ବନ !

ଏକ ବହୁ-ପ୍ରତ୍ୟାଶିତ ସୁସମ୍ବାଦ ଆଣିବା ପରି, ସୁରମା ଲଫାପାଟି ସୁନନ୍ଦର ବିଛଣା ପାଖକୁ ଆଣି ଉଚ୍ଛ୍ୱସିତ କଣ୍ଠରେ କହିଲା: "କ'ଣ ଦେବ, ଆଗେ କୁହ; ନ ହେଲେ ଦେବି ନାହିଁ !"

ପିଠି ଉପରେ ଝରଣା ପରି ଲମ୍ବି ଯାଇଥିବା କୁଞ୍ଚିତ କେଶରାଶିର ନେପଥ୍ୟରେ, ଛନ୍ଦି ହୋଇ ରହିଥିବା ଦୁଇ ହାତରେ, ଲଫାପାଟିର ଗୋଟିଏ ଅଂଶ ସୁନନ୍ଦ ସ୍ପଷ୍ଟ ଦେଖି ପାରୁଥିଲା ।

ସେହିପରି ଆଉ କେତେ ଖଣ୍ଡ ଲଫାପା, ଟେବୁଲ ଉପରେ, କାଗଜର ଗହଳ ଭିତରେ ମଧ୍ୟ ପଡ଼ିଥିଲା । ଏ ଲଫାପାଟି ତାହାର ସଂଖ୍ୟା ବୃଦ୍ଧି

କରିବ । ଭଗବାନଙ୍କୁ ଧନ୍ୟବାଦ; ସୁରମା ସେ ଚିଠି ସବୁ ପଢ଼ିବା ପାଇଁ କେବେ ଚେଷ୍ଟା କରି ନାହିଁ !

ବାହାରେ ବାଦାମୀ ରଙ୍ଗର ମେଘଢଙ୍କା ଆକାଶ । ସୁନନ୍ଦ, ଘୋର ଆଳସ୍ୟରେ ଗୋଟାଏ ହାଇ ମାରି, ପୁଣି ପ୍ରସ୍ତେ ଆଖି ବୁଜି ଶୋଇବାର ଉପକ୍ରମ କରୁଥିଲା । ସେ ଲଫାପା କଣ, ସୁନନ୍ଦ ଭଲ ଭାବରେ ଜାଣେ; ସେଥିପାଇଁ ତାର ଆଗ୍ରହ ଅଥବା ଉତ୍କଣ୍ଠା ନଥିଲା ।

ସୁରମା ସୁନନ୍ଦର ଉତ୍ତପ୍ତ କପାଳ ଉପରେ, ନିଜର ଶୀତଳ ହାତ ପାପୁଲିଟି ରଖି, ତାକୁ ଥରେ ଦୋହଲାଇ ଦେଇ କହିଲା : "ବାଃ, ଏତେ ବଡ଼ ଗୋଟାଏ ସୁ-ଖବର ଆଣିଲି, ତମେ ବକ୍‌ସିସ୍ ଦେବା ତ ଦୂରର କଥା; ମୁହଁରେ ପଦେ ଧନ୍ୟବାଦ ବି ଦେଲ ନାହିଁ !"

ସୁନନ୍ଦ ତନ୍ଦ୍ରାଳସ ଆଖି ମେଲି, ହସିବାର ଛଳନା କରି କହିଲା : "ଧନ୍ୟବାଦ୍ ! ତୁମେ ବରଂ ଟି' ଗୋଟାଏ କପ୍ ଆଣ ।"

ସୁରମା ବାଦାମୀ ରଙ୍ଗର ଲଫାପାଟା ବିଛଣା ଉପରେ ଲୀଳାୟିତ ଚପଳତାରେ ଫିଙ୍ଗି ଦେଇ, ସୁନନ୍ଦର କପାଳ ଉପରେ ଅବିନ୍ୟସ୍ତ ବାଳଗୁଡ଼ିକୁ ଏକ ରଭସିତ ଲଘୁସ୍ପର୍ଶରେ ଇତଃସ୍ତତ କରି ଦେଇ, କପେ ଟି' ଆଣିବା ପାଇଁ ଚାଲିଗଲା ।

ଆରବ୍ୟ-ଉପନ୍ୟାସର ସୁଲତାନ୍ ପରି ସୁନନ୍ଦ, ବିଛଣାରେ କହୁଣୀ ଭରା ଉପରେ ମୁଣ୍ଡ ରଖି ଶୋଇ ଶୋଇ ଅର୍ଦ୍ଧଦଗ୍ଧ ଆଖିରେ ସୁରମାର ଲୀଳାୟିତ ଭଙ୍ଗୀ ଲକ୍ଷ୍ୟ କରୁଥିଲା, ଆଉ ଭାବୁଥିଲା : ଆଜି ସୁଦ୍ଧା ସୁରମାକୁ ସେହି ପୂର୍ବର ସମ୍ବୋଧନରେ ବେଳେ ବେଳେ ଡାକ ହୁଏ......"ସୁରି !"

ନିଜର ଅଜ୍ଞାତସାରରେ ସୁନନ୍ଦ କେତେବେଳେ ମଧ୍ୟ ଡାକ ଦେଇଥିଲା...'ଏଇ...ସୁରି !'

ସୁରମା ଚମକି ପଡ଼ି ପଛକୁ ଫେରି ଗୃହିଁଲା ବେଳକୁ, ସୁନନ୍ଦ ନିତାନ୍ତ ନିସ୍ପୃହ ଭାବରେ ଲଫାପାଟିକୁ ଖଣ୍ଟ ତଳେ ଜମିଥିବା କାଗଜପତ୍ରର ଅରମା ଗଦାଳ ଭିତରକୁ ଫିଙ୍ଗି ଦେଉଥିଲା । ସୁରମା ଆର୍ତ୍ତନାଦ କରିବା ପରି କଣ୍ଠରେ ଚିତ୍କାର କରି ଉଠିଲା : "ଚିଠିଟାକୁ ଫିଙ୍ଗି ଦେଉଛ ? ମୁଁ ସତ କହୁଚି—ତମେ ଏ ଗୃକିରି ନ କଲେ, ଆଉ ଚଳିବ ନାହିଁ !",

ସୁନନ୍ଦ ସ୍ମିତ ହସି ଉତ୍ତର ଦେଲା : "ଆରେ ନାଁ, ଏପରି ଚିଠିକୁ ଫିଙ୍ଗି ଦେଲେ ଚଳିବ !"

ସୁରମା ଆଶ୍ୱସ୍ତ ହୋଇ ଗୃଲିଗଲା ।

ସୁନନ୍ଦ ବିଛଣା ଉପରେ ଉଠି ବସି, ଅଳସରେ ହାଇମାରି, ସ୍ୱଗତୋକ୍ତି କରୁଥିଲା, "ମୋରେଲ୍ ··· ଆତ୍ମବିଶ୍ୱାସ ··· ଜୀବନରେ ସବୁଠାରୁ ଶ୍ରେଷ୍ଠ ଶକ୍ତି ଓ ସମ୍ବଳ ! ଜୀବନ-ଯୁଦ୍ଧରେ ଯେଉଁମାନେ ଶସ୍ତ୍ରାହତ, ଯେଉଁମାନଙ୍କର ତୂଣୀର ଶୂନ୍ୟ, ଯେଉଁମାନଙ୍କର ରଥଚକ୍ର କର୍ଷଚ୍ୟୁତ, ଏହି ଆତ୍ମବିଶ୍ୱାସ ତ ସେମାନଙ୍କର ଏକମାତ୍ର ଶିବଧନୁ ! ଚର୍ଚ୍ଚିଲ ଦ୍ୱିତୀୟ ମହାଯୁଦ୍ଧ ଜିଣିଲେ ଏହି ଅସ୍ତ୍ରରେ, ଆଉ ଜୀବନ-ସଂଗ୍ରାମ ତ ସେ ମହାଯୁଦ୍ଧର ଏକ କ୍ଷୁଦ୍ର ସୀମାନ୍ତ ମାତ୍ର !"

ବାଦାମୀ ରଙ୍ଗର ଏ ଲଫାଫା ଖଣ୍ଡେ ଡାକରେ ଦେଖି, ସୁରମାର ସେହି ଆତ୍ମବିଶ୍ୱାସ ପୁଣି ଫେରି ଆସୁଛି ! ତାହାର ଆଚରଣରେ ତାହା ସୁସ୍ପଷ୍ଟ ।

ବାସ୍ତବିକ, ଏଇ ଚିଠି ସବୁ, ସୁରମାର ପ୍ରାଣରେ ପୂର୍ବର ସେ ପ୍ରତ୍ୟୟ ଓ ଆତ୍ମବିଶ୍ୱାସ ଫେରାଇ ଆଣି ପାରିଅଛି । ସମାଜରେ ସୁନନ୍ଦର ମଧ୍ୟ ପ୍ରୟୋଜନ ଅଛି, ତାର ସ୍ୱପ୍ନ ଓ କବିତା ସୃଷ୍ଟିର ମଧ୍ୟ ମୂଲ୍ୟ ଅଛି···ତା' ନହେଲେ ସରକାରୀ ଲଫାଫାମାନଙ୍କରେ ତା' ପାଖକୁ ଏତେ ଚିଠି ଆସୁଥାନ୍ତା କାହିଁକି ? ସୁରମା ପକ୍ଷରେ ତାହାହିଁ ଯେପରି ଶ୍ରେଷ୍ଠ ସମ୍ବଳ ଓ ସାନ୍ତ୍ୱନା ! ଆଗାମୀ ସୁଦିନର ପଦଧ୍ୱନି ଏଇ ତ ଯେପରି ସେ ରାସ୍ତା ମୋଡ଼ରେ ଶୁଭିଲାଣି !

*　　　*　　　*　　　*

ଜୀବନର ବହୁ ନିଷ୍ଠୁର ତାଡ଼ନାରେ, ସୁନନ୍ଦ ଯେଉଁଦିନ ସ୍ୱପ୍ନର ଗଜଦନ୍ତ-ପୁଷ୍ପ ମଧ୍ୟରୁ ବାହାରି, ଧୂଳିଧୂସରିତ ରାଜପଥକୁ ଆସିଥିଲା, ସେଦିନ ତାହାର ସମସ୍ତ ଅଭିମାନ ଓ ଆତ୍ମପ୍ରତ୍ୟୟ ଝଡ଼ରେ ଶୁଖିଲା ପତ୍ର ପରି ଉଡ଼ି ଯାଇଥିଲା !

ଫୋଲଡ଼-କେସ୍‌ରେ କବିତାର କେତେଖଣ୍ଡ ଅଲୋଡ଼ା ପାଣ୍ଡୁଲିପି, ପଣ୍ୟ ପରି ଧରି ସେ ବଜାରର ରାସ୍ତାରେ ରାସ୍ତାରେ ଘୂରି ବୁଲୁଥିଲା ।

ଏ କବିତା କାଳେ ଜୀବନରେ ଅନୁଭୂତିର ନୂତନ ପରିଧି ଉଦ୍‌ଘାଟନ କରିବ ! ଜୀବନ୍ତ ବଞ୍ଚିବାକୁ ଏକ ନୂତନ ଅର୍ଥ ସୌକୁମାର୍ଯ୍ୟ ଦେବ !

ସୁନନ୍ଦ, ସେହିପରି ଭାବୁଥିଲା ।

କିନ୍ତୁ ଏ ତ ଆଳୁ, ପିଆଜ ନୁହେଁ, ଲୁହା-ଲକ୍‌କଡ଼ ନୁହେଁ, ଚାଉଳ-ଲୁଣ ନୁହେଁ, ଏପରିକି ମାଟି-ଗୋଡ଼ି ସୁଦ୍ଧା ନୁହେଁ···ଏସବୁର ପୁଣି କି ଆବଶ୍ୟକତା ଅଛି ? ତେଣୁ କି ମୂଲ୍ୟ ଅଛି ?

ଆଃ···ବେକାରିର ତାଡ଼ନାରେ, ସୁନନ୍ଦ ବିଲ୍‌କୁଲ ପାଗଳ ହୋଇ-ଯାଇଛି ! ତା' ନ ହେଲେ କବିତା ବିକ୍ରୀ କରିବା ପାଇଁ କେହି ବଜାରରେ ବୁଲନ୍ତି ?

ଅବଶେଷରେ ସୁନନ୍ଦ ଆସିଥିଲା 'ଏମ୍ପ୍‌ଲୟମେଣ୍ଟ ଏକ୍‌ସ-ଚେଞ୍ଜ୍‌'କୁ···ସେ ଚାହେଁ ନିଜ ଶକ୍ତିର ଉପଯୋଗ, ସେ ଚାହେଁ ସମାଜକୁ ନିଜ ଉତ୍ପାଦନରେ ସମୃଦ୍ଧ କରିବା ପାଇଁ !

ଆଦିମ ସରୀସୃପର ଲାଞ୍ଜ ପରି 'କ୍ୟୁ' ଲମ୍ବି ଯାଇଛି, ଏକ୍‌ସଚେଞ୍ଜର ଫାଟକ ଠାରୁ, ଫୁଟ୍‌ପାଥ୍‌ ଧାରେଧାରେ ବହୁ ଦୂରକୁ !

କ୍ଷୁଧିତ ଅଜଗର ପରି 'କ୍ୟୁ' ଫୁତ୍‌କାର କରୁଛି, କଡ଼ ମୋଡ଼ୁଛି, ଲାଞ୍ଜ ହଲାଉଛି ।

ଏମ୍ପ୍‌ଲୟମେଣ୍ଟ ଏକ୍‌ସଚେଞ୍ଜର ପ୍ରକାଣ୍ଡ କୋଠାଟାକୁ ଗିଳି ଦେଇ ପାରିଲେ ଯେପରି ତାହାର ଆଦିମ କ୍ଷୁଧା ପ୍ରଶମିତ ହୁଅନ୍ତା !

ଧୀରେ ଧୀରେ ସ୍ଫୀତ ହେଉଥିବା; ସେହି ଲାଞ୍ଜ ଉପରେ ଠିଆ ହୋଇ, ସୁନନ୍ଦ ସ୍ୱସ୍ତିର ନିଶ୍ୱାସଟିଏ ନ ନେଉଣୁ, ହଠାତ୍ ଗୋଟିଏ ଧକ୍‌କାରେ ସୁନନ୍ଦ 'କ୍ୟୁ' ବାହାରକୁ ଛିଟ୍‌କି ପଡ଼ିଲା !

କଠୋର ରେଖାଙ୍କିତ ଗୋଟିଏ ଶ୍ମଶ୍ରୁଳ କ୍ଷୁଧିତ ମୁହଁରେ, ଦୁଇଟି କୋଟରଗତ ଆଖିରେ ନିଆଁର ରଡ଼ ଯେପରି ଦପ୍ ଦପ୍ ଜଳୁଥିଲା !···"ବାଃ, କପେ ଚା' ପାଇଁ ଏଇ ମିନିଟ୍‌କ ପୂର୍ବେ ଯାଇଥିଲି; ଏହା ଭିତରେ ପୈତୃକ ସ୍ଥାନ ପରି, ମୋ ସ୍ଥାନଟାକୁ ଦଖଲ କରି ଯାଇଛ ସେ !"—ସୁନନ୍ଦ ଆଡ଼େ ଚାହିଁ ସେ, ଆଖିରୁ ଅଗ୍ନିବର୍ଷଣ କରୁଥିଲା ।

ତା'ପରେ ନିତାନ୍ତ ନିସ୍ପୃହ ଭାବରେ ଖଣ୍ଡେ ସିଗାରେଟ୍‌ରେ ନିଆଁ ଲଗାଇ, ଆରାମରେ କେତେ କଳ ଧୂଆଁର କୁଣ୍ଡଳୀ ଛାଡ଼ି, ଏମ୍ପ୍‌ଲୟମେଣ୍ଟ ଏକ୍‌ସଚେଞ୍ଜ ଆଡ଼େ ମୁହଁ କରି ଠିଆ ହୋଇଥିବା 'କ୍ୟୁ'କୁ ପଛକରି, ସୁନନ୍ଦ ଆଉ ଏକ 'କ୍ୟୁ'ରେ ନିଜ ସ୍ଥାନରେ ଠିଆ ହୋଇଗଲା ।

ଦୁଇଟି ଅଜଗରର ଲାଞ୍ଜ ପରି, ଦୁଇଟି 'କ୍ୟୁ' ଏକାଠି ମିଶି ଯାଇଥିବା, ସୁନନ୍ଦ ଲକ୍ଷ୍ୟ କରି ପାରି ନଥିଲା । ସେଥିପାଇଁ ରାସ୍ତା ସେପାଖ ଗୋଟିଏ ସିନେମା ହାଉସ୍‌ର ବୁକିଙ୍ଗ୍-ଅଫିସ୍ ସାମନାରେ, ଯେଉଁ 'କ୍ୟୁ'ଟି କ୍ରମେ ସ୍ଫୀତ ହୋଇ, ଏକ୍‌ସଚେଞ୍ଜର 'କ୍ୟୁ' ସହିତ ମିଶି ଯାଇଥିଲା, ସୁନନ୍ଦ ସେହି 'କ୍ୟୁ'ରେ ନିଜପାଇଁ ସ୍ଥାନକରି ପାରିଥିଲା ।

"ହାଲ୍‌କା ଡାକୁ" ହିନ୍ଦୀଚିତ୍ରର ଜନାକୀର୍ଣ୍ଣ ଚତୁର୍ଥ ସପ୍ତାହ ···ବିଜ୍ଞାପନୀ ଚିତ୍ରପଟରେ ଉନ୍ମତ୍ତବକ୍ଷା ଏକ ନାରୀର ଅର୍ଦ୍ଧୋଲଙ୍ଗ ଚିତ୍ର···କଂସେଇ ଦୋକାନରେ ଫଡ଼ାଏ ଚର୍ବିଳ ମାଂସ ପରି ଝୁଲୁଛି ··ନାରୀର ଚିତ୍ର ନୁହେଁ, ଗୋଟାଏ ମାଂସଳ ଅଶ୍ଳୀଳତା···

ସେହି ଚିତ୍ରପଟ ଆଡ଼େ ଚାହିଁ 'କ୍ୟୁ'ରେ ଜମିଥିବା ଶହ ଶହ ଶୁଖିଲା ଓଠ ଉପରେ କ୍ଷୁଧିତ ଜିଭ ଲହ ଲହ ହୋଇ ବୁଲି ଯାଉଥିଲା !

ସୁନନ୍ଦ ନିଜର ଅଜ୍ଞାତସାରରେ "ହାଲ୍‌କା ଡାକୁ"ର 'କ୍ୟୁ'ରେ ମିଶି ଯାଇଥିଲା । ସେ ମଧ୍ୟ ଥରେ ନିଜର ଶୁଖିଲା ଓଠ ଉପରେ ଜିଭ ବୁଲାଇ ନେଲା···କ୍ଷୁଧାରେ ନୁହେଁ, ତୃଷାରେ !

ରାସ୍ତା କଡ଼ ଗୋଦାମମାନଙ୍କ ସାମନାରେ ମଧ୍ୟ ନୂଆ ନୂଆ 'କ୍ୟୁ'ମାନ ଲମ୍ବି ଯାଉଥିଲା; ତେଲ ପାଇଁ, ଚାଉଳ ପାଇଁ, ଚିନି ପାଇଁ …ସବୁଆଡ଼େ କ୍ଷୁଧିତ ଅଜଗରର ଲାଞ୍ଜ କୁଣ୍ଡଳୀ ବୁଲି ମୋଡ଼ି ହୋଇ ଆସୁଥିଲା ।

'କ୍ୟୁ' ଭିତରେ ସ୍ୱୟଂଚାଳିତ ଯନ୍ତ୍ର ପରି ସୁନନ୍ଦ ଆଗକୁ ଆଗକୁ ଘୁଞ୍ଚୁଛି । ପଛରେ ଲାଞ୍ଜ ବଢ଼ିବଢ଼ି ଚାଲିଛି ।

ଆଃ…ଏ ତ ପ୍ରତୀକ୍ଷା ନୁହେଁ ! ପ୍ରତୀକ୍ଷାରେ ଥାଏ ଏକ ଗତିଶୀଳ ଉଦ୍‌ବେଳନ, ଏକ ଆବେଗକମ୍ପିତ ଆକାଂକ୍ଷା…ଏ କିନ୍ତୁ ଏକ ନିର୍ବେଦଗ୍ରସ୍ତ ସ୍ଥାଣୁ ଅବସ୍ଥିତି !

ବେଳ ପନ୍ଦରେ ହଠାତ୍ ଗୋଟାଏ ବିରକ୍ତ ସ୍ପର୍ଶରେ ସୁନନ୍ଦ ଚମକି ପଡ଼ି ପଛକୁ ଫେରି ଚାହିଁଲା । ଜଣେ ମଧ୍ୟବୟସ୍କ ପ୍ରୌଢ଼, ସୁନନ୍ଦର ପିଠି ଉପରେ ଖଣ୍ଡେ ଖବର କାଗଜ ମେଲି ପଢ଼ିବା ଆରମ୍ଭ କରି ଦେଇଥିଲେ !

ସୁନନ୍ଦକୁ ଫେରି ଚାହିଁବା ଦେଖି ସେ ସ୍ମିତ ହସି, ପୃଷ୍ଠପୋଷକତା ପ୍ରଦର୍ଶନ କରିବା ପରି କଣ୍ଠରେ କହିଲେ : "ଗୁଡ଼୍ ଆଫ୍‌ଟର୍ ନୁନ୍ !"

ସୁନନ୍ଦ ଏକ ପ୍ରଚ୍ଛନ୍ନ ବିରକ୍ତିରେ ମୁହଁ ଫେରାଇ ପ୍ରତିନମସ୍କାର ଜଣାଇଲା ।

ଭଦ୍ରଲୋକ ଚେଷ୍ଟା ପଚାରିଲେ : "ଆପଣ କ'ଣ ? ଡାକ୍ତର ? ଇଂଜିନିୟର ? ବଥ କାଟନ୍ତି ? ଦାନ୍ତ ଓପାଡ଼ି ପାରିବେ ? ଡଜାଇନର୍, ନକ୍‌ସା ଆଙ୍କି ପାରନ୍ତି ? ବୈଜ୍ଞାନିକ ? …ଏସବୁ ନୁହଁ ? ଟାଇପିଷ୍ଟ …ଷ୍ଟେନୋଗ୍ରାଫର୍ … ଶିକ୍ଷକ…କିରାଣୀ … ଅବା ଆକାଉଣ୍ଟାଣ୍ଟ ? ତା' ବି ନୁହଁ ! ଆଚ୍ଛା ଆପଣ ମିସ୍ତ୍ରୀ, କାରିଗର, ଡ୍ରାଇଭର୍ ? ଓ…ତା' ବି ନୁହଁ ! ତା' ହେଲେ ଏ 'କ୍ୟୁ'ରେ କାହିଁକି ? "ବ୍ଲାକ୍ ଡାକୁ"ର ଟିକେଟ୍ ଚାହାନ୍ତି ? ଜୀବନରେ ଥରେ ନୁହେଁ, ବାରମ୍ବାର ଦେଖିବା ପରି

ଫିଲ୍; ବିଶେଷତଃ ହିରୋଇନ୍ ମାଳୁ କୁମାରୀ ଏ ଛବିରେ ପ୍ରଥମ "ଟପ୍‌ଲେସ୍"
...ବେଦିଙ୍ଗ୍‌ସୁଟ୍ (ସ୍ତନଯୁଗ୍ମ ଉପରେ ସରମର ନାଇଲନ୍ ପଟିଟିଏ ସୁଦ୍ଧା ନଥାଇଁ) ପିନ୍ଧି ସମୁଦ୍ର କୂଳେକୂଳେ ବୁଲିବା ହିନ୍ଦୁସ୍ଥାନୀ ଫିଲ୍ମରେ ଏକାଥରେ ନୂଆ...ସେଥିପାଇଁ ତ ଏପରି ଭିଡ଼...ବୁଝିଲେ ସା'ର୍ !...
ଓ, ସିନେମା ଦେଖିବାକୁ କି ଆପଣ ଆସି ନାହାନ୍ତି ? ଟିକେଟ୍ ଚାହାନ୍ତି ?
କ୍ୟୁରେ ଠିଆ ହେବା ତା'ହେଲେ ଦରକାର ନାହିଁ ! ଫର୍ଟି ପର୍‌ସେଣ୍ଟ୍
ଅଧିକାରେ ମୁଁ ଟିକେଟ୍ ବିକ୍ରୀ କରୁଛି...ମାତ୍ର ଫର୍ଟି ପରସେଣ୍ଟ୍ !...ଆଃ,
କଣ ଚୂପ୍ ଚୂପ୍ କହିଲେ ?... 'ରବିଶ୍' !... କିନ୍ତୁ ଆପଣଙ୍କ ପେଷା
କ'ଣ ତ କହିଲେ ନାହିଁ ସାର୍ !"

ଏ ଲୋକଟାର କୁତ୍ସିତ ସାନ୍ନିଧ୍ୟରୁ ରକ୍ଷା ପାଇଲେ ଯେପରି ମୁକ୍ତି ! ସୁନନ୍ଦ ହଠାତ୍ 'କ୍ୟୁ' ଭାଙ୍ଗି ଆଗକୁ ମାଡ଼ିଗଲା ! 'କ୍ୟୁ'ରେ ନିଜପାଇଁ ସ୍ଥାନ କରି ନେବାର କଳା ଓ କୌଶଳ ସେ ଇତି ମଧ୍ୟରେ ବେଶ୍ ଆୟତ୍ତ କରି ସାରିଥିଲା !

କିନ୍ତୁ କଣ ସେ ? କଣ ତାର ପରିଚୟ ? ସୁନନ୍ଦ ନିଜ ଉପରୁ ହଠାତ୍ ସବୁ ଆତ୍ମବିଶ୍ୱାସ ହରାଇ ସାରିଥିଲା !

'କ୍ୟୁ'ରେ ପଛଆଡ଼ୁ ଠେଲା ବଢ଼ୁଛି !

ସାମନାରେ ଠିଆ ହୋଇଥିବା ଜଣେ ଲୋକ, ଖାକି ପାଇଜାମା ପକେଟରୁ ଖଣ୍ଡେ ସିଗାରେଟ୍ କାଢ଼ି ଓଠରେ ଲଗାଇଲା । ଅନନ୍ତ ଧୈର୍ଯ୍ୟ ଓ ପ୍ରତୀକ୍ଷାରେ ତାର ଚଉକୋଣିଆ କଳା ମୁହଁ, ମୁଗୁନି ପଥରରେ ଖୋଳା ହେବା ପରି ଦିଶୁଥିଲା । ପକେଟରେ କିନ୍ତୁ ଦିଆସିଲି ନଥିଲା । ସୁନନ୍ଦ ଦିଆସିଲି କାଢ଼ି ତା ଆଡ଼େ ବଢ଼ାଇଦେଲା । ସେ ଲୋକଟି ନିତାନ୍ତ ଅନାସକ୍ତ ଓ ନିସ୍ପୃହ ଭାବରେ, ସିଗାରେଟ୍‌ରେ ନିଆଁ ଲଗାଇ ଦିଆସିଲିଟା ସୁନନ୍ଦକୁ ଫେରାଇ ଦେଲା । କଡ଼ା ଧୂଆଁ ପତ୍ରର ଉତ୍କଟ ଧୂଆଁରେ 'କ୍ୟୁ'ର ଘର୍ମାକ୍ତ ପରିବେଶ ଅସହ୍ୟ ହୋଇ ଉଠିଲା ।

ଆଃ···ଅକଥନୀୟ ପ୍ରତୀକ୍ଷା, ଅସହନୀୟ ବିଳମ୍ବ ! ଏକ୍‌ସଚେଞ୍ଜ୍ ଅଫିସ ଭିତରକୁ ଜଣେଜଣେ ନାମ ଲେଖାଇବା ପାଇଁ ଯାଇଁ କାହିଁକି ଏତେ ବିଳମ୍ବ କରୁଛନ୍ତି; ତାହାର ସମ୍ଭାବ୍ୟ କାରଣ ପ୍ରସଙ୍ଗରେ, ସମଲିଙ୍ଗୀ ଯୌନ-ତତ୍ତ୍ୱର କୁତ୍ସିତ ଟିପ୍‌ପଣୀ କିଏ ଜଣେ ହଠାତ୍ ଆରମ୍ଭ କରିଦେଲେ । ଶେଷହୀନ ପ୍ରତୀକ୍ଷାର ଅସହନୀୟ ଘର୍ମାକ୍ତ ପରିବେଶ ମଧ୍ୟରେ ସେ କୁତ୍ସିତ ଆଲୋଚନା ଓ ଅଟ୍ଟହାସ୍ୟ ଦାବାଗ୍ନି ପରି 'କ୍ୟୁ'ର ଏ ମୁଣ୍ଡରୁ ସେମୁଣ୍ଡ ପର୍ଯ୍ୟନ୍ତ ଖେଳିଗଲା ।

ସେ ମଧ୍ୟ ଏହି ଦଳରେ ମିଶିଯିବ; ଏହି ଦଳରେ ନିଜର ସତ୍ତା ଲୋପ କରିଦେବ···କିନ୍ତୁ ଘର୍ମାକ୍ତ, ଅଧୌତ ଦେହର ଉତ୍କଟ ଗନ୍ଧ, ଶସ୍ତା ସିଗାରେଟରୁ କଡ଼ା ଦୋକ୍ତା ଧୂଆଁର ବିକଟ ବାସ୍ନା, ବିକୃତ ଯୌନ-ତତ୍ତ୍ୱର ଖାପଛଡ଼ା ଟିପ୍‌ପଣୀ ମିଶାମିଶି ଏହି ଜାନ୍ତବ ପରିବେଶ, ତାହାକୁ ଯେପରି ବାରମ୍ବାର ଧକ୍‌କା ଦେଇ ସେଠାରୁ ତଡ଼ି ଦେଉଥିଲା । ଏଠାରେ ସେ ଯେପରି ସମ୍ପୂର୍ଣ୍ଣ ଆଗନ୍ତୁକ, ନିତାନ୍ତ ଅପରିଚିତ !

···"କଣ ତୁମେ ? କିଏ ତୁମେ ?"···ସାମନାର ସେ ଲୋକଟି ସୁନନ୍ଦକୁ ସହାନୁଭୂତିପୂର୍ଣ୍ଣ କଣ୍ଠରେ ପଚାରୁଥିଲା ।

···ଆଃ·· କଣ ସିଏ ? କଣ ତାର ବୃତ୍ତି ? ବଞ୍ଚିବା ପାଇଁ କଣ ତାର ଅବଲମ୍ବନ ? ସମାଜରେ କଣ ତାର ଉତ୍ପାଦନ ?

ତାର ଉତ୍ତର କିଏ ବୁଝିବ ?

ସୁନନ୍ଦ କପାଳରୁ ବିନ୍ଦୁବିନ୍ଦୁ ଝାଳ ପୋଛି, ଉପରର ସୁବିସ୍ତୃତ ଆକାଶ ଆଡ଼େ ଚାହିଁଲା । ମେଳାମେଳା ଚାଉଁଶିଆ ମେଘଢଙ୍କା ଆକାଶର ସମୁଦ୍ରରେ ସୁନୀଳ ଦ୍ୱୀପ ପରି ଟିକିଏ ନିର୍ମେଘ, ନେଳି ଆକାଶ, ଗୋଟିଏ ବଳାକା ତାହାର ପୃଷ୍ଠଭୂମିରେ ଧୀରେ ଧୀରେ ଭାସି ଯାଉଥିଲା ।

ସୁନନ୍ଦ ଯେପରି ସେହି ବଳାକାଚ୍ୟୁତ, ଏକ ଭଗ୍ନପକ୍ଷ ହଂସ !

କଳାକାର ଲଘୁ ସ୍ପର୍ଶରେ, ଧର୍ମୀୟ ମଳିନ ପୃଥିବୀର ନିରୁଦ୍ଧ ପ୍ରକୋଷ୍ଠରେ ଗୋଟିଏ ବାତାୟନ ଯେପରି ହଠାତ୍ ଫିଟିଗଲା । ତାହା ଯେପରି ଏହି ଅଶ୍ଳୀଳ 'କ୍ୟୁ'ରେ ସୁଦ୍ଧା ଜୀବନର ହରିବୋଳପୁରୁ ମୁହୂର୍ତ୍ତକ ପାଇଁ ପ୍ରସାରିତ କରିଦେଲା ! ସୁନନ୍ଦ ତ ସେଇ ମୁକ୍ତ ଓ ଆନନ୍ଦର ବାର୍ତ୍ତାବହ ! ତାହାହିଁ ତ ତାର କର୍ମ, ଶିକ୍ଷା ଓ ଜୀବିକା !

ଉତ୍କଟ ଅଟ୍ଟହାସ୍ୟର ଗୋଟାଏ ଲହରରେ ସେହି କ୍ଷୁଧିତ ଅଜଗରଟା ପୁଣି ଯେପରି ଫାଟି ଉଠିଲା ! ଏକ୍ସଚେଞ୍ଜର ଅଫିସ୍ ଫାଟକ ଭିତରୁ, ଗୋଟିଏ ସୁଦର୍ଶନ ବାଳକ ବାହାରି ଆସୁଥିଲା । ନାମ ରେଜି-ଷ୍ଟ୍ରେସନ୍ କରାଇବାରେ ବିଳମ୍ବ ହେଉଥିବାରୁ ଅଳ୍ପ ସମୟ ପୂର୍ବେ, ତାହାକୁ କେନ୍ଦ୍ର କରି ନାନା ଅଶ୍ଳୀଳ ସମାଲୋଚନା ଓ ଟିପ୍ପଣୀ ଆରମ୍ଭ ହୋଇଥିଲା । ଏବେ ସେ ବାହାରି ଆସୁଥିବା ଦେଖି ଏକ ଅକାରଣ ହସର ଅଶ୍ଳୀଳତାରେ ନିର୍ବେଦଗ୍ରସ୍ତ, କ୍ଳାନ୍ତ ଓ ବୃଦ୍ଧ 'କ୍ୟୁ' ମୁହୂର୍ତ୍ତକ ପାଇଁ ଚପଳ ଓ ଚଞ୍ଚଳ ହୋଇ ଉଠିଲା ।

ସେ ବାଳକଟି ଏ ଅଟ୍ଟହାସ୍ୟର କାରଣ ବୁଝି ନପାରି, ଧଳଚ୍ଛ ଭାବରେ ଯେପରି ଅପ୍ରତିଭ ହୋଇ ପଡ଼ିଲା, ତାହା ଅଟ୍ଟହାସର ଉତ୍କଟତାକୁ ଆହୁରି ବଢ଼ାଇଦେଲା ।

*　　*　　*　　*

ଏକ୍ସଚେଞ୍ଜରେ ନାମ ରେଜେଷ୍ଟ୍ରୀ କଲାବେଳେ, କର୍ମଚାରୀଙ୍କର ମଧ୍ୟ ସେହି ପ୍ରଶ୍ନ···"କି ପେଷା ତମର ?"

ସୁନନ୍ଦ ବିମୂଢ଼ ଭାବରେ ସେହି ପ୍ରଶ୍ନର ଉତ୍ତର ଚିନ୍ତା କରୁଥିଲା, ପରୀକ୍ଷାରେ ନିର୍ବୋଧ ଛାତ୍ର ପରି !

କର୍ମଚାରୀ ବିରକ୍ତି-ମିଶ୍ରିତ କଣ୍ଠରେ ଚିତ୍କାର କରି ଉଠିଲେ··· "ଆଃ କୁହ ନା, କି ପେଷା ତମର ?"

ବାହାର 'କ୍ୟୁ'ରେ ପୁଣି ଅଟ୍ଟହାସର ଉତ୍ତେଜକ କୋଳାହଳ ଶୁଭୁଥିଲା...ଇଏ୍ଣେ କଣ ପୁଣି ତାର ବଳମ୍ବକୁ ଲକ୍ଷ୍ୟ କଲ ?

ସୁନନ୍ଦ ଫେରି ଆସୁଥିଲା, କର୍ମଚାରୀ ପୁଣି ଚିତ୍କାର କରି ଉଠିଲେ...
"ଆଃ, ଘରୁଟାକ ପରା, କଣ ତମର ପେଷା ?"

ସୁନନ୍ଦ କହିଲା : "କବି, ଡ୍ରୀମର !"

କର୍ମଚାରୀ ପୁଣି ପଚାରିଲେ..."ଡ୍ରାଇଭର ! କି ଡ୍ରାଇଭର ? ଷ୍ଟେନ, ଟ୍ରାକ୍ଟର, ଟ୍ରକ୍...?"

ସୁନନ୍ଦ ପରିହାସମିଶ୍ରିତ କଣ୍ଠରେ ଉତ୍ତର ଦେଲା..."ପେନ୍ ଡ୍ରାଇଭର" !

କର୍ମଚାରୀ, ସୁନନ୍ଦର ନାମ, ଠିକଣା ଓ ବୃତ୍ତି ଇତ୍ୟାଦି ଗୋଟିଏ ରେଜିଷ୍ଟର୍‌ରେ ଅତ୍ୟନ୍ତ ସାବଧାନତାର ସହିତ ଲେଖି ସାରି, ସୁନନ୍ଦ ଆଡ଼େ ଖଣ୍ଡେ ହଳଦିଆ କାର୍ଡ଼ ବଢ଼ାଇ ଦେଲେ । କାର୍ଡ଼କୁ ପଢ଼ି ଦେଖିବା ପାଇଁ ସୁନନ୍ଦର ସମସ୍ତ କମ୍ପା ଧୈର୍ଯ୍ୟ ନଥିଲା !

* * * *

ଏହାର ପ୍ରାୟ ମାସକ ପରେ, ଧଳା ଓ ବାଦାମୀ ରଙ୍ଗର ଲଫାଫାମାନଙ୍କରେ, ସୁନନ୍ଦର ଠିକଣାରେ, ବିଭିନ୍ନ ପ୍ରତିଷ୍ଠାନ ମାନଙ୍କରୁ ଚିଠି ଆସିବା ଆରମ୍ଭ ହୋଇଗଲା ।

ସୁରମାର ଆତ୍ମ-ପ୍ରତ୍ୟୟ ମଧ୍ୟ ଧୀରେ ଧୀରେ ଫେରି ଆସୁଥିଲା, ବସନ୍ତ-ସକାଳର ସେହି ପକ୍ଷୀମାନଙ୍କ ପରି, ଯେଉଁମାନେ ହଠାତ୍ ଦିନେ କେଉଁ ଆଡ଼େ ଉଭାନ୍ ହୋଇ ଯାଇଥିଲେ !

ଆଃ...ଏ କବିତାଟା ଶେଷ ହୋଇ ପାରିଲା ନାହିଁ ! ଟେବୁଲ୍ ଉପରେ କଣିକିଆ ହୋଇ ଜଳି ଯାଇଥିବା ଗୋଟିଏ ମହମବତୀର ପାଦ

ତଳେ ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଥିବା କାଗଜର ସ୍ତୂପ ଭିତରେ ଗୋଟିଏ ଅସମାପ୍ତ କବିତାର ପାଣ୍ଡୁଲିପି, ସ୍ୱପ୍ନରୂପୀ କେଉଁ ଆଦିମ-ଦେବତାର ପାଦ ତଳେ ନିବେଦିତ ଏକ ବଳୀ ପରି ପଡ଼ିଥିଲା ।

ବହୁ ବର୍ଷ ପୂର୍ବର ସେହି ସ୍ୱପ୍ନମୟୀ, ଆଶାମୟୀ ବାଳିକା ପରି ସୁରମା, ହାତରେ ଗୋଟିଏ ବାମ୍ଫଉଠା ଗ୍ଲାସ କପ୍ ଧରି ଭିତରକୁ ଆସିଲା । ସୁରମାର ଦୁଇ ଆଖିରେ, ଆଗାମୀ ସୁଦିନର ଉଚ୍ଛ୍ୱସିତ ପରିକଳ୍ପନା ! ଗ୍ଲାସ କପ୍‌ଟା ଟେବୁଲ୍ ଉପରେ ରଖିବାପାଇଁ ତାର ଧୈର୍ଯ୍ୟ ସୁଦ୍ଧା ନଥିଲା । କପ୍‌ରୁ ଉଚ୍ଛୁଳା ଗ୍ଲାସରେ ଅସମାପ୍ତ କବିତାର ସେ ପାଣ୍ଡୁଲିପିଟା ଓଦା ହୋଇଗଲା !

ସେଦିନର ସେହି ସ୍ୱପ୍ନନାୟିକା ପରି, ସୁରମା ସୁନନ୍ଦର କୋଳରେ ଦେହ ଢାଳି ତା କାନରେ ଚୁପ୍ ଚୁପ୍ କହିଲା···"ସେ କଥା ମନେ ଅଛି ତ ?"

ସୁନନ୍ଦ ବିସ୍ମିତ କଣ୍ଠରେ ପଚାରିଲା···"କେଉଁ କଥା ?"

ସୁରମା ଆହତ କଣ୍ଠରେ ଉତ୍ତର ଦେଲା···"ବାଃ, ସମୁଦ୍ର କୂଳରେ ଠିଆ ହୋଇ, ଆମେ ସେଦିନ ସମୁଦ୍ରକୁ ଯେଉଁ ପ୍ରତିଶ୍ରୁତି ଦେଇଥିଲେ··· ବାଲିକୁଦ ଆଉ ଝାଉଁବଣ ଭିତରେ ଅଧା ଲୁଚି ରହିଥିବା ସେହି ନଈଗୁଡ଼ିଆ ହୋଟେଲରେ, କେତେ ଦିନ ଆଉ ରାତି ବିତାଇବା ପାଇଁ ! ଆଃ ତୁମେ ସେ ସବୁ ସ୍ୱପ୍ନ ଭିତରେ ଏମିତି ଭୁଲିଗଲ ? ସେଇ ଧୂ-ଧୂ ବାଲିବନ୍ତ, ଆଉ ଧାଡ଼-ଧାଡ଼ ଝାଉଁଗଛ ଭିତରେ ସେଇ ପୁରୁଣା ନିର୍ଜନ ହୋଟେଲ !"

ସୁନନ୍ଦ ନୀରବରେ କପ୍‌ରୁ ଗ୍ଲାସ ପିଉଥିଲା ।

ସୁରମା ସୁନନ୍ଦର ଗାଲ ଉପରେ ତାର ଲମ୍ବା ଲମ୍ବା ଆଙ୍ଗୁଳି-ଗୁଡ଼ିକ ବୁଲାଇ କହିଲା, "ତୁମେ ପ୍ରଥମ ମାସର ଟଙ୍କା ପାଇବା ପରେ, ପୁଣି ଗୋଟିଏ ସପ୍ତାହ ଛୁଟି ନେଇ, ଆମେ କିନ୍ତୁ ସେଇ ସମୁଦ୍ର ପାଖକୁ ଚାଲିଯିବା !"

ପଥରରେ ଖୋଳା ଏକ ମୂର୍ତ୍ତି ପରି, ସୁନନ୍ଦ ଧୀରେ ଠିଆ ହୋଇଥିଲା; ଆଜି ବାହାରେ ବାଦାମୀ ରଙ୍ଗର ମେଦୁଆ ଆଲୋକ ମଧ୍ୟରେ ନିଜର ଦୃଷ୍ଟି ଓ ସତ୍ତା ହରାଇ ଦେଇଥିଲା !

ସୁରମା ଖଟଛଳକୁ ବାଦାମୀ ରଙ୍ଗର ସେଇ ଲଫାଫାଟା ଉଠାଇ ଆଣି, ସେଥିରୁ ଚିଠି ଖଣ୍ଡିକ ଯତ୍ନରେ କାଢ଼ି, ଏକ ପରମ ସମ୍ପଦ ପାଇବା ପରି, ତାହା ଉପରେ ତାହାର ସେଇ ସ୍ପର୍ଶାତୁର ଲମ୍ବ ଅଙ୍ଗୁଳିଗୁଡ଼ିକୁ ବାରମ୍ବାର ବୁଲାଇ ନେଉଥିଲା !

ଏଇ ଲଫାଫା ଭିତରେ ଅଛି ଯେପରି ସେଇ ସବୁ ଆଗାମୀ ସୁଦିନର ବାର୍ତ୍ତା !

ଏ ଚିଠିରେ ପୁଣି କି ନିଯୁକ୍ତି ଆସିଛି କେଜାଣି ?

ସୁରମା ହାତରୁ ଚିଠି ଖଣ୍ଡିକ ନେଇ, ସୁନନ୍ଦ ଏକ ବ୍ୟାଧିତ କୌତୂହଳରେ ଚିଠି ଉପରେ ଆଖି ବୁଲାଇନେଲା । ଗୋଟିଏ ଇଂଜିନିୟରିଂ ପ୍ରତିଷ୍ଠାନରେ ସୁନନ୍ଦକୁ ମିଳିଛି ଭେନ-ଡ୍ରାଇଭର୍‌ର ନିଯୁକ୍ତି, ପୁଣି ଯଥାଶୀଘ୍ର ସେଇ କାର୍ଯ୍ୟରେ ଯୋଗଦେବା ପାଇଁ ନିର୍ଦ୍ଦେଶ ! ବେତନ, ବୋନସ୍ ଓ ପ୍ରୋଭିଡେଣ୍ଟ୍ ଫଣ୍ଡ ଦୃଷ୍ଟିରୁ ଚାକିରିର ସର୍ତ୍ତ ଲୋଭନୀୟ !

ସୁନନ୍ଦ, ଭେନ୍‌ଡ୍ରାଇଭର୍ !!!

ସୁନନ୍ଦ ଚିଠିଟାକୁ ଲଫାଫା ଭିତରେ ରଖି ମୁଣ୍ଡି ବନ୍ଦ କରି ଦେଲା ।

ଅନେକଦିନର ସେହି ଆଶାବାଦୀ ଦିନଗୁଡିକ ପରି, ସୁନନ୍ଦର କୋଳରେ ମୁଣ୍ଡ ରଖି ସୁରମା ନିତାନ୍ତ ଆଶାଦ୍ୱିତା ପରି କମ୍ପିତ-ଅଧର ଓ ଦୃଷ୍ଟିରେ ସୁନନ୍ଦର ଦୁଇ ଆଖି ଭିତରକୁ ଚାହିଁ ରହିଥିଲା !

ମାତ୍ର ସୁନନ୍ଦର ଓଠ ଦୁଇଟି ହଠାତ୍ ପଥର ପାଲଟି ଯାଇଥିଲା !!

(୧୯୬୪)



# ନିଃସଙ୍ଗ ଆକାଶ

ନୟନପୁର···ଟ୍ରଙ୍କ-ରେଳପଥ ଧାରରେ ଗୋଟିଏ ଛୋଟିଆ ପାସେଞ୍ଜର ହଲଟ୍ ଷ୍ଟେସନ । ଫୋର୍ଟିନ୍—ଡାଉନ୍ ପାସେଞ୍ଜର ବ୍ରେକ୍ କଷି, ଅପରାହ୍ନ ତୃତୀୟଘଣ୍ଟା ପାଞ୍ଚ ମିନିଟରେ ରହିଗଲା ।

ଇତିମଧ୍ୟରେ ଦୀର୍ଘ ତିରିଶବର୍ଷ ବିତି ଯାଇଥିଲେ ସୁଦ୍ଧା, ଟାଇମ୍-ଟେବୁଲରେ ଫୋର୍ଟିନ୍-ଡାଉନ୍ ପାସେଞ୍ଜର ଗାଡ଼ିର ସେହି ସମୟ ତଥାପି ଅପରିବର୍ତ୍ତିତ ରହିଛି ।

ଆଜକୁ ତିରିଶବର୍ଷ ତଳେ, ଫୋର୍ଟିନ୍-ଡାଉନ୍ ପହଞ୍ଚିବା ବେଳେ ବିଦାୟୀ ମଧ୍ୟାହ୍ନର କୋମଳ ଆଲୋକ ଯେପରି ଲାଇନ୍ ଠାରୁ ଅଦୂରବର୍ତ୍ତୀ, ବଉଳା ପାହାଡ଼ର ଗୁଳ୍ମାକୀର୍ଣ୍ଣ ଟାଙ୍ଗର ଉପରେ ଓହ୍ଲାଇ ଆସି, ଅଳସ ଭାବରେ, ପ୍ଲାଟଫର୍ମ ଉପରେ, ଷ୍ଟେସନ ଘରର ଲାଲଟାଇଲ ଛାତ ଉପରେ, ପ୍ଲାଟଫର୍ମ କଡ଼ରେ ଝଙ୍କାଳିଆ ଶିରିଷ ଗଛର ଡାଳ ଉପରେ ବିଛେଇହୋଇ ପଡ଼ୁଥିଲା, ଆଜି ମଧ୍ୟ ମେଘର ଆସ୍ତରଣ ଭେଦି, ଠିକ୍ ସେହିପରି ବିଛେଇ ପଡ଼ୁଥିଲା ।

ଗୋଟିଏ ନିର୍ଜ୍ଜନ ପ୍ରଥମ ଶ୍ରେଣୀ କମ୍ପାର୍ଟମେଣ୍ଟ ଭିତରେ ବସି ବସି, ମୁଁ କେତେବେଳୁ ସେହି ବଉଳା ପାହାଡ଼ର ଟାଙ୍ଗରଆଡ଼େ ଚାହିଁ ଦେଖୁଥିଲି·· ମେଘଦଳ ମଧ୍ୟରେ ବହୁଦିନର ପରିଚିତ ଗୋଟିଏ ଚିହ୍ନା ମୁହଁକୁ, ଦୋଦୋଚିହ୍ନା ଆଖିରେ ଚାହିଁ ଦେଖିବା ପରି !

ସେଦିନ ବଉଳା ପାହାଡ଼ର ବର୍ତ୍ତୁଳ ଶିଖର ଦୁଇଟି ଦିଶୁଥିଲା, ଶଯ୍ୟାଶାୟିନୀ କୌଣସି ନାରୀର ଦୁଇ ପୀନ ସ୍ତନ ପରି···ପାହାଡ଼ର ତଳମ୍ବିତ କୁଞ୍ଚିତ ବସ୍ତ୍ରଭ, ନାରୀର ଅବୟବ ରେଖାଟିରେ କୋମଳ ଦିଶୁଥିଲା ।

ମାତ୍ର ଆଜି ସେହି ବଉଳା-ପାହାଡ଼ଟା ଦିଶୁଥିଲା ଗୋଟିଏ ହାଣ୍ଡିର ମୁର୍ଦ୍ଧାର ପରି !

ଟାଙ୍ଗର ଉପରେ ସେ ଥୁଣ୍ଟା ବରଗଛଟା କିନ୍ତୁ ସେହିପରି ଶତ ବଜ୍ରପାତ ଓ ବାତ୍ୟା ଏଡ଼ି ଠିଆ ହୋଇଥିଲା···ସେପରି ଜୀବନରେ ସ୍ୱପ୍ନ ଲୁଚେଇଁ, ସ୍ୱପ୍ନଭଙ୍ଗର ଚିରନ୍ତନତା ଘୋଷଣା କରିବା ପାଇଁ !

କ୍ୱଚିତ ଏଠାରେ କେତେଜଣ ଯାତ୍ରୀ ଓହ୍ଲାଉଥିଲେ, ପୁଣି ଚଢୁଥିଲେ । ଏବେ ମଧ୍ୟ ଯାତ୍ରୀ କୋଳାହଳ ବିଶେଷ ନଥିଲା ।···ଏ ସମ୍ଭବତଃ ସେ ଦିନର ସେହି ଅନ୍ଧ ଭିକାରୀଟି, ପର୍ଦ୍ଦ ତିରିଶ ବର୍ଷ ପରେ ସୁଦ୍ଧା ତାହାର କଣ୍ଠ ସେହିପରି ଏକ ଅବ୍ୟକ୍ତ ସମ୍ବେଦନରେ ଆବେ-ଦନଶୀଳ । ଖଞ୍ଜଣୀ ବଜାଇ ପ୍ଲାଟଫର୍ମ ଉପରେ ସେ ସେହିପରି ଗୋଟିଏ ଭଜନ ଗାଇ ଭିକ୍ଷା ମାଗୁଥିଲା ।···ତାର ଜୀବନର ତିକ୍ତତା ଏଇ ଅନନ୍ତ ଆକାଶ ପରି ସୀମାହୀନ ! ସ୍ତିମିତ ଅନ୍ଧକାର ଆକାଶ ପରି ମୁହଁ ତାର ପ୍ରଶାନ୍ତ···ଆବେଗ ଓ ସ୍ପନ୍ଦନର କ୍ଷୀଣ ରେଖାଟିଏ ସୁଦ୍ଧା ସେ ପ୍ରଶାନ୍ତକୁ କୁଞ୍ଚିତ କରି ନଥିଲା !

* * * *

ଦୂରରେ···ଧୀରେ ଧୀରେ କଳା ବୁଲି ଆସୁଥିବା ଶାରଦ ଧାନ ବିଲ ଓ ପାଟ ମଝିରେ, ତାଳବଣୀ ଆଉ ବାଉଁଶବାଡ଼ର ଅସ୍ପଷ୍ଟ ଛାୟା-ଶବର ନେପଥ୍ୟରେ ସେଇ ଗାଁ···ଗୋଡ଼ବାଣପୁର ଷ୍ଟେସନଠାରୁ ବଲେବଲେ ଦୁଇମାଇଲ; କିନ୍ତୁ ରାସ୍ତାରେ ବୁଲିଗଲେ ପାଞ୍ଚ ମାଇଲର ବାଟ । ସୁନାଅପାଙ୍କର ଗୁମାସ୍ତା କରୁଣୀ ଦାସ ଶଗଡ଼ ବଳଦ ନେଇ ନିଶ୍ଚୟ ଆସିଥିବେ ! କିନ୍ତୁ ଆସିଥିଲେ ତ ପ୍ଲାଟଫର୍ମ ଉପରେ ଦେଖା

ହୋଇ ସାରନ୍ତାଣି । ହୁଏତ ସେ ଆସି ନଥିଲେ । କରୁଣୀ ନ ଆସନ୍ତୁ, ଶେଗଡ଼ର ଆବଶ୍ୟକତା ନାହିଁ; ସାବଜା ଶାରଦ କ୍ଷେତ ଭିତରେ, ହିଟଡ଼ହଡ଼େ, ଅଙ୍କେଇ ବଙ୍କେଇ, ଘରଫେରନ୍ତା ବାଟୋଇମାନେ, ଯେପରି ଜଣେଜଣେ ଅଥବା ଦଳବାନ୍ଧି ଚାଲି ଯାଉଅଛନ୍ତି; ମୁଁ ମଧ୍ୟ ସେହିପରି ଅକ୍ଳେଶରେ ଚାଲିଯାଇପାରିବ ।

ବର୍ଷାଭିଜା ଧାନକ୍ଷେତର ଗନ୍ଧ ଅପରାହ୍ଣର ପବନକୁ ଆମୋଦିତ କରି ଦେଇଥିଲା···ଏକ ବିସ୍ମୃତ ସଙ୍ଗୀତର କ୍ଷୀଣ ମୂର୍ଚ୍ଛନା ପରି ! ···ସେଥିରେ ମାଳକଇଁର ସୌରଭ ଗ୍ରାମ୍ୟ ବାଳିକାର ସ୍ପର୍ଶ ଦୃଷ୍ଟି ପରି ଛୁଇଁ ଯାଇଛି କି ? ନାସାପୁଟ ବିସ୍ତାର କରି ମୁଁ ତାହା ଆଘ୍ରାଣ କରୁଥିଲି ।

ଆଃ···ମାଳକଇଁ···

ସେଇ ଝିଅଟି···ଆସନ୍ନ ଯୌବନ, ଯେଉଁଦିନ ଅବିଦିନବସନ୍ତର ମଳୟାନିଳ ପରି ତା'ର ସିନ୍ଧ କପାଳ ଉପରେ ଚୂର୍ଣ୍ଣ କବରୀକୁ କେବଳମାତ୍ର ଛୁଇଁ ଯାଇଥିଲା !

କଇଁ ଥିଲା ତାର ଡାକନାଁ ।

ଦିନେ ତାକୁ ନିର୍ଜନରେ ଡାକି ତାର ଅଞ୍ଚଳ ଧରି କହିଥିଲି··· "ତୁମ-ନାଁ କିନ୍ତୁ ମାଳକଇଁ !"

ଦେହର ରଙ୍ଗ ତାର ମାଳକଇଁ ପରି ଉଜ୍ଜ୍ୱଳ ଶ୍ୟାମ ଓ ସ୍ନିଗ୍ଧ··· ସେହିପରି ବ୍ରୀଡ଼ା-କୁଣ୍ଠିତା; ସେହିପରି ଜନ୍ମିଥିଲା ମଧ୍ୟ ଗୋଡ଼ବାଣପୁର ଗାଁର ଗୋଟିଏ ଦରିଦ୍ରର ସଂସାରରେ ! ବଢ଼ିଥିଲା ସେହିପରି, ଜୀବନର ଶତ-ଉପଦ୍ରବର ନେପଥ୍ୟରେ···ମାତ୍ର ପ୍ରାଣର ପ୍ରାଚୁର୍ଯ୍ୟରେ ସେ ଥିଲା ନିତ୍ୟ ଉତ୍ସବମୟୀ ! କଇଁ ନହେଲେ ପୁଣି, ସୁନା ଅପାର ସ୍ୱଜନବର୍ଜିତ ସଂସାରଟି ଦିନେହେଲେ ଚଳୁ ନଥିଲା ।

ମାଳକଇଁ ନାମ ଶୁଣି, ଶାଢ଼ୀର ଅଞ୍ଚଳ ଟାଣିନେଇ କଇଁ ଖିଲ ଖିଲ୍ ହୋଇ ହସି ଉଠିଥିଲା,··· ଗ୍ରାମ୍ୟ ପୁଷ୍କରିଣୀର ନିସ୍ତରଙ୍ଗ ଜଳରାଶି ଉପରେ ଜ୍ୟୋତ୍ସ୍ନାର ଊର୍ମି ପରି !

ଆଃ···ସେ ଦିନ ଥିଲା, ଶୁଭ୍ର, ଅପାପବିଦ୍ଧ ଯୌବନର ରୂପ-ପିପାସା; କାମନାର ମାଂସଳଚିତା କ୍ଷୁଧାରେ ତାହାକୁ ସେ ଦିନ ଜାନ୍ତବ କରି ଦେଇ ନଥିଲା ।

ନାଁ···କରୁଣୀ ଆସି ନାହାନ୍ତି । ଆସିଥିଲେ, କେତେବେଳୁ ସଙ୍ଘୋଳ ସାରନ୍ତେଣି ।

ଧାନବଲ ଭିତରେ ଯିବାପାଇଁ, ଦୈହିକ ଓ ମାନସିକ ପ୍ରସ୍ତୁତି ଉଦ୍ଦେଶ୍ୟରେ, ଷ୍ଟେସନ ବାହାରେ ଗୋଟିଏ ଚା ଦୋକାନର ଖଣ୍ଡେ ପରିତ୍ୟକ୍ତ ବେଞ୍ଚ ଉପରେ ବସିପଡ଼ିଲି ।

···ଦୀର୍ଘ ତିରିଶ ବର୍ଷର ବ୍ୟବଧାନ ମଧ୍ୟରେ କେବଳ ଏହି ଚା ଦୋକାନଟିରେ ଯାହା କିଛି ପରିବର୍ତ୍ତନ ହୋଇଥିଲା । ଷ୍ଟେସନ ଘର ପର୍ଯ୍ୟନ୍ତ ପଡ଼ିଥିବା ନାଲି ସୁର୍କିର ରାସ୍ତାଟି ସେଇଁଠି ମୋଡ଼ ବୁଲି ମାଟି ରାସ୍ତା ସହିତ ମିଶି ଯାଇଅଛି; ସେ ଦିନ ସେଠାରେ ଗୋଟିଏ ଝାଟିମାଟି ଘରେ ସାମାନ୍ୟ ଗୁଡ଼ିଆ ଦୋକାନଟିଏ ଥିଲା, ମାତ୍ର ଏବେ ତାହା ଏକ ଗ୍ରାମ୍ୟ ରେସ୍ତୁରାଁରେ ପରିଣତ ହୋଇଅଛି । "ବିଟିଙ୍ଗ୍ ଦ ରିଟ୍ରୀଟ" ବେଳେ ଅସ୍ତ୍ରଧାରୀ ସୈନିକମାନେ, ବେୟୋନେଟ ତଳକୁ କରି, ମୁଣ୍ଡ ନୁଆଇଁ ଠିଆ ହେବାପରି, ଚାହାର କଷାପାଣିରେ କଳା ଦିଶୁଥିବା ଗୋଟିଏ ଟେବୁଲ ଉପରେ, ଚାହା ଗ୍ଲାସମାନ ତଳମୁହାଁ ହୋଇ ରହିଥିଲା । କୋଇଲା ଷ୍ଟୋଭ ଉପରେ, ନିଆଁ ଧାସରେ ପୋଡ଼ା ଅଙ୍ଗାରର ରଙ୍ଗ ଧରିଥିବା ଗୋଟିଏ କେଟଲୀରେ ଚାହା ପାଣି ଗରମ ହେଉଥିଲା । ଚା ଦୋକାନ ସାମନାରେ ରାସ୍ତା ଉପରେ ପଡ଼ିଥିବା ଖଣ୍ଡେ ବେଞ୍ଚ ଉପରେ ମୁଁ ବସି ପଡ଼ିଲି ।

ପାସେଞ୍ଜର ଟ୍ରେନ ହୁଇସିଲ୍ ବଜାଇ, ଧୀରେ ଧୀରେ ଗତି ସଞ୍ଚୟ କରି, ସିଗନାଲ୍-ପୋଷ୍ଟ ଅତିକ୍ରମ କରି, କ୍ରମେ ଅଦୃଶ୍ୟ ହୋଇଗଲା ।

ପ୍ଲାଟଫର୍ମ ଉପରୁ ଟ୍ରେନର ପ୍ରତିବନ୍ଧକ ଅପସୃତ ହେବା ପରେ, ଅଦୂରରେ ଗୁଡ଼କଳ-କଳର ସେହି ପୁରୁଣା ଚିମ୍ନୀର ଚୂଡ଼ା କେତେଗୋଟି ଝାଉଁଗଛର ପତ୍ରଗହଳ ଭେଦ କରି ଉଠିଲା । ଆଜି ମଧ୍ୟ ଚିମ୍ନୀରୁ କଳା

ଧୂଆଁର କୁଣ୍ଡଳୀ, ଏକ ଋଜୁ ରେଖା ପରି ଉପରକୁ ଉଠିଯାଇଁ, ପୁଣି ଏକ ସମକୋଣ ସୃଷ୍ଟି କରି ବାଙ୍କି ଯାଉଥିଲା; ଧୀରେ ଧୀରେ ଆକାଶର ନୁଆଁଣିଆ କଳାମେଘ ମଧ୍ୟରେ ମିଶି ଯାଉଥିଲା ।

ଦୀର୍ଘ ତିରିଶ ବର୍ଷର କାଳ-ଚକ୍ର, ଏହି ଅପରିବର୍ତ୍ତିତ ପରିବେଶର ଅପରିବର୍ତ୍ତନୀୟତାକୁ ତିଳାର୍ଦ୍ଧ ପରିମାଣରେ ସୁଦ୍ଧା ସ୍ପର୍ଶ କରିନଥିଲା । ତାହାର ଧୂଳିରାଶି ଏହାର ସବୁଜ ମହିମାକୁ ମଳିନ କରିନଥିଲା ! ଏହି ଅପରିବର୍ତ୍ତନୀୟ ପ୍ରଶାନ୍ତି ମଧ୍ୟରେ ଯେପରି ନିହିତ ରହିଥିଲା ମୋର ଗତି-ବିକ୍ଷୁବ୍ଧ ଜୀବନର ଚରମ ଆଶ୍ରୟ । ବାତ୍ୟା ଆନ୍ଦୋଳିତ ଜୀବନ-ନୌକା ମୋର, ଯେପରି ଏହି ପ୍ରଶାନ୍ତ ଜଳରାଶି ତଳେ, ଖୋଜୁଥିଲା ମୃତ୍ତିକାର ନିଷ୍ଠିତ ଅବଲମ୍ବନ ! ···ଏଠାହିଁ ଯେପରି ମୋର ସ୍ତିମିତ ସ୍ନାୟୁର ମୃତସଞ୍ଜିବନୀ !

*   *   *   *

ରକ୍ତଚାପର ଆଧିକ୍ୟ ହେତୁ, ଡାକ୍ତରମାନେ ବାରମ୍ବାର ପରାମର୍ଶ ଦେଇଛନ୍ତି ମିଳା ବାରମ୍ବାର ତାକିଦ୍ କରିଛନ୍ତି, ଚା ନ ପିଇବା ପାଇଁ । ମାତ୍ର ବୁଢ଼ା ଦୋକାନର ସେହି ବେଞ୍ଚ ଉପରେ ବସି, ଗିଲାସେ ଚା'ର ଲୋଭ ସମ୍ବରଣ କରିପାରିଲି ନାହିଁ । ଏହା ମୋର କଳ୍ପନାପୁଷ୍ଟ ଆଘ୍ରାଣ-ପ୍ରବଣତା ହୋଇ ଥାଇପାରେ; ମାତ୍ର ଗାଉଁଲି ସସ୍ତାକଡ଼ ଚା ଦୋକାନର ସିଝା ଚା ପାଣିରେ, ବୁଢ଼ାର ମିଷ୍ଟ ସୌରଭ, ସେଦିନ ଯେପରି ସମ୍ଭବତଃ ପ୍ରଥମଥର ପାଇଁ ମୁଁ ଆଘ୍ରାଣ କରିଥିଲି ।

ଘରବାହୁଡ଼ା ବିଦେଶୀ ପ୍ରିୟଜନ ପରି, ଏହି ପରିବେଶ ହଠାତ୍ ମୋତେ ନିଜର ଅତି ଆପଣାର କରି ନେଇଥିଲା । ସେଥିପାଇଁ ଉଭୟର ଅପୂର୍ଣ୍ଣତା, ଉଭୟର ଦୃଷ୍ଟିରେ ପଡ଼ି ସୁଦ୍ଧା, ପଡ଼ୁ ନଥିଲା ।

ନିସ୍ତନ୍ଦ୍ରର ଷ୍ଟେସନର ଦୃଷ୍ଟିରେ ପଡ଼ୁନଥିଲା, ମୋର ଭଗ୍ନ-ସ୍ୱପ୍ନ ଦୃଷ୍ଟିରେ ସ୍ୱପ୍ନଭଙ୍ଗର କର୍କଶତା, ପୁଣି ମୋଟା ଲେନ୍ସର ଚଷମା ତଳେ ଆସନ୍ନ ପ୍ରୌଢ଼ତ୍ୱର ଧୂସରତା !

ଏହି ସିଗ୍‌ନାଲ୍ ପୋଷ୍ଟ୍‌ର ଲାଲ୍ ଆଉ ସାଦ୍‌ଜା ଆଲୁଅ... ସନ୍ଧ୍ୟୋତ୍ତର ପରେ ଗୃହିଣୀ ଦେଖିବା ପାଇଁ କେତେଥର ଭୂତ ଓ ବ୍ରହ୍ମ-ରାକ୍ଷସର ଭୟକୁ ସୁଦ୍ଧା ତୁଚ୍ଛ କରି, ମୁହଁସଞ୍ଜ ବେଳେ, ସେ ଦିନ ଯେଉଁ ଗ୍ରାମ୍ୟ ବାଳକଟି, ଗୋଡ଼ବାଣପୁର ଗାଁ ମୁଣ୍ଡର ନଗ୍ଗୁଟିଆ ମହାପୁରୁଷ କୁଦ ଉପରକୁ ଏକା ଏକା ଛୁଟି ଆସୁଥିଲା; ଆଜି ବହୁ, ବହୁ ବର୍ଷ ପରେ ସେ ସହରୀ ପୋଷାକ ପିନ୍ଧି ଗୁହା ଦୋକାନର ଚୌକିଅଁ ଉପରେ ବସି ନିର୍ବୋଧ ଦୃଷ୍ଟିରେ ସେହି ସିଗ୍‌ନାଲ୍ ପୋଷ୍ଟ ଆଡ଼େ ଗୃହିଣୀ ବସିଅଛି । ମାତ୍ର ସିଗ୍‌ନାଲ୍ ପୋଷ୍ଟ୍‌ରେ, ସେଦିନର ସେହି ରହସ୍ୟାବୃତ୍ତ ମହିମା ଆଜି ନଷ୍ଟ ଭ । ଆଜି ତାହା ଏକ ପଥକ୍ଳାନ୍ତ ଯାତ୍ରାଶେଷର ନିର୍ଦ୍ଦେଶକ ମାତ୍ର; ଏକ ନୂତନ ସ୍ୱପ୍ନଲୋକର ବର୍ଣ୍ଣାଢ଼୍ୟ ପ୍ରବେଶଦ୍ୱାର ନୁହେଁ !

ସାପେଇ ସାପେଇ, ଏହି ଯେଉଁ ରେଳରାସ୍ତା ଦୂରରେ ବଉଳା ପାହାଡ଼ କାନ୍ଥିର ବୁଦବୁଦିଆ ଜଙ୍ଗଲ ଭିତରେ ନିଶ୍ଚିହ୍ନ ହୋଇ ଯାଇଅଛି; ଦିନେ ତାହା କେଉଁ ଉପକଥାର ଗୁମ୍ଫାଦ୍ୱାରଠାରେ ଶେଷ ହୋଇଥିଲା; ତାହା ଆବିଷ୍କାର କରିବା ପାଇଁ ସେଇ ଯେଉଁ ଚପଳ ବାଳକଟି ଥରେ ନଗ୍ଗୁଟିଆ ଖରାବେଳେ, ଲାଇନ ଧାରେଧାରେ ଯାଇଁ ସିଗ୍‌ନାଲ ପୋଷ୍ଟ ନ ହେଉଣୁ, ଏକ ଅହେତୁକ ଭୟରେ ଧାଇଁ ପୁଣି ଫେରି ଆସିଥିଲା; ଆଜି ସେ ରକ୍ତଚାପଗ୍ରସ୍ତ ଏକ ପ୍ରୌଢ଼ ··ସେ ଜାଣେ ସବୁ ରାସ୍ତାର ଶେଷ କେଉଁଠି ! ଆଜି ତାର ସବୁ କୌତୂହଳର ସମାଧାନ ହୋଇଯାଇଛି !

ପୁଣି ଏହି ଯେଉଁ ଦଳୁଆ ଖାତ, ବାଉଁଶଝାଡ଼, ଅରମା ଜଙ୍ଗଲ କାଦୁଆ ମାଟିରାସ୍ତା, ଦରିଦ୍ର ଗୃହସ୍ଥର ପାଉଁଶିଆ କୁଡ଼ିଆ ଘର ଓ ପୋଡ଼ା କୋଇଲା ସ୍ତୂପ ମଧ୍ୟରେ, ଏକ ନିତ୍ୟ ନୂତନ ରୋମାଞ୍ଚର ଆସ୍ୱାଦନ ପାଇଁ, ପ୍ରତ୍ୟେକ ସ୍କୁଲ ଛୁଟିରେ ଗୋଟିଏ ଗ୍ରାମ୍ୟ ବାଳକ ଏଠାକୁ ଧାଇଁ ଆସୁଥିଲା, ଯାହା ତାର ଦୃଷ୍ଟିରେ ସେଦିନ ଥିଲା ଐଶ୍ୱର୍ଯ୍ୟରେ ଲକ୍ଷ୍ମୀଙ୍କର ନିତ୍ୟ ବିହାରସ୍ଥଳୀ, ତାହାର କୋଣେ କୋଣେ ଆଜି ଶତ ଦାରିଦ୍ର୍ୟର ଲକ୍ଷ ଆବର୍ଜନା ! ତଥାପି ସେମାନେ ବହୁ ବର୍ଷର ବିଚ୍ଛେଦ ପରେ ପରସ୍ପର ପରସ୍ପରକୁ ଆଲିଙ୍ଗନ କରି ସାରିଥିଲେ, ବହୁ ପ୍ରତୀକ୍ଷିତ ପ୍ରିୟମିଳନ ପରି !

ସୁରା ଦୋକାନୀ "ସ୍ପେଶାଲ୍" ଭାବରେ ପ୍ରସ୍ତୁତ ଗୋଟିଏ ସୁରା ଗ୍ଲାସ ଧରି, କେତେବେଳୁ ସମ୍ଭ୍ରମରେ ଡାକ କରୁଥିଲା..., "ବାବୁ, ସୁରା"··· ମାତ୍ର ସେଥିପ୍ରତି ମୋର ଦୃଷ୍ଟି ନ ଥିଲା ।

ତା ହାତରୁ ସୁ ଗ୍ଲାସଟା ନେଇ, ସେଥିରେ ଗୋଟିଏ ଚୁମ୍ବକ ଦେଇ, ପୁଣି ତାହାକୁ ବେଞ୍ଚ ଉପରେ ରଖିଦେଲି । ଡାକ୍ତରମାନେ ଯେତେବେଳେ ସୁରା ନପିଇବା ପାଇଁ ପରାମର୍ଶ ଦେଇଛନ୍ତି, ସେତେ-ବେଳେ ସୁରା ନ ପିଇବା ହିଁ ସମୀଚୀନ । ତଥାପି ଗାଉଁଲି ସୁ ଦୋକାନର ସେହି ପିଢ଼ା ଘରେ ଥିଲା, ଏକ ଅଦ୍ଭୁତ ସୁଗନ୍ଧ; ଏକ ଅନାସ୍ୱାଦିତ ଉତ୍ତେଜନା !

*　　*　　*　　*

ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ମୁଁ ଏହି ସ୍ଥାନଟିକୁ ନିର୍ବାଚିତ କରି-ଥିବାରୁ, ନିଜକୁ ନିଜେ ବହୁ ଧନ୍ୟବାଦ ଦେଉଥିଲି । ରକ୍ତଚାପ ଓ ତାହାର ଆନୁଷଙ୍ଗିକ ନାନା ଉପସର୍ଗ, ବହୁ ଚିକିତ୍ସାରେ ଦିନୁଦିନ ଜଟିଳ ହୋଇ ପଡ଼ୁଥିଲା । ଅବଶେଷରେ ଡାକ୍ତରମାନଙ୍କର ଏକ ମିଳିତ ବୈଠକରେ, ମୋ ପାଇଁ ବ୍ୟବସ୍ଥାର ପରାମର୍ଶ ଦିଆଗଲା···ସ୍ଥାନ ପରିବର୍ତ୍ତନ ଓ ଭଗବତ୍-ପ୍ରାର୍ଥନା ! କର୍ମରେ ଉତ୍ତେଜନାହୀନ ଶୀତଳତା ଓ କର୍ମଫଳରେ ଅନାସକ୍ତି ପୁଣି ପ୍ରତ୍ୟେକ କର୍ମର ଦାୟିତ୍ୱ "ତାଙ୍କରି" ଉପରେ ସମର୍ପଣ ! ଏ ଶେଷୋକ୍ତ ବ୍ୟବସ୍ଥା, ସ୍ୱଳ୍ପପେନସନଭୋଗୀ କର୍ମଚାରୀର ଜୀବନରେ ସମ୍ଭବ ହୋଇପାରେ; ମାତ୍ର ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଉତ୍ପାଦନର ଚାର୍ଟ ଓ ଡିଷ୍ଟ୍ରିବ୍ୟୁସନର ଗ୍ରାଫ୍‌କୁ ଅନାଇଁ ବସିଥିବା, ପୁଣି ଅନ୍ୟ ପ୍ରତିଦ୍ୱନ୍ଦୀ ସଂସ୍ଥାମାନଙ୍କ ସହିତ ନିଜକୁ ପ୍ରତି ମୁହୂର୍ତ୍ତରେ ତୁଳନା କରୁଥିବା, ତିନିମିନିଟ ସମୟ ମଧ୍ୟରେ ବ୍ରେକଫାଷ୍ଟ ବା ପ୍ରାତଃଭୋଜନ ଶେଷ କରୁଥିବା, ପାଞ୍ଚମିନିଟରେ "ବିଜିନେସ୍ ଲଞ୍ଚ"ର ଭୋଜନ ସମାପ୍ତ କରୁଥିବା ଓ ଘଣ୍ଟାକୁ ସତୁରି ମାଇଲ ବେଗରେ ଗାଡ଼ି ଚଳାଇ ମିଲ୍ ଅଫିସକୁ ଆସୁଥିବା ପୁଣି ଫେରୁଥିବା, ମୋ ପରି ମାନେଜର ମାନଙ୍କ ପକ୍ଷରେ କିନ୍ତୁ ଏ ବ୍ୟବସ୍ଥାପତ୍ର ସମ୍ପୂର୍ଣ୍ଣ ଅକାମୀ ! ସ୍ଥାନ-ପରିବର୍ତ୍ତନ ଓ ଜଳବାୟୁ ପରିବର୍ତ୍ତନ ଅବଶ୍ୟ ସମ୍ଭବ ହୋଇପାରେ !

ଏହାପରେ ଜଳବାୟୁ ପରିବର୍ତ୍ତନ ପାଇଁ ସ୍ଥାନ ନିରୂପଣ, ଲୀଳାଦେବୀଙ୍କ ପକ୍ଷରେ ଏକ ଉତ୍କଟ ସମସ୍ୟା ହୋଇପଡ଼ିଲା । ମୋର ଜଳବାୟୁ ପରିବର୍ତ୍ତନ ଅବକାଶରେ, ବିଭିନ୍ନ ସ୍ଥାନ ପରିଭ୍ରମଣର ସେ ଏକ ଆନନ୍ଦମୟ ସମ୍ଭାବନା ଦେଖି ପାରୁଥିଲେ । ମୋର କନ୍ୟା ଓ ପୁତ୍ରବର୍ଗ ମଧ୍ୟ ଏହି ବାର୍ତ୍ତାରେ ମୁକ୍ତପକ୍ଷ ଛୁଟିର ଉତ୍ତେଜନା, କେବଳ ଅନୁଭବ ନୁହେଁ, ପ୍ରକାଶ ସୁଦ୍ଧା କରି ପାରୁଥିଲେ ।

ମାତ୍ର ଏକ ନିଷିଦ୍ଧ-ଚୁମ୍ବନର ଗୋପନ-ସ୍ମୃତିପରି, ମୋର ଅବଚେତନରେ ଏହି ସ୍ଥାନଟି ଯେପରି ଚିର ଆନନ୍ଦମୟ, ଲୀଳା ବା ଡାକ୍ତରମାନେ ତାହା ବୁଝିପାରନ୍ତେ କିପରି ?

ଲୀଳାଦେବୀ ଏହି ସ୍ଥାନ ନିର୍ବାଚନ ସମ୍ପର୍କରେ ମୋଠାରୁ ପୂର୍ବରୁ ସୂଚନା ପାଇଥିଲେ, ମୋତେ ନିଶ୍ଚୟ କୌଣସି "ସାନାଟୋରିୟମ" ଅପେକ୍ଷା "ଆସାଇଲମ୍"କୁ ପଠାଇବା ପାଇଁ ଡାକ୍ତରମାନଙ୍କ ସହିତ ଗୋପନରେ ନିଶ୍ଚୟ ପରାମର୍ଶ କରିଥାନ୍ତେ । ଆଉ ଡାକ୍ତରମଣ୍ଡଳୀ ଏ ସ୍ଥାନର ପରିଚୟ ପାଇଥିଲେ, ଲୀଳାଦେବୀଙ୍କ ସହିତ ସମ୍ପୂର୍ଣ୍ଣ ଏକମତ ହୋଇଥାନ୍ତେ—ସେଥିରେ ମୋର କ୍ଷୀଣତମ ସନ୍ଦେହ ନଥିଲା ।··· ମାଲେରିଆ ଓ ବ୍ୟାସିଲେରି ଡିସେଣ୍ଟ୍ରିର ନିତ୍ୟ ଲୀଳାଭୂମି, ବନ୍ୟାଗ୍ରସ୍ତ ଅଞ୍ଚଳର ଧାନକ୍ଷେତଘେରା ନିପଟ ମଫସଲୀ ଗାଁ, ଗୋଡ଼ିବାଣପୁର······ !

ଏ ସବୁ କୋଳାହଳ ଓ ଉତ୍ତେଜନା ମଧ୍ୟରେ ମୁଁ କିନ୍ତୁ ମୋର ନିର୍ବାଚନକୁ ଏକ ରହସ୍ୟାବୃତ ନୀରବତାର ବର୍ମ ମଧ୍ୟରେ ଗୁପ୍ତ କରି ରଖିଥିଲି । ମୁଁ ଖୋଜୁଥିଲି, ନିଜଠାରୁ ପଳାୟନ କରିବା ପାଇଁ, ନିଜଠାରୁ ଆତ୍ମଗୋପନ କରିବା ପାଇଁ···ମୁଁ ଅନ୍ୱେଷଣ କରୁଥିଲି ଏପରି ଏକ ସ୍ଥାନ ଏପରି ଏକ ଗୁପ୍ତାଚ୍ଛନ୍ନ ହ୍ରଦର ନିଥର ଜଳରାଶି, ଯାହାର ଅତଳ ଗଭୀରତା ମଧ୍ୟରେ ମୁଁ ଖଣ୍ଡେ ଉପଳ ପରି ନିଶ୍ଚିହ୍ନ ହୋଇଯିବି !

ଲୀଳା ପ୍ରସ୍ତାବ ଆରମ୍ଭ କଲେ ପ୍ରଥମେ ହିମାଳୟର ବିଭିନ୍ନ ଗିରି-ନିବାସ ଆଡ଼ୁ···ଦାର୍ଜ୍ଜିଲିଙ୍ଗ୍ ସେ ଏବେ ଯାଏ ଦେଖି ନାହାନ୍ତି···

ହୋଟେଲର ଖୋଲା ଝରକା ବାଟେ, ସକାଳର ପ୍ରଥମ ଆଲୋକରେ, ରଙ୍ଗର କସ୍‌ରତ ପରେ ଯେଉଁ କାଞ୍ଚନଜଙ୍ଘା ଶୃଙ୍ଗ ଉଦ୍ଭାସିତ ହୁଏ, ତାହାର ବିଜ୍ଞାପନୀ ଚିତ୍ର ସେ ଦେଖିଛନ୍ତି, ଟୁରିଷ୍ଟ-ପୁସ୍ତିକାମାନଙ୍କର···ସେ ଦୃଷ୍ଟିରୁ ଦାର୍ଜିଲିଙ୍ଗ୍ ତ ଏକମାତ୍ର ସ୍ଥାନ···ଦେରାଦୁନ୍ ମଧ୍ୟ ମନ୍ଦ ନୁହେଁ···ସକାଳ ଓ ସନ୍ଧ୍ୟାରେ ଦେରାଦୁନ୍‌ର ସ୍ୱଚ୍ଛ ହ୍ରଦରେ ନୌକା ବିହାର ଦେହ ଓ ମନ ଉଭୟ ପକ୍ଷରେ ନିତାନ୍ତ ସ୍ୱାସ୍ଥ୍ୟକର···ତା' ନ ହେଲେ ସିମ୍‌ଲା ବି ମନ୍ଦ କଣ ? ···ଏ ସବୁ ଅବଶ୍ୟ ରଙ୍ଗୀନ ବିଜ୍ଞାପନ ପରି ଦୁର୍ମୂଲ୍ୟ ଭାବରେ ଶସ୍ତା ଓ ସୁନ୍ଦର, ପୁଣି ଅତି ମାମୁଲି ହୋଇପାରେ ! ଲୀଳା ମୋର ମାନସିକ ରୁଚି ଭଲ ଭାବରେ ଜାଣନ୍ତି । ସେ ତେଣୁ ଅଗ୍ରୀମ କୈଫିୟତ ଦେଇ କହିଲେ···"ଯଦି ଏ ସବୁ ସ୍ଥାନ ମାମୁଲି, ଅତି ଚିପ୍ ମନେହୁଏ, ତାହା-ହେଲେ କାଶ୍ମୀରର ଗୁଲ୍‌ମାର୍ଗ ନହେଲେ କୁଲୁ ଉପତ୍ୟକାର ମନାଲି ମଧ୍ୟରୁ ଯେ କୌଣସିଟିକୁ ସିଲେକ୍‌ଟ କରାଯାଇପାରେ !···ତା' ନ ହେଲେ ଏତେ ଦୂରକୁ ନ ଯାଇଁ ସୋଲାନ୍ ଗଲେ ମନ୍ଦ କଣ ? ··ସୋଲାନ୍‌ରେ ତୁମ ଅନ୍ତରଙ୍ଗ ବନ୍ଧୁ କର୍ଣ୍ଣେଲ ଜାଫ୍ରିଙ୍କର ଗୋଟିଏ ଚମତ୍କାର ବଙ୍ଗଳା ଅଛି ପରା । ସେଥର ବମ୍ବେରେ ମିସେସ୍ ଜାଫ୍ରି କହୁଥିଲେ ବଙ୍ଗଳାଟି ଗୋଟିଏ ନିର୍ଜନ ପାହାଡ଼ୀ ଢାଲୁ ରାସ୍ତାର ପ୍ରବେଶ ପଥ ଉପରେ ଅବସ୍ଥିତ । ସେଇଠାରୁ ଆରମ୍ଭ ହୋଇଛି, ସୋଲାନ ଉପତ୍ୟକାର ପାଇନ୍ ଆଉ ଦେବଦାରୁ ଜଙ୍ଗଲ !' ଲୀଳାଙ୍କର କଳ୍ପନାରେ ପକ୍ଷ ଲାଗିଥିଲା । ତାଙ୍କର ନାଇଲନ୍ ଶାଢ଼ୀ, ଫର୍ କୋଟ୍ ଓ ନୂଆ ଡିଜାଇନ୍‌ର ଅଳଙ୍କାରମାନ, ଏହିପରି ସୌଖୀନ ପରିବେଶମାନଙ୍କରେ ଏକ ରୂପଲୋଭୀ ଜନତାର ସପ୍ରଶଂସ ଦୃଷ୍ଟିର ପ୍ରତୀକ୍ଷାରେ, ପ୍ରାୟ ଗୃହ ବର୍ଷରୁ ଊର୍ଦ୍ଧ୍ୱ କାଳ ଓ୍ୱାଡ୍ରୋବ୍-ମାନଙ୍କରେ ବନ୍ଦହୋଇ ପଡ଼ିଥିଲା । ସେ ସବୁର ପ୍ରଦର୍ଶନ ପାଇଁ ମୋର ସ୍ୱାସ୍ଥ୍ୟଲାଭ ତ ଏକ ଅବକାଶ ମାତ୍ର !

କିନ୍ତୁ ଆଶ୍ୱିନ ମାସ, ଗିରି-ନିବାସ ପାଇଁ ସମୀଚୀନ ଋତୁ ନୁହେଁ—ଯେ କଥା ଲୀଳା ଭୁଲି ଯାଇଥିଲେ । ତାହେଲେ ସମୁଦ୍ର-କୂଳର କଥା ଚିନ୍ତା କରାଯାଇପାରେ··ଗୋପାଳପୁର ଅତି ଡ୍ରାବ୍, ପୁରୀ ନିତାନ୍ତ ମାମୁଲି, ଦିଘା··· ? ଦିଘାରେ ବଡ଼ ଜୋର ଗୋଟିଏ ଦିନରୁ ବେଶି ରହିହେବ ନାହିଁ । ···ଆଉ କୁଆଡ଼େ ?

ଆଚ୍ଛା···ପଣ୍ଡିଚେରୀ ଗଲେ କପରି ହୁଅନ୍ତା ?

ଲୀଳା ପଣ୍ଡିଚେରୀ-ଆଶ୍ରମର ଜଣେ ବିଶିଷ୍ଟ ଭକ୍ତ । ଆଶ୍ରମର ଆଶୀର୍ବାଦରୁ ମୋର ଚଦୋନ୍ନତି ଘଟିଥିବା, ତାଙ୍କର ଏକ ବଦ୍ଧମୂଳ ଧାରଣା ! ତେଣୁ ପଣ୍ଡିଚେରୀ ଆଶ୍ରମକୁ ଦର୍ଶନ ଉଦ୍ଦେଶ୍ୟରେ ଯିବା ଲୀଳାଙ୍କର ଏକ ବହୁପୋଷିତ ଅଭିଳାଷ ଥିଲା ।

ଲୀଳାଙ୍କର ଏ ସମସ୍ତ ଆଲୋଚନା ପ୍ରତି ମୁଁ ନିତାନ୍ତ ନିସ୍ପୃହତା ପ୍ରଦର୍ଶନ କରି ନୀରବରେ ଉପରର ଛାତକୁ ଚାହିଁ ସିଗାରେଟ ଧୂଆଁର କୁଣ୍ଡଳୀ ଲକ୍ଷ୍ୟ କରୁଥିଲି ଓ ଚନ୍ଦ୍ର ବା ମଙ୍ଗଳଗ୍ରହ ଅଭିମୁଖରେ କେଉଁଦିନ ରକେଟ-ବିମାନର ଟାଇମ୍‌ଟେବୁଲ ପ୍ରକାଶ ପାଇବ, ସେଇଆ ଚିନ୍ତା କରୁଥିଲି; କିନ୍ତୁ ଚନ୍ଦ୍ର ବା ମଙ୍ଗଳଗ୍ରହର ନିଷ୍ପ୍ରାଣ ମରୁଭୂମି ଓ ଲାଭା-ନିର୍ଝରର ମଧ୍ୟରେ ସବୁଜ-ପୃଥିବୀର ଘନତମ କୋଣ ସୁଦ୍ଧା ସେଦିନ ଏକ ଅନାସ୍ୱାଦିତ ରମଣୀୟତାରେ ଯଦି ଏକାନ୍ତ ଆକର୍ଷଣୀୟ ହୋଇ ଉଠେ ? ଚନ୍ଦ୍ର ବା ମଙ୍ଗଳଗ୍ରହର ରକେଟ ଷ୍ଟେସନମାନଙ୍କରୁ, ତା'ହେଲେ, ପୃଥିବୀ-ଅଭିମୁଖୀ ଫେରନ୍ତା ରକେଟମାନଙ୍କରେ ଯାତ୍ରୀ-ଭିଡ଼ରେ ଟିକେଟ ମିଳିବ କି ନାହିଁ କିଏ ଜାଣେ ?

ତା'ହେଲେ ଘଣ୍ଟାକୁ ଛତିଶ ହଜାର ମାଇଲ ବେଗରେ, ଏକ ଅତୃପ୍ତ ଉଲ୍‌କା ପରି ଶୂନ୍ୟପଥରେ ଘୂରି ବୁଲିବା ହିଁ ସାର ହେବ ମାତ୍ର !

ମହାଶୂନ୍ୟରେ ଜଳବାୟୁ-ପରିବର୍ତ୍ତନର ସମ୍ଭାବନା ମୁଁ ଚିନ୍ତା କରୁଥିଲି ।

ମୋର ଦୁଇ ଆଖିରେ ଦୃଷ୍ଟି ଥିଲା, ମହାଶୂନ୍ୟ ପରି ବ୍ୟଞ୍ଜନା ଓ ଅଭିବ୍ୟକ୍ତିହୀନ ପୁଣି ବିସ୍ତାରିତ···ଫାଳେ ସାଦା କାଗଜ ପରି !

ଦୁଇ ଆଖିରେ ଏହିପରି ଶୂନ୍ୟ, ନିର୍ବୋଧ ଦୃଷ୍ଟି ତ କାଳେ ମୋ ବ୍ୟାଧିର ସଙ୍କେତ ! ପ୍ରତ୍ୟେକ ଘଟଣା ଓ ବସ୍ତୁ ପ୍ରତି ଏକ ଅରୁଚି ଓ ଅସନ୍ତୋଷ, ପୁଣି ପ୍ରତ୍ୟେକ ବିଷୟରେ ଅତୃପ୍ତି ତ ମୋ ବ୍ୟାଧିର ଲକ୍ଷଣ ! ନିଦ୍ରାହୀନତା, କ୍ଷୁଧାହୀନତା ଓ କାର୍ଯ୍ୟରେ ଉତ୍ସାହହୀନତା ତ ମୋ ବ୍ୟାଧିର ଅନ୍ୟ ସବୁ ଉପସର୍ଗ !

ଲୀଳା ଏତେଦିନ ପରେ, ମୋ ଆଖିରେ ପୁଣି ହଠାତ୍ ସେହି ଶୂନ୍ୟଦୃଷ୍ଟି ଦେଖି ବିଚଳିତ ହୋଇ ପଡ଼ିଲେ । ଡାକ୍ତର କରୁଣାକରନ୍‌ଙ୍କୁ ଟେଲିଫୋନ କରିଗଲି ; ଅବଶ୍ୟ ମୋର ନେପଥ୍ୟରେ ।

ସମସ୍ତଙ୍କର କଣ୍ଠସ୍ୱରର ତୀବ୍ରତା ହଠାତ କୋମଳ ହୋଇଗଲା; ପାଦଶବ୍ଦ ଅସ୍ୱାଭାବିକ ଭାବରେ ମୃଦୁ ଓ ମନ୍ଥର ହୋଇଗଲା···ଝିଅ ମୀନା ସୁଦ୍ଧା ରେଡ଼ିଓ-ସିଲୋନର ସିନେମା ସଙ୍ଗୀତର ସ୍ୱରପର୍ଦ୍ଦାକୁ ଏକାଥରେ ନ୍ୟୁନ କରିଦେଲା ! ଶ୍ମଶାନ-ସୁଲଭ ଏକ ନୀରବତା ମଧ୍ୟରେ ଆଲ୍‌ସେସିଆନ କୁକୁର " ପ୍ରିନ୍‌ସ"ର ଗଳାଘଣ୍ଟା ସାମୟିକ ଟଙ୍କାର କେବଳ ଜୀବନ ଓ ବଞ୍ଚିବାର ଅଶ୍ରାବ୍ୟ ସୂଚନା ଯାହା ଦେଉଥିଲା ମାତ୍ର !

ଡକ୍ଟର କରୁଣାକରନ୍ ଷ୍ଟେଥୋସକୋପ୍ ଲଗାଇ, ମୋର ଛାତିର ସ୍ପନ୍ଦନ ଶୁଣିଲେ- ( କିନ୍ତୁ ହୃଦୟର ଉଦ୍‌ବେଳନ ବୁଝିଲେ କି ? ) ରକ୍ତଚାପ ମାପିଲେ, ଚିନ୍ତାଗମ୍ଭୀର ଦୃଷ୍ଟିରେ ମୋତେ ତନ୍ନ ତନ୍ନ କରି ଦେଖିଲେ·· ତା'ପରେ ମୋ ପ୍ରତି ସମ୍ପୂର୍ଣ୍ଣ ନିସ୍ପୃହତା ପ୍ରକାଶ କରି, ଚୁରୁଟରୁ କଡ଼ା ଧୂଆଁର କୁଣ୍ଡଳୀ ଛାଡ଼ି, ତଳର ଚଟାଣରେ ଯୋତା ଠକ୍ ଠକ୍ କରି, ଏକ ବିଚିତ୍ର ବାଦ୍ୟ ସୃଷ୍ଟି କରିଦେଲେ ।

ଡକ୍ଟର କରୁଣାକରନ୍ ଶେଷରେ ଦଗ୍‌ଧ ଚୁରୁଟ ଖଣ୍ଡ ଆସ୍‌ଟ୍ରେରେ ଦଳି ନିଭାଇ କହିଲେ··· "ଲୀଳାଦେବୀ, ଆପଣ ଏହାକୁ କିଛିଦିନ ଲମ୍ବା ଗୁଡ଼ି ପରି ଏକାକୀ ଛାଡ଼ି ଦିଅନ୍ତୁ; ପରାମର୍ଶ ଦିଅନ୍ତୁ ନାହିଁ, ଗତିନିୟନ୍ତ୍ରଣ କରନ୍ତୁ ନାହିଁ । ସେ ନିଜର ରୁଚି ଓ ଇଚ୍ଛାରେ କିଛିଦିନ କୁଆଡ଼େ ବୁଲି ଆସନ୍ତୁ । ସଙ୍ଗରେ କଣ ନେବେ, କୁଆଡ଼େ ଯିବେ, କେବେ ଫେରିବେ, ସେ ସବୁ ପଚାରି ବୁଝିବାର ଚେଷ୍ଟା କରନ୍ତୁ ନାହିଁ ! ଆପଣ ଦେଖିବେ, ସେ ଫେରିଲା ପରେ ଏସବୁ ଉପସର୍ଗ ତାଙ୍କର ଆଦୌ ନ ଥିବ । ଏ ବ୍ୟାଧି ମାନସିକ ଅଥବା ଶାରୀରିକ ନୁହେଁ; ଏହା ଆଧ୍ୟାତ୍ମିକ ! ଆଜିର ମଣିଷ, ସମାଜ ଓ ସମୂହଠାରୁ ଦୂରେଇ ଦୂରେଇ, ଏକ ଅପରିଚିତ ଆଗନ୍ତୁକରେ ପରିଣତ ହୋଇଅଛି । ନିଜଠାରେ ନିଜେ ସୁଦ୍ଧା, ସେ ନିତାନ୍ତ ଅପରିଚିତ ଓ ଆଗନ୍ତୁକ···ପୁଣି ନିତାନ୍ତ ନିଃସଙ୍ଗ । ସକାଳେ ଉଠି, ନଦୀ

ଘାଟରେ ଅନ୍ୟ ସାଧାରଣ ଲୋକଙ୍କ ସଙ୍ଗରେ ଗାଧୋଇ, ସ୍ତୋତ୍ର ଆବୃତ୍ତି କରି, ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ପାଣି ଅଞ୍ଜଳି ଢାଳି, ବଗିଚାରୁ ଫୁଲ ତୋଳି, ମନ୍ଦିରରେ ଘଣ୍ଟାପିଟି, ଅଥବା ସେହିପରି ଅନ୍ୟଭାବରେ ଏକ ବୃହତ୍ତର ସତ୍ତା ମଧ୍ୟରେ ନିଜ ନିଜର ଦୁର୍ଭର ଅହଂଭାବ ଲୋପ କରିଦେଇ ପାରିଲେ, ଏକ ନୂଆ ମଣିଷ ହୋଇ ଉଠନ୍ତି । ମାତ୍ର ଏକ ଧନବାଦୀ, ସଫଳତା ଓ ପ୍ରତିଯୋଗିତା-ସର୍ବସ୍ୱ ସମାଜରେ, ଜୀବନର ସେ ସ୍ୱଚ୍ଛନ୍ଦ ଓ ନିରଭିମାନୀ ଉପଭୋଗ ସମ୍ଭବ ନୁହେଁ ! ସେଥିପାଇଁ ଆଜିର ମଣିଷ ମରେ ହୃଦ୍‌ରୋଗରେ, ନୋହିଲେ ରକ୍ତଚାପରେ···ସେଦିନର ମଣିଷ ପରି ଫକ୍ଵାମଳ ବସନ୍ତ ବା ଅନ୍ୟ ମଡ଼କରେ ନୁହେଁ ! ସେ ବଞ୍ଚେ ଏକାକୀ; ଅର୍ଥ, ଅଧିକାର ଓ ଅଭିମାନର ନିର୍ଜନ କାରାଗାର ମଧ୍ୟରେ; ମରେ ନିଃଶବ୍ଦରେ ସମାଜର ଅଜ୍ଞାତସାରରେ, ହଠାତ୍ ଆକସ୍ମିକ ଭାବରେ, ନିଃସଙ୍ଗ ଶଯ୍ୟାରେ, ଅଥବା ଅଫିସରେ···ଏସବୁ ବ୍ୟାଧିପାଇଁ ଏକମାତ୍ର 'ପ୍ରେସ୍‌-ରିଲିଫ୍' ହେଉଛି ଚେତନ ମଧ୍ୟରୁ ଅବଚେତନକୁ ଫେରିଯିବା···।"

ଡକ୍‌ଟର କରୁଣାକରନ୍ ଜାତୀୟସ୍ତରେ ଖ୍ୟାତିସମ୍ପନ୍ନ ଜଣେ ଅଭିଜ୍ଞ ଚିକିତ୍ସକ; ପୁଣି ବିଶିଷ୍ଟ ମନସ୍ତାତ୍ତ୍ୱିକ ରୂପେ ସେ ମଧ୍ୟ ପରିଚିତ । ତାଙ୍କ ମୁଣ୍ଡରେ 'ଛିଟ୍' ଅଛି ବୋଲି ଅନେକେ କହିଲେହେଁ, ତାଙ୍କ ମତାମତ ଯଥେଷ୍ଟ ସମ୍ମାନିତ ହୋଇଥାଏ । ଡକ୍‌ଟର କରୁଣାକରନ ଆଉ ଖଣ୍ଡେ ଚୁରୁଟରେ ନିଆଁ ଲଗାଇ କହିଲେ · "ଲୀଳା ଦେବୀ, ଏକୁଟିଆ ଛାଡ଼ି-ଦେଲେ ତାଙ୍କୁ ହରିଇ ବସିବାର ଭୟ ହେଉଛି କି ? ଆପଣମାନେ ତ ପୁଣି ସ୍ୱଭାବରେ ନିତାନ୍ତ ଜେଲସ୍ !"

ଡାଃ କରୁଣାକରନ୍ ନିଜର ରସିକତାରେ ଉଚ୍ଛ୍ୱସିତ ଅଟ୍ଟହାସ୍ୟ କରି ଉଠିଲେ । ଲୀଳାଙ୍କ ମୁହଁର ଭାବଭଙ୍ଗୀ ମୁଁ ଗୁପ୍ତେ ଲକ୍ଷ୍ୟ କରୁଥିଲି । ମୋର ଜଳବାୟୁ ପରିବର୍ତ୍ତନ ଅବକାଶରେ, ରଙ୍ଗୀନ ପକ୍ଷ ମେଲି ତାଙ୍କର ବିଭିନ୍ନ ସ୍ଥାନ ଭ୍ରମଣର ସମ୍ଭାବନା ଏହିପରି ଭାବରେ, ଜଣେ ଖିଆଲବାଜ, ଡାକ୍ତରର ପରାମର୍ଶରେ ହଠାତ୍ ବିଡ଼ମ୍ବିତ ହେବ ବୋଲି, ସେ ଆଶା ବା ଆଶଙ୍କା କରି ନଥିଲେ । ତାଙ୍କ ମୁହଁର କୋମଳ ରେଖାଗୁଡ଼ିକ ଧୀରେ ଧୀରେ କୁଞ୍ଚିତ ହେଉଥିବା ମୁଁ ଲକ୍ଷ୍ୟ କରୁଥିଲି ।

ଆଃ···ମୁଁ ତ ଚାହେଁ, ଏହି ଛଦ୍ମବେଶ ଫିଙ୍ଗି, ଚେତନର ଏହି କଇଁଛ ଖୋଳ ଭାଙ୍ଗି, ପରିବେଷ୍ଟନୀର ଏହି କାରାପ୍ରାଚୀର ଲଂଘନ କରି, ଅବଚେତନର ଅତଳ ଗହ୍ୱରକୁ ଲମ୍ଫ ଦେବାପାଇଁ ! ତାହାର ସମ୍ଭାବନା ସୁଦ୍ଧା ଏକ ନୂତନ ଉନ୍ମାଦରେ ମୋର ସ୍ତିମିତ ଜୀବନବୋଧକୁ ପୁଣି ଉଦ୍ରିକ୍ତ କରିଦେଲା !

ମିନାଁ ଡାକ୍ତରଙ୍କ ପରାମର୍ଶ ମାନି, ମୋତେ ଏହାପରେ ମୋର ଗତି ବା ଗନ୍ତବ୍ୟ ସମ୍ପର୍କରେ କିଛି ପଚାରି ନାହାନ୍ତି । ଦୈନିକ ଡାକ ଓ ଖବରକାଗଜରେ ମୋର ସାମୟିକ ପ୍ରୟୋଜନ ନାହିଁ । ମୁଁ ଚାହେଁ-ନାହିଁ ଟେଲିଫୋନ । ମୁଁ ଚାହେଁ ହଜିଯାଇଁ ନିଜକୁ ପୁଣି ଆବିଷ୍କାର କରିବାପାଇଁ ! ତେଣୁ ମୋର ଠିକଣା ଦେଇଯିବାର ଆବଶ୍ୟକତା ମଧ୍ୟ ନ ଥିଲା । ମୁଁ ଚାହେଁ ନାହିଁ ସକାଳେ ଦାଢ଼ି କାଟିବାକୁ, ଇସ୍ତ୍ରୀଦିଆ ଲୁଗା ପିନ୍ଧିବାକୁ, ମୁଁ ଚାହେଁ ନାହିଁ ଦୈନନ୍ଦିନ ବଞ୍ଚିବାର ଅବାନ୍ତର ଅକାରଣ ବୋଝ ! ସେଥିପାଇଁ ଖଣ୍ଡେ ଛୋଟ ଆଟାଚି କେସରେ, କେବଳ ଖଣ୍ଡେ ଦୁଇଖଣ୍ଡ ଲୁଗା ଧରି, ମୁଁ ଯେତେବେଳେ ଦୀର୍ଘ ତିନିମାସ ଛୁଟି ନେଇ ବାହାରି ପଡ଼ିଲି, ମିନା ମନେମନେ ଘୋର ଆତଙ୍କିତ ହୋଇଥିଲେହେଁ, ମୋର ବ୍ୟାଧିର ପ୍ରକୋପ କାଳେ ବୃଦ୍ଧି ପାଇବ, ସେହି ଆଶଙ୍କାରେ କୌଣସି ପ୍ରତିବାଦ କରି ନ ଥିଲେ !

* * * *

ସେଭେନ ଅପ୍ ଆସିଗଲା । ଷ୍ଟେସନ ଅଞ୍ଚଳର ନିର୍ବେଦଗ୍ରସ୍ତ ପରିବେଶ ପୁଣି ମୁଖର ହୋଇ ଉଠିଲା । ଚା' ଦୋକାନୀ ଗୋଟାଏ ବ୍ରୋଞ୍ଜ କେଟ୍‌ଲିରେ ଚା' ଭର୍ତ୍ତିକରି, ଗୋଟିଏ ପାଚ୍ଛିଆରେ ବାଦାମ-ତେଲଭଜା ବରା, ଚକୋଡ଼ି ପ୍ରଭୃତି ଧରି ପ୍ଲାଟଫର୍ମ ଆଡ଼େ ଧାଇଁ ଯାଉଥିଲା । ମୁଁ ବୟସରେ ବହୁ ବହୁ ବର୍ଷ ପଛାଇ ଯାଇଁ ଡାକିଲି···

"ଆଉ ଗୋଟାଏ ଚା' ଦିଅ ।"

ଦୋକାନୀ ଗୋଟାଏ ଗ୍ଲାସରେ ମୋ ପାଇଁ ଚା' ଢାଳିଦେଲା । ତାର ପାତ୍ତୁଆ ଭିତରକୁ ଚାହିଁ, ମୋର ଜିହ୍ୱା ହଠାତ୍ ଲାଳାପ୍ଳୁତ ହୋଇ ଉଠିଲା । ଆମିଓବିକ୍ ଡ଼ିସେଣ୍ଟ୍ରୀ, ଅଥବା ବ୍ୟାସିଲାରୀ, ଅଥବା ମହାମାରୀର ଜୀବାଣୁର ଆତଙ୍କ ପ୍ରତି ଭ୍ରୂକ୍ଷେପ ନକରି, ମୁଁ କହିଲି···"ଦୁଇଟା ନାଁ ଗରିଠା, ବଡ଼ ଦିଅ । ଲଙ୍କା ପକାଇଛ ତ, ନାଲି କଞା ଲଙ୍କା, ସେହିପରି ଲଙ୍କାଥିବା ବଡ଼ !"

ଇଗଲ୍‌ର କଳା, ବଙ୍କା ନଖପରି, ବଙ୍କା ବଙ୍କା ଆଙ୍ଗୁଳି ମେଲି, ଗରିଠା ବଡ଼ ଗୋଟିଏ ପତ୍ର ଠୁଙ୍ଗାରେ, ଦୋକାନୀ ମୋ ପାଇଁ ବେଞ୍ଚ ଉପରେ ରଖିଦେଲା ।

ହଠାତ୍ ମୋର ମନେ ପଡ଼ିଗଲା, ବହୁଦିନରୁ ମୁଁ ଅଭୁକ୍ତ । ଏକ ଜାନ୍ତବ କ୍ଷୁଧାର ତାଡ଼ନାରେ ମୁଁ କଲେ ବଡ଼ କାମୁଡ଼ି ନେଲି । ନାଲି ଲଙ୍କାର ରାଗରେ ମୋ ଆଖିରୁ ପାଣିଧାର ବୋହି ଆସିଲା ।

ତିରିଶବର୍ଷ ତଳର ଜୀବନର ସ୍ୱାଦ, ଯେପରି ଜିହ୍ୱା ଓ କଣ୍ଠନାଳୀ ଭେଦି ମୋର ସ୍ତିମିତ ସ୍ନାୟୁ କେନ୍ଦ୍ରଗୁଡ଼ିକୁ ଉଜ୍ଜୀବିତ କରି ଦେଉଥିଲା, ଏକ ବିଚିତ୍ର ତୀବ୍ରତାରେ ।

"ଏ କିଏ, ମଣ୍ଟୁ ନାଁ !"

ମଣ୍ଟୁ ! ମଣ୍ଟୁ ! ଏକ ଅତି ପରିଚିତ, ଅତି ଅନ୍ତରଙ୍ଗ ସମ୍ବୋଧନ ! ଦିନେ ସେହି ଅର୍ଥହୀନ ଅଥଚ ମମତାପୂର୍ଣ୍ଣ ନାମରେ ମୁଁ ପରିଚିତ ଥିଲି ! ଆଜି ଗୋଟିଏ ପରିତ୍ୟକ୍ତ, ନିର୍ଜନ ଗହ୍ୱର ମଧ୍ୟରେ ଏକ ସୁଦୂର ପ୍ରତିଧ୍ୱନି ପରି ତାହା ଶୁଭୁଥିଲା···"ଏ କିଏ ମଣ୍ଟୁ ନା !" ରୁମାଲରେ ବଡ଼ର ବାଦାମ ତେଲ ଆଙ୍ଗୁଳିରୁ ପୋଛୁପୋଛୁ, ମୁଁ ଚାହିଁ ଦେଖିଲି, କରୁଣୀ ଦାଦା ସଙ୍ଖୋଳିବା ପାଇଁ ମୋ ଆଡ଼େ ଆଗେଇ ଆସୁଛନ୍ତି !

ଇତିମଧ୍ୟରେ ଦୀର୍ଘ ତିରିଶ ବର୍ଷ ବ୍ୟବଧାନର ରେଖାଙ୍କିତ ସ୍ପୃହା, କରୁଣୀ ଦାଦାଙ୍କ ମୁହଁ ଓ କପାଳ ଉପରେ ଦୀର୍ଘ ଓ କୁଟିଳ ହୋଇଉଠିଥିଲା ।

ମୁଣ୍ଡର ବାଳଗୁଡ଼ିକ ପାଚି ଧଳା ପଡ଼ିଯାଇଥିଲା। ସ୍ୱାସ୍ଥ୍ୟପୁଷ୍ଟ କଠୋର ଦେହ ଢିଲାଢାଲା ଦିଶୁଥିଲା।

ଦୀର୍ଘଦିନ ପରେ ମୋତେ ଦେଖି, କରୁଣୀ ଦାଦା କିନ୍ତୁ ପ୍ରସନ୍ନ ହେବାପରି ଦିଶୁ ନଥିଲେ। କରୁଣୀ ଦାଦା କହିଲେ···"ତମେ ମଣ୍ଟୁବାବୁ, ସତରେ ଆସିବ ବୋଲି ମୁଁ ଭାବି ନଥିଲି। ବିଲାତ-ଜର୍ମାନୀ ଫେରନ୍ତା ତମପରି ଇଞ୍ଜିନିୟର ସାହେବ, ଏ ପଡ଼ା ଟାଁକୁ ମନେ ରଖନ୍ତା ବା କାହିଁକି ? ପୁଣି ସାମାନ୍ୟ କଥାରେ ଆସନ୍ତା ବା କାହିଁକି ?"

କରୁଣୀ ଦାଦାଙ୍କ କଣ୍ଠରେ ଅଭିଯୋଗ ମିଶ୍ରିତ ଅଭିମାନ ନ ଥିଲା; ଥିଲା ଏକ ଶ୍ଳେଷର ତୀବ୍ରତା।

ମୁଁ କହିଲି···"ମନେ ରଖିଛି ବୋଲି ସିନା ଆଜ ଧାଇଁ ଆସିଛି !"

କରୁଣୀ ଦାଦା କହିଲେ···"ଖାଲି ତମେ ତ ଆସୁନାହଁ ମଣ୍ଟୁବାବୁ; ତମେ ତ ଲେଖାପୋଖାରେ ସୁନାଅପାଙ୍କ ପୋଷ୍ୟପୁତ୍ର; ସେ ପୁଣି ଲେଖାପଢ଼ାରେ ନୁହେଁ; କିନ୍ତୁ ଯେଉଁ ଭାଇର ପୁଅକୁ ସେ ପୋଷ୍ୟ ପୁତ୍ର କଲେ, ଏ ଗତ ଦଶବର୍ଷ ଭିତରେ, ସେ ଖଣ୍ଡେ ଚିଠି ସୁଦ୍ଧା ଦେଇ ନ ଥିଲେ; ଆଜ କିନ୍ତୁ ଏଇ ଗାଡ଼ିରେ ଆସିବେ ବୋଲି ଟେଲିଗ୍ରାମ କରିଥିଲେ; ଆସିଲେ ନାହିଁ ତ ! ସେଇଆଙ୍କୁ ମୁଁ ଅପେକ୍ଷା କରିଥିଲି ! ଯାହା ହେଉ, ସେ ତ ପୋଷ୍ୟପୁଅ। ବିମଳା, କମଳା ତ ପୁଣି ନିଜ ଜନ୍ମକଲା ଝିଅ। ସେମାନେ ଭଲା ଏ ସାତବର୍ଷ ଭିତରେ ଦିନକ ପାଇଁ ବୁଢ଼ୀଟାକୁ ଥରେ ଦେଖିବା ପାଇଁ ଆସିଛନ୍ତି ? ମାତ୍ର ଏବେ ତିନିଦିନ ହେଲା, ନିଜ ନିଜ ସ୍ୱାମୀ ଆଉ ପିଲାପିଲିଙ୍କୁ ଧରି, ଆସି ଠିକ୍ ପହଞ୍ଚି ଗଲେଣି !"···

କରୁଣୀ ଦାଦାଙ୍କ କଥାର ଉଦ୍ଦେଶ୍ୟ ଓ ମର୍ମ ମୁଁ ବୁଝି ପାରିଲି ନାହିଁ ! କାହିଁକି ବୁଝିବା ପାଇଁ ମୋର ପ୍ରବୃତ୍ତି ନଥିଲା।

କରୁଣୀ ଦାଦା କହିଲେ, "ହଉ, ତାହେଲେ ଚାଲ ! ଶଗଡ଼ ବଳଦ ଆଗରେ ଅଛି !"

ନେଳଆ କୁହୁଡ଼ିର ଗୋଟିଏ ପର୍ଦ୍ଦା, ଇତମଧ୍ୟରେ କେତେ-ବେଳେ ଅଲକ୍ଷିତରେ, ଶାରଦ ଧାନକ୍ଷେତ ଉପରେ ଓହ୍ଲାଇ ଆସିଥିଲା ।

ଆକାଶ ମୃତ୍ୟୁର ରଙ୍ଗ ପରି, ହଳହଳପରି ଉଜ୍ଜ୍ୱଳ, ସୁନୀଳ !

ଆଃ··· ମୁଁ ଚାହେଁ ଏ ବିଷ ଅକଣ୍ଠ ପାନ କରିବା ପାଇଁ !

ମୁଁ ଚାହେଁ ସେହି ହଳାହଳ ପାନ କରି, ଏକ ଅନନ୍ତ ସମାଧି ମଧ୍ୟରେ ମୂର୍ଚ୍ଛିତ ହୋଇ ପଡ଼ିବା ପାଇଁ !

ନୀଳ ଆକାଶରେ, ଦିଗ୍‌ବଳୟ ରେଖାର ବଳୟ ଉପରେ, କେତେଖଣ୍ଡ ଗାଢ଼ ନୀଳରଙ୍ଗର ଭସାମେଘ ଦିଗନ୍ତର ନେପଥ୍ୟ ମଧ୍ୟକୁ ଧୀରେ ଧୀରେ ଖସି ଯାଉଥିଲା । ଗାଢ଼ ନୀଳରଙ୍ଗ, କ୍ରମେ ପରିଣତ ହେଉଥିଲା ବାଇଗଣିରେ, ବାଇଗଣି ପରିବର୍ତ୍ତିତ ହେଉଥିଲା ପିଙ୍ଗଳରେ, ପୁଣି ପିଙ୍ଗଳ ମିଶି ଯାଉଥିଲା ଘନକୃଷ୍ଣମଧ୍ୟରେ···

ମୁଁ ସେହିଆଡ଼େ ଚାହିଁ କହିଲି···"ଶଗଡ଼ରେ ପ୍ରୟୋଜନ ନାହିଁ; ଚାଲେ ଚାଲେ ଚାଲିଯିବା; ଚାଲିରେ ଗଡ଼ଗଡ଼ି ଦୁଇ ମାଇଲ୍ ବାଟ ତ ମୋଟେ ପଡ଼ିବ !"

କରୁଣୀ ଦାଦୀ ସ୍ନେହବିଦ୍ଧ କଣ୍ଠରେ କହିଲେ···"ଯା ହେଉ, ଗୋଡ଼ବାଣପୁର ଗାଁକୁ ବାଟ ସୁଦ୍ଧା ମନେ ରଖିଛନ୍ତି ମଣ୍ଟୁବାବୁ ! ନା ସେଠି ପହଞ୍ଚିବା ପାଇଁ ତର ସହୁନାହିଁ ?"

···ମୁଁ କିନ୍ତୁ ଅନ୍ୟ କଥା ଭାବୁଥିଲି !

ଧାନ ବିଲରେ, ହିଡ଼ ଉପରେ, ଅଙ୍କେଇ ବଙ୍କେଇ ଯାଉଁ ଯାଉଁ କରୁଣୀ ଦାଦୀ କହିଲେ···

"ସୁନା ଅପା ବାଧିକା ପଡ଼ିଥିବା ଖବର ତମେ ପାଇଲ କିପରି ମଣ୍ଟୁବାବୁ ? ତମକୁ ସେ ଖବର ଦେଲା କିଏ ?"

ଠିକ୍ ସେତିକିବେଳେ, ଖଣ୍ଡେ ନୀଳବର୍ଣ୍ଣ, ବାଇଗଣି ରଙ୍ଗ ଧରି, ସଦ୍ୟସ୍ନାତା ଗୋଟିଏ ପଲ୍ଲୀବଧୂର ରୂପ ପରିଗ୍ରହ କରୁଥିଲା । ତାହାର କୁଞ୍ଚିତ କେଶରାଶି, କଟିର ତଳ ପର୍ଯ୍ୟନ୍ତ ଲମ୍ବି ଆସିଥିଲା । ଦେହର ଊର୍ଦ୍ଧ୍ୱଭାଗ ପଛକୁ ଧନୁଗୁଣପରି ଟାଣି, ବାହୁବନ୍ଧନୀ ମଧ୍ୟରେ ଗୋଟିଏ ଜଳକୁମ୍ଭ ଧରି, ସେ ଯେପରି ଅନ୍ୟ ଜଳାର୍ଥିନୀ ସହଚରୀର ପ୍ରତୀକ୍ଷାରେ ଗ୍ରୀବା ବଙ୍କାଇ କେଉଁ ଏକ ନଦୀ ତଟରେ ଠିଆହୋଇ ରହିଥିଲା ।

କାଳୀନଈ ଧାର ମହାପୁରୁଷକୁଦ ଗଡ଼ାଣିରେ, ସଦ୍ୟସ୍ନାତା ମାଳତୀଇଁକୁ ଭିଜା-ଲୁଗାର ନଗ୍ନତା ମଧ୍ୟରେ ଦେଖି, ବୟଃ-ସୁଲଭ କାମପ୍ରମତ୍ତତାରେ ମୁଁ ଥରେ ଯେପରି ପ୍ରମତ୍ତ ହୋଇ ଉଠିଥିଲି, ସେହିପରି ଏକ ପ୍ରମତ୍ତତା, ମୋର ପ୍ରୌଢ଼ତ୍ୱଲାଞ୍ଛିତ ସ୍ତିମିତ ସ୍ନାୟୁକେନ୍ଦ୍ର ଗୁଡ଼ିକୁ, ଏକ ପ୍ରଚଣ୍ଡ ଧକ୍କାରେ ହଠାତ୍ ଆଲୋଡ଼ିତ କରିଦେଇଗଲା । ମୁଁ ଏକ ଅହେତୁକ ଉଦାସୀନତା ମଧ୍ୟରେ ଆତ୍ମବିସ୍ମୃତ ହୋଇ ପଡ଼ିଥିଲି !

କରୁଣୀଦାଦାଙ୍କ କଥାରେ ମୋର ଆତ୍ମବିସ୍ମୃତି କଟିଗଲା । କରୁଣୀ ଦାଦା ପଚାରୁଥିଲେ...

"ଶୁଣ ଅଛ, ମୋତେ ସତ କହିବ ମଣ୍ଟୁବାବୁ; ସୁନା ଅପା ଦେହକଥା ତମକୁ ଖବର ଦେଲା କିଏ ? ତମେ ତ ଜାଣ, ସୁନା ଅପାର ସମ୍ପତ୍ତିକୁ ମୁଇଁ ସଖ ପରି ଆଗୁଳି ଧରିଛି । ମାଲିମକଦ୍ଦମାର ଝଞ୍ଜଟ ଭିତରକୁ ନଯାଇଁ, ଯାହାର ଯାହା ଅଂଶ ସେମାନଙ୍କୁ ତାହା ମିଳିଲେ, ମୋଠାରୁ କେହି ବେଶି ଖୁସି ହେବନାହିଁ ! କିନ୍ତୁ ସୁନାଅପା କଥା ତମେ ତ ଜାଣିଛ ମଣ୍ଟୁବାବୁ ! ଯିଏ ଭଲ ଲାଗିଲା, ସିଏ ସଙ୍ଗେ ସଙ୍ଗେ ହୋଇଗଲା ସୁନାଅପାର ପୁଅ ! ତମକୁ ପୁଅ କରି ରଖିଥିଲେ, ତମେ ବଡ଼ ହେଲ, ପାଠ ପଢ଼ିଲ, କୁଆଡ଼େ କୁଆଡ଼େ ଗଲ । ତା'ପରେ ତାଙ୍କ ସାନଭାଇର ପୁଅ ରମାକାନ୍ତକୁ ଆଣି, ତାକୁ ପୁଅପରି ପାଳିଲେ । ସେ ସେମିତି ବଡ଼ହୋଇ ଏବେ ପାଟନାରେ କୋଉଠି ପ୍ରଫେସର ଅଛି । ତା'ପରେ ଆଉରି ବି ସେମିତି ଜଣେ ଅଧେ ପୋଷ୍ୟପୁତ୍ର ବାହାରିଲେଣି । ଏଣେ ନିଜ ଜନ୍ମକଲା ଝିଅ, କମଳା ବିମଳା ଅଛନ୍ତି । ସମ୍ପତ୍ତି ଭାଗ ପାଇଁ ଅବକା ସମସ୍ତେ ବାହାରିଲେଣି । ସେମାନଙ୍କୁ

ଦୋଷ ଦେବ କାହାଁକି ? ସମ୍ପତ୍ତି ତ କମ୍ ନୁହେଁ; ଏକା ନିଜଗୃହ ଜମି ଦେଢ଼ଶ ଏକରରୁ ବେଶି ! ସମ୍ପତ୍ତିର ଲୋଭ ଛାଡ଼େ କିଏ ?"

ମୁଁ ଅନ୍ୟମନସ୍କ ଭାବରେ ଉତ୍ତର ଦେଲି…'ନାଁ, ଛାଡ଼େ କିଏ ?"

କରୁଣୀ ଦାଦା ତାଙ୍କର ଶ୍ଳେଷ-ମିଶ୍ରିତ କଣ୍ଠସ୍ୱରକୁ ଗମ୍ଭୀରତରକରି କହିଲେ "ସେଇଆ କୁହ, ନୋହିଲେ ମଣ୍ଟୁବାବୁଙ୍କ ଦେଖା ଆଉ ଏ ଜୀବନରେ ମିଳୁଥିଲା ?"

ସଦ୍ୟସ୍ନାତା ସେହି କୁଞ୍ଚିତ କେଶା ମେଘକନ୍ୟା, ଇନ୍ଦ୍ରମଧ୍ୟରେ ଖଣ୍ଡେ କଳା ବଉଦର ଓଢ଼ଣା ଭିତରେ ଲୁଚି ଯାଉଥିଲା । ସେଠାରେ ଗୋଟାଏ ଚିଲ କେବଳ ଘୂରିଘୂରି ଚକ୍କର କାଟି ଉଡ଼ି ବୁଲୁଥିଲା ।

ଆଜକୁ ତିରିଶ ବର୍ଷ ତଳେ, ମାଳକଙ୍କ ମୋ ଜୀବନରୁ ମଧ୍ୟ ଏହିପରି ନିଃଶବ୍ଦରେ, ନିଭୃତରେ ଦିନେ ବିଦାୟ ନେଇଥିଲା । ସୂର୍ଯ୍ୟାସ୍ତର ଅସ୍ତରାଗରଞ୍ଜିତ କ୍ଷୀଣ ଆଲୋକରେଖା ପରି ସେ ସ୍ମୃତିର ଏକ ଅହେତୁକ ବେଦନା, ନିଃସଙ୍ଗ ଆକାଶର ଧୂସର ସୀମାନ୍ତରେ ମଧ୍ୟ କେଉଁଠାରୁ ନିଶ୍ଚିହ୍ନ ହୋଇ ଯାଇଥିଲା ।

କାଳୀନଈର ବନ୍ଧଭଙ୍ଗି, ଭୂଷା ବାଲିଚର ଉପରେ ଯେଉଁ ମହାପୁରୁଷକୁଦ ସୃଷ୍ଟି ହୋଇଅଛି; ତାହାର ଉତ୍ତରପଟେ ଗୋଟିଏ ପ୍ରକାଣ୍ଡ ଆମ୍ବତୋଟା । ସେହି ଆମ୍ବତୋଟା ଭିତରେ ଗୋଡ଼ବାଣପୁର ଗାଁକୁ ବାଟ ପଡ଼ିଛି ।

ଚୈତ୍ରର ଗୋଟିଏ ଉତ୍ତପ୍ତ ଉଦାସିଆ ମଧ୍ୟାହ୍ନ । ଆଜକୁ ବହୁ ବର୍ଷ ପୂର୍ବେ, ପନ୍ଦର ବର୍ଷର ଗୋଟିଏ କିଶୋର ବାଳକ, କପାଳ ଉପରେ ମୁଣ୍ଡର ଅବିନ୍ୟସ୍ତ ବାଳ ଫୁର୍ ଫୁର୍ ଉଡ଼ାଇ, ଏକ ଅହେତୁକ ଶୂନ୍ୟତାରେ ଉଦ୍‌ବେଳିତ ହୋଇ, ସେହି ଆମ୍ବତୋଟା ଭିତରେ, ଗୋଟିଏ ଆମ୍ବଗଛର ଶିଅ ଉପରେ ବସି କାଳୀ ନଈର ଶୁଖିଲା ବାଲିଶଯ୍ୟା ଆଡ଼େ ବେଦନାବିଦ୍ଧ ଶୂନ୍ୟ ଦୃଷ୍ଟିରେ ଅନାଇଁ ରହିଥିଲା ।

ତଳେ ମାଟି ଉପରେ ଶୁଖିଲା ଆମ୍ବବଉଳର ମଞ୍ଜରୀ ଚୈତାଳି ପବନରେ ଝଡ଼ିପଡ଼ୁଥିଲା । ଝଡ଼ାବଉଳର ମର୍ମର ମଧ୍ୟରେ ଯେପରି ସେହି ବାଳକଟି ତା'ର ମର୍ମଭୂମିରେ ରୁଦ୍ଧ, ନୀରବ କ୍ରନ୍ଦନର ପ୍ରତିଧ୍ୱନି ଶୁଣି ପାରୁଥିଲା । ବଉଳର ଗନ୍ଧରେ, ଚୈତାଳି ପବନ ଉଚ୍ଛ୍ୱସିତ ହୋଇ ଉଠୁଥିଲା, ତା' ପ୍ରାଣର ବ୍ୟାକୁଳତା ପରି !

ସେ ପ୍ରତୀକ୍ଷା ନାରୀ ପାଇଁ ନୁହେଁ ··

ସେ ବ୍ୟାକୁଳତା ନୀଳକଇଁ ପାଇଁ ନୁହେଁ···

ନୀଳକଇଁ କେବଳ ଉପଲକ୍ଷ୍ୟ ମାତ୍ର···

ଏହାର ବହୁ ବହୁ ବର୍ଷପରେ, ଜଣେ ମଧ୍ୟବୟସ୍ୱୀ ପ୍ରୌଢ଼ ନିଜର କର୍ମକ୍ଳାନ୍ତ ଦୈନନ୍ଦିନ ଜୀବନରେ, କେବେ ମୁହୂର୍ତ୍ତକର ଅବସର ପାଇଲେ, ଏହିପରି ଚୈତ୍ରମାସର ମଧ୍ୟାହ୍ନ ମାନଙ୍କରେ, ବଗିଚାର ଆମ୍ବଗଛ ମୂଳକୁ ସମ୍ମୋହିତ ପରି ଧାଇଁ ଆସନ୍ତି । ଶୁଖିଲା ଆମ୍ବବଉଳ ତାଙ୍କ ଉପରେ ଚୈତାଳି ପବନରେ ଝଡ଼ିପଡ଼େ । ଏକ ଅହେତୁକ ଓ ଅନିର୍ଦ୍ଦିଷ୍ଟ ବେଦନାରେ ତାଙ୍କର କ୍ଳାନ୍ତ ଆଖିର କଠୋର ଦୃଷ୍ଟି ହଠାତ୍ କୋମଳ ହୋଇ ଉଠେ । କେଉଁଠି ଗୋଟାଏ କୋଇଲିର ଡାକ, ଏକ ନିର୍ଜନ ପାର୍ବତ୍ୟ ଉପତ୍ୟକାରେ ପ୍ରତିଧ୍ୱନି ପରି କୁହରିତ ହୋଇଉଠେ । ··ପୂର୍ବ ସ୍ମୃତି ଲୋପ ପାଇଥିବା ଉନ୍ମାଦ ପରି ନିର୍ବାକ ସ୍ତବ୍ଧତାରେ ସେ ଚାରିଆଡ଼କୁ ଚାହିଁ କ'ଣ ଯେପରି ଖୋଜନ୍ତି···ତିରିଶ ବର୍ଷ ତଳର ଗୋଟିଏ ବିଶିଷ୍ଟ ପରିବେଶର ସ୍ମୃତି, ବିସ୍ମୃତିର ଅନ୍ଧକାର ମଧ୍ୟରେ ସନ୍ଧାନ କରିବା ପାଇଁ ଚେଷ୍ଟା କରନ୍ତି ··· ମାତ୍ର ପାରନ୍ତି ନାହିଁ । ଏକ ନିଚ୍ଛକ ଭାବପ୍ରବଣତାର ସେହି ଦୁର୍ବୋଧ୍ୟତା ମଧ୍ୟରୁ ବର୍ତ୍ତମାନର ଶକ୍ତ ବାସ୍ତବତାକୁ ସେ ପୁଣି ଫେରି ଆସନ୍ତି ବେଳାହିତପରି; କିନ୍ତୁ ଏକ ଅନିର୍ବଚନୀୟ ସ୍ନିଗ୍ଧତାରେ ତାଙ୍କର କଣ୍ଟକ-ଦଂଷ୍ଟ ଜୀବନର ଦଗ୍ଧ ମୁହୂର୍ତ୍ତଗୁଡ଼ିକ, କେତେକ୍ଷଣ ପାଇଁ ପ୍ରଲିପ୍ତ ହୋଇଉଠେ ।

ଆଜ, ହଠାତ୍ ଆକସ୍ମିକ ଭାବରେ ଗୋଧୂଳିର ମଳିନ ଛାୟା-ତଳେ ଏଇ ଧାନକ୍ଷେତର ପାର୍ଶ୍ୱ ମନ୍ଦିରେ, ତରୁଣ ବର୍ଷ ତଳର ସେହି ଅବଲୁପ୍ତ ସ୍ମୃତି ସନ୍ଧ୍ୟାର ଗୋଟିକିଆ ଚାରା ପରି ଫିଟି ଉଠିଥିଲା । •

···ଗୋଟାଏ କୋଇଲିର ଅଶାନ୍ତ କୁହୁଡାକ ସେହି ଅଲକ୍ଷଣ ପୂର୍ବେ, କେଉଁ ପତ୍ରଶାଖାରେ ନୀରବ ହୋଇଥିଲା । ମାତ୍ର ତାହାର ପ୍ରତିଧ୍ୱନି ତଥାପି ମରି ନଥିଲା । ଏକ ସଙ୍ଗୀତର ଜ୍ୱାଳାମୟୀ ମୂର୍ଚ୍ଛନା ପରି ତାହା ସେହି ନିର୍ଜନ ମଧ୍ୟାହ୍ନରେ, ଆମ୍ବତୋଟାର ଶାଖାରେ, ପତ୍ରରେ ପତ୍ରରେ, ଯେପରି ବେଦନାର ଏକ ଲହର ସୃଷ୍ଟି କରିଥିଲା ।

ବାଳକଟି ପ୍ରଥମେ ସେହି ମୂର୍ଚ୍ଛନାଠାରୁ ମନୁଷ୍ୟର କଣ୍ଠସ୍ୱରକୁ ପୃଥକ୍ ଭାବରେ ଶୁଣିପାରି ନଥିଲା; କିନ୍ତୁ ତାହାଠାରୁ ଅଦୂରରେ, ଆମ୍ବତୋଟାର ଛାୟାତଳେ, ଅଙ୍କାବଙ୍କା, ବନ୍ଧୁରବକ୍ଷ, ପାଦଚଲା ବାଟରେ ଗୋଟିଏ ବାଳିକା, ନୀଳାମ୍ବରିତ କଟିଉପରେ, ବାମବାହୁର ବନ୍ଧନୀରେ ଗୋଟିଏ ଜଳକଳସୀ ରଖି, ଦେହର ଊର୍ଦ୍ଧ୍ୱଭାଗକୁ, ଧନୁ ପରି ଟାଣି ଧରି, ସେହି ବାଳକ ଉଦ୍ଦେଶ୍ୟରେ, ଡାକୁଥିଲା ··· "ଏ—ଇ ! ଏ—ଇ !"

ଏ'ତ ମାଳତୀ !

ବାଳକଟି ତା' ଆଡ଼େ କେତୋଟି ମୁହୂର୍ତ୍ତ ଚାହିଁଲା । ତା'ପରେ ଚିଲପରି ହଠାତ୍ ଧାଇଁ, କୁଆଡ଼େ ପଳାଇଗଲା ।

ମାଳତୀ ଆହତ ଦୃଷ୍ଟିରେ ପୁଣି ତାର ଫେରି ଆସିବାକୁ ସମ୍ଭବତଃ ପ୍ରତୀକ୍ଷା କରିଥିଲା; ମାତ୍ର ସେ ଆଉ ଫେରିଲା ନାହିଁ !

ତା' ପରେ ସେହି ବାଳକର ଜୀବନରେ ଆସିଲା ସହରର ଆମନ୍ତ୍ରଣ, ପ୍ରତିଯୋଗିତାର ଆହ୍ୱାନ ।···

କରୁଣୀ ଦାଦାଙ୍କ କଥାରେ ହଠାତ୍ ମୁଁ ପୁଣି ସେହି ମହାଶୂନ୍ୟତାକୁ ଆମ୍ବତୋଟାରୁ ଗୋଡ଼ବାଣପୁର ଗାଁ ତଳ ଧାନଚକକୁ ଫେରି ଆସିଲି । ସେ କହୁଥିଲେ···"ମୋତେ ନ କୁହ ମଣ୍ଟୁବାବୁ, ମୁଁ ସବୁ ଜାଣେ, ସବୁ

ବୁଝେଁ । କମଳା, ବିମଳାଙ୍କୁ ସେମାନଙ୍କ ହକ୍ ଅଂଶରୁ, ବଞ୍ଚିତ କରିବା ପାଇଁ ରମାକାନ୍ତର ବାପା, ତମ ସାନ ପିଇସା ଗୋପୀନାଥ ବାବୁ ଚକ୍ରାନ୍ତ ଚଳାଇଛନ୍ତି । ରମାକାନ୍ତ ଭିନ୍ନ ଧରଣର ମଣିଷ । ବାପ କଥାରେ ସେ ପଶନ୍ତି ନାହିଁ । ତେଣୁ ତମକୁ ଏଥିରେ ପୂରାଇ, ସେ ଶୃଙ୍ଖଳରେ ବାନ୍ଧିଆ ପିଟିବା ପାଇଁ ବସିଛନ୍ତି !"

ଏକ ମାମଲତକାରୀ ଗାମ୍ଭୀର୍ଯ୍ୟରେ, କରୁଣୀଦାଦାଙ୍କ ମୁହଁର ରେଖାସବୁ ହଠାତ୍ କଠୋର ହୋଇଯାଇଥିଲା । ମାତ୍ର ମୁଁ ତାହାର ବିନ୍ଦୁ ବିସର୍ଗ ବୁଝିପାରୁ ନଥିଲି ।

ଧାନ କ୍ଷେତ ସରିଗଲା । କଅଁଳଗୋଡ଼ଣ୍ଡି କେତେହାତ ଟପିଗଲେ, ମହାପୁରୁଷଙ୍କୁଦର ସେହି ଆମ୍ବତୋଟା । ମାତ୍ର ଇତିମଧ୍ୟରେ ଗଛସବୁ କଟାହୋଇ, ଯାହା ଦିନେ ଏକ ଘଞ୍ଚ ସବୁଜ ତୋଟା ଥିଲା, ତାହା ଏବେ ଏକ ବୃକ୍ଷହୀନ ରୁକ୍ଷ ପ୍ରାନ୍ତରରେ ପରିଣତ ହୋଇଥିଲା । ସାଆନ୍ତସାହିରେ ସୁନାଅପାଙ୍କର ତଉପାଡ଼ିର ନଡ଼ିଆଗଛର ବାଉଁଶ ସବୁ ଦିଶିଲାଣି, ଗୋପୀବଲ୍ଲଭଙ୍କ ମନ୍ଦିରର ଚୂଡ଼ାଟା ମଧ୍ୟ ମୁଣ୍ଡଟେକି ଉଠିଲାଣି ··· ଦୂର ପ୍ରବାସ ବାହୁଡ଼ା ପ୍ରିୟଜନଙ୍କୁ ସଙ୍ଗୋଳି ନେବାଲାଗି ଆତ୍ମୀୟସ୍ୱଜନବର୍ଗଙ୍କ ପରି ! ··· ଏ ସବୁର ପୃଷ୍ଠଭୂମିରେ ଭାସିଉଠିଲା ସୁନାଅପାର ମାତୃମୂର୍ତ୍ତି । ସୁନାଅପା ବିବାହର ଗୁରିବର୍ଷ ପରେ ବିଧବା ହୋଇଥିଲା । ବ୍ରତ ଓ ଉପବାସର ସଂଯମ ମଧ୍ୟରେ ତାହାର ଯୌବନ ଅତିବାହିତ ହୋଇଥିଲା । ତାହାର ବ୍ରତକ୍ଲିଷ୍ଟ, ଶୀର୍ଣ୍ଣ ରୁକ୍ଷ ଦେହର କଠିନ ଆବରଣ ତଳେ କିନ୍ତୁ ଆତ୍ମଗୋପନ କରି ରହିଥିଲା, ସ୍ନେହକାଙ୍ଗାଳ, କଲ୍ୟାଣମୟୀ ଗୋଟିଏ ମାତୃପ୍ରାଣ ।

ତଉପାଡ଼ି ବାଣ୍ଡରେ ପାଦଦେଲା ବେଳକୁ ଗୋଧୂଳିର ମଳିନ ଆଲୋକ, ତରଳ ଅନ୍ଧକାରରେ ପରିଣତ ହୋଇ ସାରିଥିଲା । ସେହି 'ଅଧାଆଲୁଅ ଅଧାଅନ୍ଧକାର ମଧ୍ୟରେ, ସୁନାଅପା ଘରର ସାତପୁରୁଷୀ, ଭୁନିଆଦି, ମଜଭୁତମବୁଗ ଖଞ୍ଜାର ପରସ୍ତ ପରସ୍ତ ଛପର, ଦୂର ପାହାଡ଼ର ରେଖା ପରି ଦେଖା ଯାଉଥିଲା । ଜହ୍ନିଫୁଲ ଆଜି ସନ୍ଧ୍ୟା କାକରର ଏକ

ଅତି ପରିଚିତ ଗନ୍ଧ ଆଉ ମୋର କୈଶୋରର ପୁରାତନ ସ୍ମୃତି, ସ୍ନେହମୟୀ ଜନନୀର ଶତ ବ୍ୟଗ୍ର ବାହୁ ମେଲି ମୋତେ ଯେପରି ତାହାର ନିବିଡ଼ ଅଞ୍ଚଳ-ଛାୟା ତଳେ ଲୁଚାଇ ପାରିଥିଲା ।

ଆଃ···ସନ୍ତାପ ନ ନିଭୁଣୁ ସୁଦ୍ଧା, ମୁଁ ଏହି ଛାତ ତଳେ ଅକ୍ଲେଶରେ ନିଘୋଡ଼ ନିଦରେ ଶୋଇପାରିବି । ଏଠି ଆସନ୍ନାକାଳର ସୂର୍ଯ୍ୟ, ମହାପୁରୁଷଙ୍କୁଦ ଉପରେ ବରଗଛ ସେପଟେ ନିଷ୍ପ୍ରଭ ହେବ··· ସେଥିରେ ସନ୍ଦେହ ନାହିଁ । ଆସନ୍ନାକାଳର ସନ୍ଧ୍ୟା, ଆସନ୍ନାକାଳର ରାତି···ଏଠାରେ ଅତି ନିଶ୍ଚିତ, ସୁନିଶ୍ଚିତ । ଏଠାରେ ସଙ୍କଟ ନାହିଁ, ସନ୍ଦେହ ନାହିଁ, ଏଠାରେ କେବଳ ପ୍ରଶାନ୍ତ ଆଉ ବିଶ୍ରାମ, ଏଠାରେ ଖାଲି ଚପଳତା ଆଉ ଅନାପେକ୍ଷିତ ଆନନ୍ଦ, ଏଠାରେ ଖାଲି ସୁଷୁପ୍ତି ଆଉ ଅବସର, ଏଠାରେ ସଂଶୟହୀନ ନୈଶ୍ଚିନ୍ତ୍ୟ ।

ଏଠାରେ ନିଦ୍ରାହୀନତାର ଅତ୍ୟାଚାରରୁ ଅବ୍ୟାହତି ପାଇଁ 'ବାର୍ବିଟୁରେଟ୍‌ର୍' ଆବଶ୍ୟକତା ନାହିଁ । ସଂଶୟ ଓ ସନ୍ଦେହର ଉତ୍ତେଜନାରୁ ଶାନ୍ତ ରହିବା ପାଇଁ ଏଠି ଗୀତାପାଠ କରିବାର ପ୍ରୟୋଜନ ନାହିଁ !

କିନ୍ତୁ ଚଉପାଢ଼ୀ ଉପରେ କିଏ ଏମାନେ ? ସୁନାଅପାର "ଚୌଧୁରୀ ଘର ଚୌପାଢ଼ୀ" ଉପରୁ ଜୀବନର କୋଳାହଳ ବହୁକାଳୁ ନୀରବ ହୋଇସାରିଥିଲା । ଚୌଧୁରୀ ପରିବାରର ଜନହୀନ କୋଳାହଳହୀନ ନିରୁତ୍ସବ ସଂସାରଟିକୁ ଯଖପରି ଏକା ସୁନାଅପା ଆଗୁଳି ବସିଥିଲା ।

ଦାଣ୍ଡର ଦକ୍ଷିଣପାଖରେ ଗୋପୀବଲ୍ଲଭଙ୍କ ମନ୍ଦିର । ମନ୍ଦିର ସାମନାରେ ଚଉପାଢ଼ୀ । ଦୋଳ, ସୁନିଆଁ ଓ ଦଶହରା ବ୍ୟତୀତ ଅନ୍ୟ ସମୟରେ ଏହି ଚଉପାଢ଼ୀ ପରିତ୍ୟକ୍ତ ଓ ଅବ୍ୟବହୃତ ହୋଇ ପଡ଼ିଥାଏ ।

ମାତ୍ର ଆଜି ଚଉପାଢ଼ୀ ଉପରେ କିଏ ଆଠ ଦଶଜଣ ଗୋଟିଏ ସତରଞ୍ଜି ଉପରେ ବସିଥିଲେ । ସେମାନଙ୍କ ମଧ୍ୟରୁ ଜଣେ ମାତବର ଶ୍ରେଣୀୟ ବିଶିଷ୍ଟବ୍ୟକ୍ତି । ଗୋଟିଏ ମୋଟା ତକିଆ ଉପରେ ଆଉଜି ବସି, ସେ ହୁକାରୁ ଗୁଡ଼ାଖୁଧୂଆଁ ଟାଣୁଥିଲେ । ଗୁଡ଼ାଖୁଧୂଆଁର ବାସନା

ପବନରେ ଲଗିରହିଥିଲି । ମୁଁ କରୁଣୀ ଦାଦାଙ୍କୁ ପଚାରିଲି······
"କିଏ ଏମାନେ ?"

କରୁଣୀ ଦାଦା କହିଲେ···"ଚକିଆରେ ଆଉଜି, ସେଇ ଯେ ବସିଛନ୍ତି, ଯେସବୁ ବିମଳାର ସ୍ୱାମୀ କିଶୋର ବାବୁ । କଲିକତାରେ ବ୍ୟବସାୟ ଅଛି ।" ତାଙ୍କ ନାମ ଶୁଣିଥିଲି । ବହୁବର୍ଷ ତଳେ, ବିମଳାର ବିବାହବେଳେ, ମୁଁ ସ୍ୱଦେଶରେ ନ ଥିବାରୁ ତାଙ୍କ ସହିତ ଦେଖା ହୋଇ ନ ଥିଲା । ତା'ପରେ ପରିଚୟର ଅବକାଶ ଆଉ ଘଟିନାହିଁ ।

ତେଣପାଢ଼ୀ ଉପରୁ ବିମଳାର ସ୍ୱାମୀ କିଶୋରବାବୁ କରୁଣୀଙ୍କୁ ଡାକ ପଚାରିଲେ···"କିଏ କରୁଣୀବାବୁ କି ? ସାଙ୍ଗରେ କିଏ ? ରମାକାନ୍ତ ବାବୁ ଆସିଲେ ସବୁ !"

କରୁଣୀ କହିଲେ···"ରମାକାନ୍ତ ବାବୁ ବନଗାଡ଼ିରେ ତ ଆସି ନାହାନ୍ତି, କେଜାଣି ରାତିଗାଡ଼ିରେ ଆସି ପାରନ୍ତି । ଇଏ ମଣ୍ଟୁବାବୁ, ମାମାଙ୍କ ନିଜର ପୁତୁରା । ପିଲାଦିନେ ତ ଏଇଠି ଏଇ ଘରେ ବଡ଼ ମଣିଷ ହୋଇଥିଲେ ।"

କିଶୋରବାବୁ କହିଲେ···"ଇଏ ତାହେଲେ ମାମାଙ୍କର ଆଉ ଜଣେ ପୋଷ୍ୟପୁତ୍ର ନିଶ୍ଚୟ ! ଆପଣ ମଧ୍ୟ ତାଙ୍କୁ ଯଥାସମୟରେ ଖୋଜି ବାହାରକରି ଆଣିପାରିଛନ୍ତି !"

ସାମନାରେ ଦୁର୍ଗର ପ୍ରାଚୀର ପରି ଦିଶୁଥିବା ଉଞ୍ଚପିଣ୍ଡା; ପୂର୍ବେ ବନ୍ୟାର ଆକ୍ରମଣ ଏଡ଼ିବାପାଇଁ ପଥରରେ ବନ୍ଧା ହୋଇଥିଲା···ହଠାତ୍ ମନେ ପଡ଼ିଗଲା, ଦାଣ୍ଡରୁ ପିଣ୍ଡାଉପରକୁ ଉଠିଲେ ଅଠରଟା ପାହାଚ ଉଠିବାକୁ ପଡ଼େ···ଏକଦା ଏ ସଂଖ୍ୟା ମୋର ମୁଖସ୍ଥ ହୋଇ ରହିଥିଲା ।

ବିମଳାର ସ୍ୱାମୀଙ୍କ କଥା ଶୁଣିବାପାଇଁ ମୋର ସମୟ ନଥିଲା । ପିଣ୍ଡାଉପରକୁ ଉଠିଲାବେଳେ ମୁଁ ଏକ, ଦୁଇ, ତିନି କରି ପାହାଚର ସଂଖ୍ୟା ମନେ ମନେ ଗଣୁଥିଲି ।

ପ୍ରଥମ ପ୍ରସ୍ତ ଖଞ୍ଜାଟା ସବୁବେଳେ ପ୍ରାପ୍ତ ପରିବାରଙ୍କ ହୋଇପଡ଼ିଥାଏ… କେବେ କେବେ ଅତିଥି ଅଭ୍ୟାଗତ ନୋହିଲେ ଦୋଳ ସୁନିଆଁରେ ଯାତ୍ରାଦଳ ଆସିଲେ ଏହି ଖଞ୍ଜାରେ ସେମାନଙ୍କ ପାଇଁ ରହିବାର ବ୍ୟବସ୍ଥା ହୋଇଥାଏ । କରୁଣୀଦାଦା ଗୋଟାଏ ଘରରେ ତାଙ୍କ ପିଉସୀ ମେଳ ବସନ୍ତ । ଆଜି କିନ୍ତୁ ମେଝ ପରିବାରଙ୍କ ଖଞ୍ଜା ଜନାକୀର୍ଣ୍ଣ । ପ୍ରତ୍ୟେକ ଘରେ, ପିଲାଛୁଆଙ୍କ କାନ୍ଦ, ଦାସୀ ପରିବାରମାନଙ୍କ କୋଳାହଳ । କରୁଣୀଦାଦା କହିଲେ…"କମଳାର ଆଠ ପୁଅ ଝିଅ, କମଳାର ପାଞ୍ଚ । ସେମାନଙ୍କ ଦାସୀ, ଚାକର, ସେଥିରେ ପୁଣି ବାବୁମାନେ ! ଏ ଖଞ୍ଜାରେ ସେମାନଙ୍କୁ ଜାଗା ହେଉଛି କୋଉଠି ? ମାମା ଆରଖଞ୍ଜାରେ ।" କରୁଣୀଦାଦା ଗୋଟିଏ ଗଳିଦୁଆରବାଟେ ମୋତେ ଭିତର ଖଞ୍ଜାଆଡ଼େ ବାଟ କଢ଼ାଇ ନେଇ ନେଇ କହିଲେ…"ସାବଧାନରେ ଆସିବ, ମୁଣ୍ଡ ବାଜିବ !"

ଅନ୍ଧାରୁଆ ଗଳି ଭିତରେ, ଭିତର ଖଞ୍ଜା ପଟୁ, କିଏ ଜଣେ ଧାଇଁ ଆସୁଥିଲେ । କରୁଣୀ ଦାଦାଙ୍କ ସହିତ ତାଙ୍କର ଧକ୍କା ଲାଗିଗଲା । ସେ ଲୋକଟି ବିବ୍ରତ କଣ୍ଠରେ ପଚାରିଲେ…"କିଏ କରୁଣୀବାବୁ କି ? କହୋ—ଡାକ୍ତରଙ୍କୁ ଆଣିବା ପାଇଁ କିଏ ଗଲା ? ଲାକୁଇଡ଼ କୋରାମିନ୍ ଶିଶିଟା କମଳା ହାତରୁ ପଡ଼ି ଭାଙ୍ଗିଗଲା… କୋରାମିନ୍ ଇଞ୍ଜେକ୍‌ସନ କେତେଟା ନହାତ ଦରକାର । ବର୍ତ୍ତମାନ ଜର ଓହ୍ଲାଇ ଖୁବ ଖାଲ ହୋଇଛି ।"

କରୁଣୀଦାଦା କହିଲେ…"ମୁଁ କ'ଣ କରିବ ?" ଦିନଯାକ ତ ଏଣେ ତେଣେ ହେଉଛି । ଯା'ହେଉ—ଜର ଛାଡ଼ିଗଲା; ମାମାଙ୍କର ଗୋଟାଏ ଅରିଷ୍ଟ କଟିଗଲା !"

ଅନ୍ଧାରରେ ସେ ଲୋକଟି ବାଟ କଟାଇ ଯାଉଁଯାଉଁ କହିଲେ… "ଯା' ହେଲେ ବି ଡାକ୍ତରଙ୍କ ପାଖକୁ ଶୀଘ୍ର ଲୋକ ଯିବା ଦରକାର ।"

କୋରାମିନ୍…ଡାକ୍ତର…ଜର…ମୁଁ କିଛି ବୁଝି ନପାରି କରୁଣୀ ଦାଦାଙ୍କୁ ପଚାରିଲି…"କାହାର କଣ ହୋଇଛି କି କରୁଣୀ ଦାଦା ?"

କରୁଣୀଦାଘି କହିଲେ···"କିଛି ନ ଜାଣିଲାପରି ପଚାରୁଛ ଯେ ! ସୁନାଅପା ବଗ, ଆଜକୁ ମାସେ ହୋଇଗଲା ବାଧିକାରେ ପଡ଼ିଛନ୍ତି; ଜର ! ଏଠିକା ଡାକ୍ତରମାନେ ଚହ୍ନି ପାରୁନାହାନ୍ତି···କିଏ କହୁଛି ଟାଇଫଏଡ଼, କିଏ କହୁଛି ମାଲେରିଆ । ବଡ଼ ଡାକ୍ତରଖାନାକୁ ନେବାକଥା ଉଠିଥିଲା; ମାତ୍ର ତାଙ୍କର ଏକା ଜିଦ୍, ସେ ଭିଟା ଛାଡ଼ି କୁଆଡ଼େ ଯିବେନାହିଁ !"

ହାଣ୍ଡିଶାଳ ପରି ତିକୋଣ ଖଞ୍ଜା । ଏଇଟା ଭିତର ତିସ୍ତ । ଏହାର ପ୍ରତ୍ୟେକଟି ଧୂଳିକଣା ସହିତ ଦିନେ ମୋର ପରିଚୟ, ଅନ୍ତରଙ୍ଗ ଓ ନିବିଡ଼ ଥିଲା । ଏଇଟା ସୁନା ଅପାର ଠାକୁର ଘର···ସୁନା ଅପା ସକାଳେ ଏ ଘରେ ପଶିଲେ ବାହାରୁ ବାହାରୁ କଅଁଳ ଝରବେଳ ଗଡ଼ିପଡ଼େ !··· ପୁଣି ସଞ୍ଜବେଳେ, ଆଉ ଥରେ । ସେ ଘର ଭିତରୁ ସବୁଦିନେ ଭାସିଆସେ ଝୁଣା ଆଉ ଧୂପକାଠିର ବାସନା, ଗୋଲାପଚନ୍ଦନ ଆଉ ମାଳତୀ ଫୁଲର ଗନ୍ଧ । ଆଜି କିନ୍ତୁ ସେ ଘର ବନ୍ଦ ହୋଇ ପଡ଼ିଥିଲା । ଆଉ ଏ ଘରଟା ଥିଲା ତ ମୋର ଅତି ପରିଚିତ···ପଶ୍ଚିମପାଖ ଝରକା ସେ ପାଖେ, ଦୂରର ତାଳବଣୀ ଆଡ଼େ ଅକାରଣ, ନିଷ୍ପଲକ ଦୃଷ୍ଟିରେ ଗୃହିଁ, କେତେ ଅଳସ ଦ୍ୱିପ୍ରହର ଏଠାରେ ଅତିବାହିତ ହୋଇ ନଥିଲା !

ଟୋ-ବାଡ଼ିର ନଡ଼ିଆଗଛ ମଥାନ ଉପରେ, କେତେବେଳେ ଚତୁର୍ଥୀ ତିଥିର ଫାଳିଏ ଜହ୍ନ ଉଇଁ ଉଠିଥିଲା । ତାହାର ଖିରୁ, ମଳିନ ଆଲୋକ, ଖଞ୍ଜା ଦୁଆରର ଗୋଟିଏ କୋଣରେ, ଝିଙ୍ଗ ମଉଳା ଫୁଲର ଗୋଟିଏ ଅଞ୍ଜଳିପରି ବିଞ୍ଚି ହୋଇ ପଡ଼ିଥିଲା ।

ଖଞ୍ଜା ଭିତର ଅସ୍ୱାଭାବିକ ଭାବରେ ନିସ୍ତବ୍ଧ । କରୁଣୀ ଦାଘି କହିଲେ···"ସେଇ ଘରେ ମାମା ଅଛନ୍ତି ।"

ଖଞ୍ଜାକୋଣରେ ଗୋଟିଏ ଘରଭିତରକୁ ଲଣ୍ଠନ ଆଲୁଅର ଗୋଟିଏ ମଳିନ ରେଖା ଦୀର୍ଘାୟିତ ହୋଇ ଖଞ୍ଜା ଦୁଆରେ ପଡ଼ିଥିଲା । ଘରଭିତରେ କଫମିଶା ଘଡ଼ଘଡ଼ କାଶରେ, ସେହି ନିସ୍ତବ୍ଧ ପରିବେଶ ହଠାତ୍ ମରଣର ଆତଙ୍କରେ ଯେପରି କମ୍ପି ଉଠିଲା ।

ଏଇ ଗମ୍ଭୀର ଘରେ ଶିଶୁକାଠର ଯେଉଁ କମକଣା ପଲଙ୍କ ଉପରେ ପଡ଼ି, ସୁନାଅପା ପ୍ରିୟଜନହୀନ ଏହି ସଂସାରକୁ ପକ୍ଷପରେ ଆବୋରି ପଡ଼ିଥିଲେ, ଏବେ ସେହି ପଲଙ୍କର ବାଡ଼ାଦେହରେ କେତେଟା ତକିଆ ଦେହରେ ଆଉଜି, ମାର୍ବଲ ପଥରରେ ଖୋଳା ଆକ୍ଷେପର୍ଣ୍ଣ ପ୍ରାଣହୀନ ଯୋଡ଼ା ଆଖି ମେଲି ସେ ବସିଥିଲେ । ସେ ଆଖିରେ ପ୍ରାଣର ସତ୍ତା ବା ସ୍ପନ୍ଦନ ନଥିଲା । ପାଖରେ ଗୋଟିଏ କାଠ ଟୁଲ୍ ଉପରେ ଜଗନ୍ନାଥଙ୍କର ଗୋଟିଏ କାଚବନ୍ଧା ପୂଜାଫଟୋ, ତୁଳସୀପତ୍ର, ନିର୍ମାଲ୍ୟ ଓ ଗୋଟିଏ ପାତ୍ରରେ ଗଙ୍ଗୋଦକ ରହିଥିଲା । ସୁନାଅପା ଯେଉଁ ଆଡ଼କୁ ଅନାଇଁ ବସିଥିଲେ, ସେହି ଆଡ଼ର କାନ୍ଥରେ ତାଙ୍କର ମୃତ ସ୍ୱାମୀଙ୍କର ଗୋଟିଏ ବଢ଼େଇ ଫଟୋ ଅସ୍ୱାଭାବିକଭାବରେ ଉଜ୍ଜ୍ୱଳ ଦିଶୁଥିଲା । ଯୌବନପୁଷ୍ଟ, ଅଭିଜାତ-ଦର୍ଶନ, ସମ୍ଭ୍ରାନ୍ତ ଚେହେରା !

କରୁଣୀ ବଡ଼ପାଟିରେ ଡାକି କହିଲେ·····"ମଣ୍ଟୁବାବୁ ତମକୁ ଦେଖିବା ପାଇଁ ଆସିଛନ୍ତି, ମାମା !"

ସୁନାଅପା ଶୁଣିଲେ କି ନାହିଁ, କିଏ ଜାଣେ ? ତା'ଆଖିରେ ପ୍ରାଣ-ସ୍ପନ୍ଦନର କ୍ଷୀଣତମ ସୂଚନା ସୁଦ୍ଧା ନଥିଲା । କରୁଣୀ ଆଉଥରେ ବଡ଼ ପାଟି କରି ଡାକିଲେ···"ମାମା, ହେଇ ତମ ମଣ୍ଟୁବାବୁ ଟିଆ ହୋଇଛନ୍ତି ପରା !"

ଏତେ ବ୍ୟାଧି ସତ୍ତ୍ୱେ, ସୁନାଅପାର ବ୍ରତ ଓ ଉପବାସକ୍ଲିଷ୍ଟ ପଥରଖୋଳା ମୁହଁରେ ଜୀର୍ଣ୍ଣତାର କ୍ଷୀଣ ରେଖାଟିଏ ସୁଦ୍ଧା ପଡ଼ି ନଥିଲା । ସେହି ପଥରଖୋଳା ମୁହଁରେ, ଦୁଇଟି କୋଟରର ମଧ୍ୟରୁ, ମାର୍ବଲର ପ୍ରାଣହୀନ, ଅପଲକ ଦୃଷ୍ଟିରେ ସୁନାଅପା ଯେଣିପରି ଅନାଇଁ ବସିଥିଲେ ।

ଏକ ଅସ୍ୱସ୍ତିରେ ମୁଁ ସେଠାରୁ ବାହାର ଦୁଆରକୁ ଚାଲି ଆସିଲି । କରୁଣୀ ଦାଣ୍ଡ ଭିତରେ ତଥାପି ଟିଆହୋଇ, 'ମାମା, ମାମା' ବୋଲି ଡାକୁଥିଲେ ।

ବାହାର ପ୍ରସ୍ତ ଖଞ୍ଜାକୁ ଯିବାପାଇଁ, ସେହି ଅନ୍ଧାର ଗଳି ଭିତରେ, କିଏ ଜଣେ ମୋ ସମ୍ପର୍କରେ ଅନୁଚ୍ଚ କଣ୍ଠରେ କାହାକୁ କହୁଥିଲେ, "ତୁମେ

ଏତେବେଳେ ମାମାଙ୍କ ପାଖ ଛାଡ଼ି ଏଣେ ରହିଲେ ହେବ ? ଚମର ବୋଉ ମଣ୍ଡୁଆଣୀଙ୍କୁ ଧରି କରୁଣୀ ସେଠାକୁ ଗଲାଣି । ଏତେବେଳେ ଯଦି ଗୋଟାଏ ଦସ୍ତଖତ ବା ଉଇଲରେ ତାଙ୍କର ଟିପଚିହ୍ନ ସେ ନେଇଯାଏ, ତା'ହେଲେ ଏତେ ପରିଶ୍ରମ ପଣ୍ଡହେବ ଜାଣ !" ଅନ୍ଧାର ଗଳିଭିତରୁ ଚୁଡ଼ି ଝଣ ଝଣ କରି ଗୋଟିଏ ନାରୀମୂର୍ତ୍ତି ସୁନାଅପାର ଗର୍ଣ୍ଣିଶ ଘର ଆଡ଼େ ତରତର ପାଦରେ ଚାଲିଗଲା । ଏ କମଳା ନା ବିମଳା ? ଥାଉ—ଜାଣି ଲାଭ ନାହିଁ !

ବନ୍ଦ ମଧ୍ୟର ମୁହୂର୍ତ୍ତବିଜଡ଼ିତ; ଏକ୍ସ ମମତାମୟ, ଅନ୍ତରଙ୍ଗ ପରି-ବେଶ, ଯାହା ମୋତେ ଆଶ୍ରୟର ପ୍ରଲୋଭନ ଦେଖାଇ, ଏହାର ଅଞ୍ଚଳ ଛାୟା ତଳକୁ ଏତେ ଦୂରରୁ ଟାଣି ଆଣିଥିଲା, ଏବେ ସେପରି ଶତ ଶତ ବାହୁ ମେଲି, ମୋତେ ଏଠାରୁ ଦୂର କରି ଦେଉଥିଲା ।

ମୁଁ ବାହାରକୁ ଚାଲି ଆସିଲି ।

ଚଉପାଢ଼ୀରେ କେହି ନଥିଲେ । ପ୍ରତ୍ୟେକେ ସମ୍ଭବତଃ ନିଜ ନିଜ ଶିବିରରେ ଗୋପନ ପରାମର୍ଶ ଓ ତାହାରି ମଧ୍ୟରେ ସୁନାଅପାର ଶୁଶ୍ରୂଷାର ତଦ୍‌ବିର କରିବା ପାଇଁ ପୁଣି ଫେରି ଯାଇଥିଲେ ।

ନିଜର ଅଜ୍ଞାତସାରରେ ମୁଁ ପୁଣି ଏକ, ଦୁଇ, ତିନି ଚଣି ପିଣ୍ଡା ଉପରୁ ପାହାଚରେ ତଳକୁ ଓହ୍ଲାଇ ଆସିଲି ।

ଗୋପିବଲ୍ଲଭଙ୍କ ମନ୍ଦିରବେଢ଼ା ଭିତରରୁ କିଏ ଜଣେ ଅଞ୍ଚଳର ଆଢ଼ୁଆଳରେ ଗୋଟିଏ ସନ୍ଧ୍ୟାଦୀପ ଧରି ଆସୁଥିଲେ । ତାଙ୍କ ମୁହଁର ଗୋଟିଏ ଅଂଶ ଦୀପର କ୍ଷୀଣ ଆଲୋକରେ ଦେଖାଯାଉଥିଲା···ଶୀର୍ଣ୍ଣ, ନିରାଭରଣ, ରେଖାଙ୍କିତ ମୁହଁ । ସେ ସମ୍ଭବତଃ ବିଧବା । ହାତରେ ତାଙ୍କର ଚୁଡ଼ି ବା କାଚ ନଥିଲା । କପାଳ ଉପରେ କେତେକେରା ରୁକ୍ଷ କେଶ ଅବିନ୍ୟସ୍ତ ଭାବରେ ଉଡ଼ି ପଡ଼ୁଥିଲା ।

ମୁଁ ଅଭିଭୂତ ପରି ଡାକଦେଲି···"ଏ କିଏ ମାଲକଇଁ !"

ତାଙ୍କର ହାତରୁ ହଠାତ୍ ଦୀପଟା ତଳେପଡ଼ି ନିଭିଗଲା । ଚତୁର୍ଥୀ ଚନ୍ଦ୍ରର ମଳିନ ଜ୍ୟୋତ୍ସ୍ନାରେ ସବୁ ଅସ୍ପଷ୍ଟ ଦିଶୁଥିଲା···ସ୍ୱପ୍ନର ସ୍ମୃତି ପରି ।

ଆଉଥରେ ଡାକିଲି···"ମାଳତୀ" !

ମାତ୍ର ଉତ୍ତର ଦେବାପାଇଁ ସେଠାରେ ମାଳତୀ ନଥିଲା ।

ଖଞ୍ଜା ଭିତରୁ କମଳା ଓ ବିମଳା ଖୁବ୍ କଣ୍ଠରେ ମଡ଼ କାନ୍ଦଣା ଆରମ୍ଭ କରି ଦେଇଥିଲେ । ସୁନାଅପା ଚାଲିଗଲେ ।

ରାତି ଦଶଟାରେ ସହରକୁ ଫେରିଯିବାପାଇଁ ମେଲ୍‌ଟ୍ରେନ୍···ମୋର ଅବଚେତନରେ ଷ୍ଟେସନ୍-ଫେରନ୍ତାବାଟ ଅତି ପରିଚିତ···ଅନ୍ଧାରରେ ସୁଦ୍ଧା ଅସୁବିଧା ହେବନାହିଁ ।

ମହାପ୍ରଭୁଙ୍କ ପାଖରେ ଷ୍ଟେସନ ସିଗନାଲର ନାଲି ଆଲୁଅ ଛଥାଟି ଦେଖାଯାଉଥିଲା !

ଯେଉଁ ପୃଥିବୀଠାରୁ ଆତ୍ମରକ୍ଷାପାଇଁ ମୁଁ ଆତ୍ମଗୋପନ କରି ବୁଲୁଥିଲି, ସେହି ପୃଥିବୀ ଯେପରି ଦାନବର ରକ୍ତଚକ୍ଷୁ ମେଲି, ମୋ ସାମନାରେ ଠିଆହୋଇ ରହିଥିଲା ।

ସମ୍ମୋହିତ ପରି ମୁଁ ସେଇଆଡ଼େ ଚାଲିଲି ।

କିଏ ଡାକିଲା, କି···"ଏଇ !"

ପଛକୁ ଫେରି ଚାହିଁଲି । ନାଁ କେହି ନୁହେଁ !

ଅନେକ ପଛରେ, ଗୋଟାଏ ଅଶ୍ୱତ୍ଥଗଛର ଦୁଇଟି ମୃତଶାଖା କ୍ଷୀଣଚନ୍ଦ୍ରର ମଳିନ ଆଲୋକରେ ଆଲୁଳାୟିତ-କୁନ୍ତଳା ଏକ ନାରୀର ଭ୍ରମ ସୃଷ୍ଟି କରିଥିଲା । ସେ ଯେପରି ଦୁଇ ବ୍ୟଗ୍ରବାହୁ ମେଲି ମୋ ପଛରେ ଛୁଟିଥିଲା, ମୋତେ ତାହାର ବ୍ୟାକୁଳ ଅଞ୍ଚଳ ତଳେ ଅବଲୁପ୍ତ କରିଦେବା ପାଇଁ ! ( ୧୯୬୩ )

---

# କାକ୍‌ଟସ

ଗୋଲ୍‌ଡେନ-ସ୍ପାର୍" ହୋଟେଲ ।

'ସିଜନ୍' ଆରମ୍ଭ ହୋଇନାହିଁ ।

ଦଳ ଦଳ ରଙ୍ଗୀନ୍ ପ୍ରଜାପତି ପରି ଭ୍ରମଣ-ବିଳାସୀ ଦଳ ଆସିବା ପାଇଁ ତଥାପି ବିଳମ୍ବ ଅଛି ।

ମେଇ ମାନଙ୍କ ପ୍ରତୀକ୍ଷାରେ ପଡ଼ି ରହିଛି, କ୍ଳାନ୍ତ ଓ ଅବସାଦରେ, ନିର୍ଜନ ସମୁଦ୍ରବେଳା, ଗୋଲ୍‌ଡେନ-ସ୍ପାର୍ ହୋଟେଲ ଆଉ ହୋଟେଲ ସାମନାରେ ସାବ୍‌ନା ଭେଲଭେଟ ପରି ଲନ୍ !

ଲନ୍‌ର ପାମ୍‌ଗଛ ମୂଳରେ, ଜଣେ ବୃଦ୍ଧ ଇଂରେଜ, ଖାକି ହାଫ୍‌ପ୍ୟାଣ୍ଟ ଓ ଧଳା ହାଫ୍‌ସାର୍ଟ ପିନ୍ଧି, ଗୋଟିଏ ବେତମୋଡ଼ା ଚଉକି ଉପରେ, ସମ୍ଭବତଃ ଗତ ସପ୍ତାହର "ଷ୍ଟେଟସ୍‌ମ୍ୟାନ" ଖବରକାଗଜ ଖଣ୍ଡ ଆଖି ଆଗରେ ମେଲି ବସିଥିଲେ । ତାଙ୍କ ପାଖରେ ଆଉ ଖଣ୍ଡେ ଚଉକି ଉପରେ ଜଣେ ବର୍ଷିୟସୀ ମହିଳା ବସି ନୀରବରେ ଉଲ୍ ବୁଣି ଯାଉଥିଲେ ।

ସୁଇଟ ନଂ ୩୭ର ଅଧିବାସୀ ସେମାନେ—ମିଷ୍ଟର ଓ ମିସେସ ଡବଲ୍ୟୁ. ଏ. ବେଲ୍‌...

ବର୍ତ୍ତମାନ'ସିଜନ୍' କେବେ ଠାରୁ ଗତ ହୋଇଥିଲେ ସୁଦ୍ଧା, ସେମାନେ ତଥାପି ହୋଟେଲ ଗୁଡ଼ିକ ଯାଇ ନାହାନ୍ତି; ରହି ଯାଇଛନ୍ତି ରଙ୍ଗୀନ୍ କାଗଜର ପତାକା ଆଉ ଫୁଲ ପରି !

ମଣ୍ଟୁ ଅର୍ଥହୀନ ଶୂନ୍ୟ ଦୃଷ୍ଟିରେ ସେମାନଙ୍କ ଆଡ଼େ ଚାହିଁ, ୧୨ ନମ୍ବର ରୁମ୍ ସାମନାରେ, ବାରଣ୍ଡା ରେଲିଂ ଉପରେ ଦେହ ଢାଳି ଠିଆ ହୋଇଥିଲା ।

ସମୁଦ୍ର ଆଜି ଅସ୍ୱାଭାବିକ ଭାବରେ ଅଶାନ୍ତ । ଫେନଚୂଡ଼ ଲହରୀ ସବୁ ହୋଟେଲ ବାରଣ୍ଡା ଆଡ଼େ ମାଡ଼ି ଆସିବା ପରି ଦେଖା ଯାଉଥିଲା ।

ମିଷ୍ଟର ଓ ମିସେସ୍ ବେଲ୍ସି ବସିଥିଲେ, ସମୁଦ୍ରକୁ ପିଠି କରି । ମିଷ୍ଟର ବେଲ୍ସିଙ୍କ ସାମ୍ନାରେ, ଓ୍ୱନଦନ ତଳର ପୁରୁଣା "ଷ୍ଟେଟସ୍ମାନ", ମଫସଲ-ଡାକ-ସଂସ୍କରଣ···ଆଉ ମିସେସ୍ ବେଲ୍ସିଙ୍କ ଆଖି ସାମ୍ନାରେ ଉଲ୍ ପିଣ୍ଡୁଳା ! ଉପରେ ଗୋଟିଏ ଗଲ୍ ପକ୍ଷୀ ଉଡ଼ି ଉଡ଼ି, ସବୁ ପୁରୁଣା ଖବରକାଗଜ ଆଉ ଉଲ୍ ପେଣ୍ଡୁଳା ଫିଙ୍ଗି, ଅଶାନ୍ତ ଲହରୀ ପରି ଉଦ୍ବେଳ ହେବା ପାଇଁ ସେମାନଙ୍କୁ ଯେପରି ବୃଥାରେ ଡାକି ଡାକି ଯାଉଥିଲା !

ମାତ୍ର ମିଷ୍ଟର ଓ ମିସେସ୍ ବେଲ୍ସି ପିଠି କରି ବସିଥିଲେ, ସମୁଦ୍ର, ଆକାଶ, ବେଳାଭୂମି ଆଉ ଗଲ୍ ପକ୍ଷୀ ଆଡ଼େ ।

ମଣ୍ଟୁ ଲକ୍ଷ୍ୟହୀନ ପାଦରେ ହୋଟେଲ୍ର ରିସେପ୍ସନ-କାଉଣ୍ଟର ପର୍ଯ୍ୟନ୍ତ ଆସିଲା । ରିସେପ୍ସନିଷ୍ଟ କାଉଣ୍ଟର ପାଖରେ ଖଣ୍ଡେ ପୁରୁଣା 'ଲାଇଫ୍' ମାଗାଜିନ୍ ଖୋଲି ବସିଥିଲା । ସେ ମଧ୍ୟ ଦେଖୁଥିଲା ସମ୍ପୂର୍ଣ୍ଣ ନିଶ୍ଚଳ ଓ ନିର୍ବେଦଗ୍ରସ୍ତ, ପ୍ଲାଣ୍ଟ···ଖଣ୍ଡେ 'ଷ୍ଟିଲ୍-ଲାଇଫ୍'ର ଛବି ପରି ! ଡେସ୍କ୍ ଉପରେ ଟେଲିଫୋନ୍ଟା ପଡ଼ିଥିଲା, ଏକ ଭଗ୍ନ-ସ୍ପନ୍ଦ ହୃଦୟ ପରି···ତାର ସବୁ ଆକୁଳତାରେ ଯେପରି ହଠାତ୍ ଗୋଟାଏ ପୂର୍ଣ୍ଣଚ୍ଛେଦ ପଡ଼ି ଯାଇଥିଲା ।

ଗ୍ୟେଷ୍ଟ-ବୁକ୍‌ରେ, ପିତଳ-ବନ୍ଧା ଅଣ୍ଡା 'ନେମ୍‌ପ୍ଲେଟ୍'ବ୍ରାକେଟ୍ ସବୁ ଖାଲି ।

'ସିଜନ୍ ଆରମ୍ଭ ହୋଇନାହିଁ ।'

ଏକ ଅକଳନ, ନିଷ୍ପ୍ରାଣ ଶୂନ୍ୟତା, ଯେପରି ଶୋଡା ଶୋଡା ଆଖି ମେଲି, ସେହି ଶୂନ୍ୟବନ୍ଧମା ଗୁଡ଼ିକରେ ଗୁହିଁ ରହିଥିଲି । କେବଳ ୩୭ ନମ୍ବର ଚନ୍ଦ୍ରନ ବନ୍ଧମାରେ ଖଣ୍ଡେ କାର୍ଡରେ ଲେଖା ଥିଲା, ମିଷ୍ଟର ଆଣ୍ଡ ମିସେସ୍ ଡବ୍ଲ୍ୟୁ. ଏ. ବେଲ୍ମି ।

୧୨ ନମ୍ବର ଚନ୍ଦ୍ରନ ବନ୍ଧମାରେ ମଧ୍ୟ, ମଣ୍ଟୁର ଭିଜିଟିଙ୍ଗ୍ କାର୍ଡ ଖଣ୍ଡେ······

"ଏମ୍. ମହାପାତ୍ର

ସେଲସ୍ ରିପ୍ରେଜେଣ୍ଟେଟିଭ୍

ହାର୍ଡିଂଜ୍ ଆଣ୍ଡ କକ୍‌ବର୍ଣ୍ଣ୍, ହାର୍ଡଓ୍ବେର୍ ଆଣ୍ଡ ଷ୍ଟିଲ୍ ମାନୁଫାକ୍‌ଚରର୍ସ" ଇତ୍ୟାଦି ।

ରିସେପ୍‌ସନିଷ୍ଟ "ଲାଇଫ୍" ମାଗାଜିନ୍ ଉପରୁ ମୁହଁ ଉଠାଇ ସମ୍ଭାଷଣ ଜଣାଇଲା···"ଗୁଡ୍ ଆଫଟରନୁନ୍ ସାର୍ ।"

ମଣ୍ଟୁ କହିଲା···"ନମସ୍କାର"···

ରିସେପ୍‌ସନିଷ୍ଟ ପୁଣି "ଲାଇଫ୍" ମାଗାଜିନ୍ ଉପରେ ଆଖି ନୁଆଁଇଲା ।

କାନ୍ଥ ଘଣ୍ଟାରେ ବାଜିଲା ଗୁରିଟା···

ରିସେପ୍‌ସନିଷ୍ଟ ଘଣ୍ଟା ଶବ୍ଦ ଶୁଣି ଈଷତ୍ ଚଞ୍ଚଳ ହୋଇ ଉଠିଲା । ତା'ପରେ ବାହାର ପୋର୍ଟିକୋ ପାଖକୁ ଆସି ଡ୍ରାଇଭର ଉଦ୍ଦେଶ୍ୟରେ ଡାକିଲା··

"ଡ୍ରାଇଭର ! ଡ୍ରାଇଭର !"

ପୋର୍ଟିକୋରେ ହୋଟେଲର "ଷ୍ଟେସନ ଓ୍ବାଗନ" ଭିତରେ ଡ୍ରାଇଭର, ଷ୍ଟିଅରିଂ ଉପରେ ମୁହଁ ମାଡ଼ି ନଘୋଡ଼ ନିଦରେ ଶୋଇ ପଡ଼ିଥିଲା ।

ଶ୍ରେସେପ୍‌ସନ୍‌ଷ୍ଟ୍‌ର ଡାକରେ ଆଖି ମଳି ମଳି, ଅପ୍ରସନ୍ନ ଦୃଷ୍ଟିରେ ସେ ଗୃହିଁଲା—ସେଠାରୁ ଦୁଇଟି ପାମ୍‌ଗଛ ମଝିରେ ଦେଖା ଯାଉଥିବା, ଚେନାଏ ନେଳୀ ସମୁଦ୍ର ଆଉ ଆକାଶ ଆଡ଼େ !

ଶ୍ରେସେପ୍‌ସନ୍‌ଷ୍ଟ୍‌ ଖଣ୍ଡିଆ ଖଣ୍ଡିଆ ହିନ୍ଦୀରେ ଡ୍ରାଇଭରକୁ ନିର୍ଦ୍ଦେଶ ଦେଇ କହିଲା···"ସେଭେନ୍ ଅପ୍‌ରେ ଗେଷ୍ଟ୍‌ ଆସୁଛନ୍ତି, ଗାଡ଼ି ଯିବ ଷ୍ଟେସନ···ସେଭେନ୍ ଅପ୍ ପହଞ୍ଚୁଛି ସଓ୍ୱା ପାଞ୍ଚ୍‌ରେ, ଗ୍ରାଇଟ୍ ଟାଇମ୍ !"

ଶ୍ରେସେପ୍‌ସନ୍‌ଷ୍ଟ୍‌ ପୁଣି ଫେରି ଆସିଲା କାଉଣ୍ଟର୍‌ରେ ସେହି ଖୋଲା ମାଗାଜିନ୍ ପାଖକୁ । ଡ୍ରାଇଭର ହାଇ ମାରି ଗାଡ଼ି କାଢ଼ି ନେଲା ପୋର୍ଟିକୋ ବାହାରକୁ ।

ଲହଡ଼ିର ଫେନଚୂଡ଼ା ଉପରେ, ଗଲ୍ ପକ୍ଷୀ ଗୁଡ଼ାଙ୍କର ସାଦା ଡେଣାରେ ବୋଳି ହୋଇ ଆସୁଥିଲା, ଫିକା ଅମ୍ବରର ରଙ୍ଗ··· ।

ଶ୍ରେସେପ୍‌ସନ୍ କାଉଣ୍ଟର୍‌ର ଗୋଟିଏ ସୋ' କେସ୍‌ରେ, ସଜ୍ଜିତ ରହିଥିବା, ଗୁଡ଼ିଏ ରଙ୍ଗୀନ୍ ଶାମୁକା ଆଉ ଶଙ୍ଖ, ଲକ୍ଷ୍ୟହୀନ ଭାବରେ ମଣ୍ଟୁ ସମ୍ଭବତଃ ଶତବାର ପାଇଁ ଦେଖୁଥିଲା, ଆଉ ସ୍ୱସ୍ତିର ଦୀର୍ଘଶ୍ୱାସ ପକାଇ ମନେମନେ ଭାବୁଥିଲା, ଏଥର କେଜାଣି ଏ ନିଃସଙ୍ଗତାରୁ ମୁକ୍ତି ମିଳିବ । ମାତ୍ର ସେଭେନ୍ ଡାଉନ୍‌ରେ ଆସୁଥିବା ଏହି ଆଗନ୍ତୁକ, ଯଦି ବେଲ୍ଲି ଦମ୍ପତିଙ୍କ ପରି ହୋଇଥାନ୍ତି, ଯେଉଁମାନେ ବସନ୍ତ ସମୁଦ୍ର, ଆକାଶ ଆଉ ଗଲ୍ ପକ୍ଷୀ ମାନଙ୍କୁ ପିଠି କରି, ଆଖି ଆଗରେ ପୁରୁଣା ଖବର-କାଗଜ ଆଉ ଉଲ ପିଣ୍ଡୁଳା ମେଲି !

ପ୍ରଥମ କେତେଦିନର ଭଲଲାଗିବା କଟିଯିବା ପରେ, ଅପନ୍ତରା ସମୁଦ୍ର କୂଳର ବାଲିବନ୍ତ, ଝାଉଁବଣ ଆଉ କିଆଜଙ୍ଗଲଘେରା ଏହି ପରିତ୍ୟକ୍ତ ହୋଟେଲ, ମଣ୍ଟୁ ପକ୍ଷରେ କ୍ରମେ ଦୁର୍ବିସହ ହୋଇ ଉଠୁଥିଲା ।

ହାତରେ ତିନିମାସ ଛୁଟି, ପୂରା ବେତନରେ···ସମସ୍ତ କମ୍ପା ଅର୍ଥର ଅଭାବ ନାହିଁ, ତଥାପି ସବୁ ଖାଲିଖାଲି, ସବୁ ନୂତନତ୍ୱ ଓ ରୋମାଞ୍ଚହୀନ, ପୁରୁଣା ମାଗାଜିନ୍‌ର କାନମୋଡ଼ା ପୃଷ୍ଠା ପରି । ମଣ୍ଟୁ ଅଣନିଶ୍ୱାସୀ ହୋଇ

ଏଠାରୁ ପଳାଇ ଯିବା ପାଇଁ, ଥରେ ଦୁଇଥର ବିଛଣା, ସୁଟକେସ୍ ମଧ୍ୟ ବାନ୍ଧି ସାରିଥିଲି ; କିନ୍ତୁ ଏଠି ଯେଉଁ ପରିତ୍ୟକ୍ତ ନିଃସଙ୍ଗତା, ଅନ୍ୟଠି କୁତ୍ସିତ ଜନାକୀର୍ଣ୍ଣତା ! ସବୁଠି କିନ୍ତୁ ଅବସର-ଦିନର ମୁହୂର୍ତ୍ତ ଗୁଡ଼ିକ, ନିତାନ୍ତ ନିଃସଙ୍ଗ, ଅନ୍ତରଙ୍ଗ-ବର୍ଜିତ ଓ ଶୂନ୍ୟତାରେ ଭରା !

ମଣ୍ଟୁ ଭାବୁଥିଲା, ସେଭେନ୍-ଅପ୍‌ରେ ଆସୁଥିବା ଆଗନ୍ତୁକ ବା ଆଗନ୍ତୁକ ମାନଙ୍କ ନାମ ଓ ବୃତ୍ତାନ୍ତ, ରିସେପ୍‌ସନିଷ୍ଟ୍ ଠାରୁ ପଚାରି ବୁଝିବା ପାଇଁ । ମାତ୍ର ତାହା କେଜାଣି, ସୌଜନ୍ୟବିରୁଦ୍ଧ ହେବା ଆଶଙ୍କାରେ ମଣ୍ଟୁ ସେସବୁ ପଚାରି ନଥିଲା ।

ଅପରାହ୍ଣର ସୂର୍ଯ୍ୟ ପଶ୍ଚିମ-ଦିଗନ୍ତ ଉପରକୁ ଚାଲି ଆସିଥିଲା । ଅଦୂରରେ ଝାଉଁଜଙ୍ଗଲଟା, ଦିନର ଆଲୋକରେ ଯାହା ଦେଖା ଯାଉଥିଲା, ରକ୍ତ-ହୃଦୟ ପରି, ଏବେ ପୁଞ୍ଜୀଭୂତ-ବେଦନାର ଗୋଧୂଳିରେ ତାହା ରହସ୍ୟମୟ ହୋଇ ଉଠିଥିଲା । ମଣ୍ଟୁ ସେହି ଝାଉଁବଣ ଆଡ଼େ ବୁଲି ବାହାରି ଗଲା, ଅନ୍ୟଦିନମାନଙ୍କ ପରି !

ହୋଟେଲ ବାହାରେ ନୋଳିଆମାନଙ୍କର ମାଛଧରା ଡଙ୍ଗା ସବୁ ବାଲିରେ ମୁହଁ ମାଡ଼ି ପଡ଼ିଥିଲା । ସେହିପରି ଗୋଟିଏ ଉବୁଡ଼ା ଡଙ୍ଗା ଉପରେ; ମିଷ୍ଟର ବେଲ୍ଲୀ ସୂର୍ଯ୍ୟାସ୍ତକୁ ପିଠି କରି ବସି, ପାଇପ୍ ଟାଣୁଥିଲେ । ମିସେସ୍ ବେଲ୍ଲୀ, ଲାଲ ରଙ୍ଗର ଖଣ୍ଡେ ଗାଉନ ପିନ୍ଧି, ସମୁଦ୍ର କୂଳରୁ ରଙ୍ଗୀନ୍ ଶାମୁକା ସବୁ ଗୋଟେଇଲାବେଳେ, ବୟସରେ ବହୁ ବର୍ଷ ପଛେଇ ଯିବା ପରି ଦିଶୁଥିଲେ ।

ଗତ କେତେଦିନ ଧରି, ମିଷ୍ଟର ବେଲ୍ଲୀ ଠିକ୍ ଏହି ସ୍ଥାନରେ ଏହିପରି ବସିବା ଓ ମିସେସ୍ ବେଲ୍ଲୀ ସମୁଦ୍ର ବାଲିରେ ଧାଇଁ ଧାଇଁ ରଙ୍ଗୀନ୍ ଶାମୁକା ଗୋଟେଇବା, ମଣ୍ଟୁ ଲକ୍ଷ୍ୟ କରି ଆସିଛି । ଆଉ ଅଳ୍ପ ସମୟ ପରେ, ମିସେସ୍ ବେଲ୍ଲୀ ଚପଳା ବାଳିକା ପରି, ରଙ୍ଗୀନ୍ ଶାମୁକାର ସଞ୍ଚୟ ମିଷ୍ଟର ବେଲ୍ଲୀଙ୍କ ସାମ୍ନାରେ ଢାଳି ଦେଇ, କ୍ଲାନ୍ତିରେ ତାଙ୍କ ପାଖରେ ଲୋଟି ପଡ଼ିବେ । ମିଷ୍ଟର ବେଲ୍ଲୀ ଶାମୁକା ସବୁ ଖାକି ହାଫ୍‌ପ୍ୟାଣ୍ଟ ପକେଟ୍‌ରେ ପୂରାଇ, ମିସେସ୍ ବେଲ୍ଲୀଙ୍କୁ ଆଲିଙ୍ଗନରେ ଧରିବା ପରି

ଉଠାଇ, ତାଙ୍କ ଅଶ୍ୱ ଗୃହପଟେ ଗୋଟିଏ ଶିଥିଳ ବାହୁ ବେଢ଼ାଇ, ପୁଣି ଫେରି ଆସିବେ ହୋଟେଲ ଆଡ଼େ !

ଆଜ କିନ୍ତୁ ତାହା ଲକ୍ଷ୍ୟ କରି ଦେଖିବା ପାଇଁ, ମଣ୍ଟୁର ମାନସିକ ପ୍ରବୃତ୍ତି କମ୍ବା ଧୈର୍ଯ୍ୟ ନ ଥିଲା । ଏକ ଅହେତୁକ ବହେଷରେ, ମଣ୍ଟୁର ମନ ଏବ୍ବ ବେଲ୍-ଦମ୍ପତି ପ୍ରତି କେଜାଣି କାହିଁକି ହଠାତ୍ ଜର୍ଜରିତ ହୋଇ ପଡ଼ିଥିଲା ।

ଅନ୍ୟ ଦିନ ମାନଙ୍କରେ ମଣ୍ଟୁ ସେମାନଙ୍କ ଠାରୁ ଅଳ୍ପ ଦୂରରେ ବସି, ସେମାନଙ୍କ କଥାବାର୍ତ୍ତାରୁ ପଦେ ଅଧେ ଶୁଣିବା ପାଇଁ ଚେଷ୍ଟା କରେ । ମିଷ୍ଟର ବେଲ୍, ମିସେସ୍ ବେଲ୍ଙ୍କୁ ତଥାପି ଡାକନ୍ତି "ଡାର୍ଲିଂ"; ମିସେସ୍ ବେଲ୍ ସମ୍ବୋଧନ କରନ୍ତି "ଡିଇଲ୍", "ୟୁ ନଟୀ ବୟ" ପ୍ରଭୃତି ।

ଆଜ କିନ୍ତୁ ସେ ଗୁପ୍ତଚର ବୃତ୍ତି ପାଇଁ ମଣ୍ଟୁର କେଜାଣି କାହିଁକି ପ୍ରବୃତ୍ତି ନଥିଲା ! କମ୍ବା ଷାଠିଏରୁ ଉର୍ଦ୍ଧ୍ୱ ବୟସରେ, ଯେମାନେ ନିର୍ଲଜ ଭାବରେ, ତଥାପି କାହିଁକି ଓ କପରି ସ୍ୱପ୍ନସଂପୃକ୍ତ ଅଛନ୍ତି, ତାହା ବଶ୍ଳେଷଣ କରିବା ପାଇଁ ମଧ୍ୟ ମଣ୍ଟୁର ଏକ ଇଚ୍ଛା ନଥିଲା ।

ଅଶାନ୍ତ ଲହରୀ ପରି ମଣ୍ଟୁର । ହୃଦୟ ଏକ ଅନିର୍ଦ୍ଦିଷ୍ଟ ଉଦ୍‌ବେଳନରେ ଉଦ୍‌ବେଳିତ ହୋଇ ଉଠିଥିଲା ।

ଗୋଧୂଳିର ବିବର୍ଣ୍ଣ ଆଲୋକରେ ନିର୍ଜନ ପରିତ୍ୟକ୍ତ ବେଳାଭୂମି, ସୃଷ୍ଟିର ଶେଷସୀମାନ୍ତ ପରି ଦେଖା ଯାଉଥିଲା । ନୋଳିଆ ପିଲାଟିଏ ଫେଣମିଶା ଭିଜା ବାଲି ଉପରେ ଦଉଡ଼ି ଦଉଡ଼ି ଗୃଳିଥିଲା ଅଦୂରର ନୋଳିଆ ପଲ୍ଲୀ ଆଡ଼େ ।

ସୂର୍ଯ୍ୟାସ୍ତ ହୋଇ ସାରିଥିଲା ।

ପୋର୍ଟିକୋକୁ ଷ୍ଟେସନ ଓ୍ୱାଗନଟା ଫେରି ଆସିଥିଲା । କେତେଟା ବ୍ୟାଗ୍ ଓ ସୁଟ୍‌କେଶ୍, ତଥାପି ପୋର୍ଟିକୋ ସାମ୍ନା ବାରଣ୍ଡାରେ ରହିଥିଲା, ଆଗନ୍ତୁକମାନଙ୍କର ନିର୍ଦ୍ଦିଷ୍ଟ କୋଠରୀକୁ ସ୍ଥାନାନ୍ତରିତ ହେବା ପାଇଁ ।

କାଉଣ୍ଟର ଉପରେ, ହାମୁଡ଼େଇ ଟିଆ ହୋଇଥିବା ଜଣେ ପ୍ରୌଢ଼ ଭଦ୍ରବ୍ୟକ୍ତିଙ୍କର ସ୍ଥୂଳ ପଶ୍ଚାତ୍‌ଦେଶଟା ଅନାବଶ୍ୟକ ମାଂସଳତାରେ ସ୍ଫୀତ ହୋଇ ଅଶ୍ଳୀଳ ଦିଶୁଥିଲା ।

ମଣ୍ଟୁ କାଉଣ୍ଟର୍‌ରୁ ଚାବି ନେଲାବେଳେ ଲକ୍ଷ୍ୟ କରି ଦେଖିଲା, ଆଗନ୍ତୁକଙ୍କର ବୟସ ପଚାଶ ଟପିଥିବା ନିଶ୍ଚିତ; ମାତ୍ର ବେଶ ପରିପାଟୀରେ ତାରୁଣ୍ୟର ଘୋଷଣା । ଟେରେଲିନ୍‌ର ହାଓ୍ୱାଇନ୍ ପକେଟରୁ ଖଣ୍ଡେ ଲାଲ ରୁମାଲ ଅନ୍ତରଂଜିତ ଭାବରେ ପଦାକୁ ବାହାରି ପଡ଼ିଥିଲା ।

ଭିଜିଟରସ୍ ରେଜିଷ୍ଟର୍‌ରେ ନିଜ ନାମ ଧାମ ଇତ୍ୟାଦି ଲେଖିବା-ବେଳେ, ସେ ଯେପରି ଇଚ୍ଛାକୃତ ଭାବରେ ବିଳମ୍ବ କରୁଥିଲେ······ ମଣ୍ଟୁର ସେଇଆ ଅନ୍ତତଃ ମନେ ହେଉଥିଲା ।

ଆଗନ୍ତୁକ ପଚାରିଲେ···"କିନ୍ତୁ ଯେଉଁ ଡବଲ୍ ସୁଇଟ୍‌ଟା ଦେଉଛନ୍ତି, ତାର ବାଥ୍‌ରୁମ୍‌ରେ ସାଓ୍ୱାର୍ ବା ଟାପ୍ ଲିକ୍ କରେ ନାହିଁ ତ !"

ଆଗନ୍ତୁକ ଭିଜିଟରସ୍-ରେଜିଷ୍ଟାର୍‌ରେ ଶୂନ୍ୟସ୍ତମ୍ଭ ଗୁଡ଼ିକ ଆସ୍ତେ ପୂରାଉଥିଲେ, କ'ଣ ଭାବୁଥିଲେ କେଜାଣି ?

ହୋଟେଲ ଲଂଜ୍‌ରେ ଯେଉଁ ଜ୍ୟୁକ୍-ବକ୍ସଟା ଗୋଟିଏ ପ୍ରତ୍ନତାତ୍ତ୍ୱିକ ବସ୍ତୁ ପରି ଏତେଦିନ ନୀରବରେ ପଡ଼ିଥିଲା; ଏବେ ସେଥିରେ ଗ୍ରାମୋଫୋନ୍ ରେକର୍ଡ଼ ଏ ଅବେଳାରେ ବଜାଇଲା ପୁଣି କିଏ ?

ରିସେପ୍‌ସନିଷ୍ଟ ନମ୍ରକଣ୍ଠରେ ଉତ୍ତର ଦେଲା···"ତା ହେଲେ ଆପଣଙ୍କୁ ସୁଇଟ୍ ନମ୍ବର ଆଠ ଦେଇପାରେ !"

ଆଗନ୍ତୁକ ତଥାପି ଯେପରି କୌଣସି ନିଷ୍ପତ୍ତିରେ ପହଞ୍ଚି ପାରି ନଥିଲେ । ରେଜିଷ୍ଟାର ଦେହରେ କଲମ ମୂନ ଛୁଇଁ ସେ ପୁଣି ପଚାରିଲେ ··"ସେଠାରୁ କିନ୍ତୁ ସମୁଦ୍ର ଦେଖାଯାଏ ତ ?"

ସମୁଦ୍ର କୂଳରେ ତ ହୋଟେଲ ! ସମୁଦ୍ର ପୁଣି ଦେଖାଯିବ କ'ଣ ?

...“ଯେକୌଣସି ରୁମ୍ ହେଲେ ମୋର ଅବଶ୍ୟ ଚଳିଯିବ; କିନ୍ତୁ ‘ମାଡ଼ାମ୍’ଙ୍କର ଦରକାର ଏପରି ରୁମ୍, ଯାହାର ଝରକା ବାଟେ ସମୁଦ୍ର ଆଖିରେ ପଡ଼ିବା ଆବଶ୍ୟକ । ହୁଃ...”

ରିସେପ୍‌ସନିଷ୍ଟ୍ ଈଷତ୍ ଅପ୍ରସନ୍ନ କଣ୍ଠରେ ଉତ୍ତର ଦେଲା ..
“ତା’ ହେଲେ ଆପଣ ସେଇ ସୁଇଟ୍ ନମ୍ବର ସତାଇଶ ନିଅନ୍ତୁ ।”

ଟେଲିଫୋନ୍‌ଟା ହଠାତ୍ ବାଜି ଉଠିଲା । ରିସେପ୍‌ସନିଷ୍ଟ୍ ରିସିଭରଟା ଉଠାଇ ଧରିଲାବେଳେ ଆଗନ୍ତୁକ କହିଲେ...“ତା ଅପେକ୍ଷା ବରଂ ଦୁଇଟା ଭଲ ସିଙ୍ଗଲ ରୁମ୍ ପାଖାପାଖି ଦିଅ ! ଯାହାର ଝରକା ବାଟେ ସମୁଦ୍ର ଦେଖାଯାଉଥିବ ଅନ୍ତତଃ ।”

ରିସେପ୍‌ସନିଷ୍ଟ୍ ଆଗନ୍ତୁକଙ୍କ ଆଡ଼େ ଇଙ୍ଗିତପୂର୍ଣ୍ଣ ଦୃଷ୍ଟିରେ ଚାହିଁ, “ହଲୋ, ହଲୋ” ଚିତ୍କାର କରୁଥିଲା...କେଉଁଠାରୁ ଟ୍ରଙ୍କ୍‌କଲ...ରିସେପ୍‌ସନିଷ୍ଟ୍ କହିଲା...“ମିସେସ୍ ରାଜନ୍ ! ନା ସେପରି କେହି ଏଠି ନାହାନ୍ତି !”

ଏହି ସମୟରେ ହଠାତ୍ ଝଡ଼ ପରି ଲଂଜ୍ ଆଡ଼ୁ ଜଣେ ମହିଳା କାଉଣ୍ଟର ପାଖକୁ ଧାଇଁ ଆସି କହିଲେ...“ଦିଅ, ଦିଅ, ସେ ଟ୍ରଙ୍କ୍‌କଲ୍‌ଟା ମୋ ପାଇଁ ।”

ଆଗନ୍ତୁକଙ୍କ ମୁହଁର ରେଖାସବୁ ହଠାତ୍ ଏକ ଅପ୍ରସନ୍ନତାରେ କୁଞ୍ଚିତ ହୋଇଗଲା । ସେ ମିସେସ୍ ରାଜନ୍‌ଙ୍କ ଆଡ଼େ ଯେଉଁ ଦୃଷ୍ଟିରେ ଚାହିଁଲେ, ସେଥିରେ ଫୁଟି ଉଠିଲା ଏକ ଅହେତୁକ ଈର୍ଷ୍ୟା ଓ ବିଦ୍ୱେଷ !

ମଣ୍ଟୁ ଗୁଡ ନେଇଁ ନେଇଁ, କାଉଣ୍ଟର୍ ପାଖରେ ଅଟକି ରହିଗଲା !

ମିସେସ୍ ରାଜନ୍ ହସିହସି ଟେଲିଫୋନ୍‌ରେ କହୁଥିଲେ ..
“ଏବେ ଏଇ ତ ଦଶ ମିନିଟ ହୋଇ ନାହିଁ.. ମନ୍ଦ ଲୁହେଁ ..ତୁମେ ଆସିବ ? ...ଆସି ପାର ! ...ମୁଁ କ’ଣ କରୁଥିଲି ? ଜ୍ୟୁକ୍-ବକ୍ସରେ ରେକର୍ଡ଼ ବଜାଉଥିଲି...ଏଇଠି ଠିଆ ହୋଇଛନ୍ତି, ଦେବି ?”

ଆଗନ୍ତୁକ ଷ୍ଟବ୍ଧ, ଆହତ କଣ୍ଠରେ ପଚ୍ଚାରିଲେ···"କିଏ ସେ ?"

ମିସେସ୍ ରାଜନ୍ ମାଉଥ୍‌ପିସ୍ ଉପରେ ହାତ ଚାପିରେ ଘୋଡ଼ା ଦେବା ପରି ଡାହାଣ ହାତର ପାପୁଲି ରଖି କହିଲେ, "ଡକ୍‌ଟର ସୁଧାଂଶୁ !"···

ଆଗନ୍ତୁକ ଏକ ପ୍ରଚଣ୍ଡ ଘୃଣା ଓ ତାଚ୍ଛଲ୍ୟରେ ମୁହଁ ଫେରାଇ ନେଇ କହିଲେ···"ଆମେ କିନ୍ତୁ ଏ ହୋଟେଲରେ ଠିକ୍ ଏହି ସମୟରେ ପହଞ୍ଚି ପାରିଥିବୁ ବୋଲି ସୁଧାଂଶୁ ଜାଣିଲା କିପରି ? ତୁମେ ବୋଧହୁଏ ଆସିବା ପୂର୍ବରୁ ତାକୁ କହିଥିବ ନିଶ୍ଚୟ ।"

ଏହାପରେ ଟେଲିଫୋନରେ ସେପଟରୁ ଡକ୍ଟର ସୁଧାଂଶୁଙ୍କ କଥାସବୁ ଆହୁରି ଅନର୍ଗଳ ଓ ଉଚ୍ଛ୍ୱସିତ ହୋଇ ଉଠୁଥିଲା । କିନ୍ତୁ ମିସେସ୍ ରାଜନ୍ ଅପ୍ରତିଭ ଭାବରେ ଟେଲିଫୋନଟା ରଖିଦେଇ କହିଲେ··· "ଗୁଡ୍ ନାଇଟ୍ !"

ଆଗନ୍ତୁକ ମିସେସ ରାଜନ୍‌ଙ୍କ ଆଡ଼େ ଚାହିଁ ପଚାରିଲେ···"ମୁଁ ଭାବୁଛି ଗୋଟାଏ ଡବଲ ସୁଇଟ୍ ବୋଧହୁଏ ଭଲ ହେବ; କିନ୍ତୁ ସୁଧାଂଶୁ ଯଦି ପୁଣି ଆସେ !"

ମିସେସ୍ ରାଜନ୍ ରଜନୀଗନ୍ଧାର ସ୍ତବକ ପରି ଦୋଳି ଦୋଳି କହିଲେ···"ଧ୍ୟାତ୍ ମିଲ୍ସ; ( କି ଜିବୋଧ ! ) ସିଙ୍ଗଲ ସୁଇଟ୍ ନାହିଁ ନା କଣ ? ତମେ ପୁଣି ଶୋଇବା ବେଳେ ଯେମିତି ଘୁଂଘୁଡ଼ି ମାର, ସମୁଦ୍ରର ଗର୍ଜନକୁ ସୁଦ୍ଧା ତାହା ବଳିଯିବ !"

ଆଗନ୍ତୁକ ହଠାତ୍ ଶେଷ ସିଦ୍ଧାନ୍ତରେ ପହଞ୍ଚିବା ପରି କଣ୍ଠରେ, ରିସେପ୍‌ସନିଷ୍ଟ୍‌କୁ କହିଲେ, "ତା' ହେଲେ ଦୁଇଟା ସିଙ୍ଗଲ ସୁଇଟ୍‌ସ, ପାଖାପାଖି, ମୁଁ ତ ସେଇଆ ପ୍ରଥମେ କହୁଥିଲି !"

ରିସେପ୍‌ସନିଷ୍ଟ ତାତ୍ପର୍ଯ୍ୟମୂର୍ଣ୍ଣ ଦୃଷ୍ଟିରେ ଥରେ ମିସେସ୍ ରାଜନ୍ ଓ ତା'ପରେ ଆଗନ୍ତୁକଙ୍କ ଆଡ଼େ ଚାହିଁ, ରେଜିଷ୍ଟରଟା ଦେଖାଇ ଦେଇ କହିଲା···"ସୁଇଟ୍‌ସ ନମ୍ବର ଷୋଳ, ସତର···ଏଠି ଦସ୍ତଖତ କରନ୍ତୁ !"

ଆଗନ୍ତୁକ ନିଜ ନାମ ଓ ଠିକଣା ପ୍ରଭୃତି ଲେଖିଲାବେଳେ, ମଣ୍ଟୁ ଏକ ବ୍ୟାଧିତ କୌତୂହଳରେ ତାହା ଉଙ୍କିମାରି ଦୃଷ୍ଟି ଲକ୍ଷ୍ୟ କରୁଥିଲା। ଆଗନ୍ତୁକ ନିଜ ନାମ ଓ ଠିକଣା ଇତ୍ୟାଦି ଲେଖିଥିଲେ ··

"ଏନ୍. ମାଥୁର, ବମ୍ବେ।"

ମିସେସ୍ ରାଜନ୍ ଭ୍ୟାନିଟିବ୍ୟାଗରୁ କମ୍ପାକ୍ଟ ଖୋଲି ହଠାତ୍ ମେକ୍ଅପ୍‌ରେ ମନୋନିବେଶ କରିଥିଲେ। ମିଷ୍ଟର ମାଥୁର୍ ତାଙ୍କ ଆଡ଼େ ଦୃଷ୍ଟି କହିଲେ···

"ରୁମ୍ ନମ୍ବର ୧୮ଟା ତୁମର···ନାମ ଲେଖ ଏଇଠି !"

ମିସେସ୍ ରାଜନ୍ ଆଇନାରେ ପ୍ରସାଧନ ଲକ୍ଷ୍ୟ କରୁ କରୁ କହିଲେ··· "ତୁମେ ଲେଖି ଦିଅନା !"

ରିସେପ୍‌ସନିଷ୍ଟ କଣ୍ଠରେ ଅହେତୁକ ବିଦ୍ୱେଷର ତିକ୍ତତା ଫୁଟାଇ କହିଲା···"ବାଃ, ରହିବେ ଆପଣ, ଆଉ ନାମ ଲେଖିବେ ସେ ! ଏ ହୋଟେଲରେ ସେ ସବୁ ଚଳେ ନାହିଁ । ଆପଣଙ୍କ ନିଜ ହସ୍ତାକ୍ଷରରେ ପୂରା ଠିକଣା ସହିତ ନାମ ଲେଖିବା ପାଇଁ ପଡ଼ିବ।"

ମିସେସ୍ ରାଜନ ରିସେପ୍‌ସନିଷ୍ଟ ଆଡ଼େ ଚାହିଁ, ହଠାତ୍ ପୂର୍ବର ସବୁ ଲଘୁ ଚପଳତା ହରାଇ ଯେପରି ଆତଙ୍କିତ ହୋଇ ପଡ଼ିଲେ। ତା ପରେ ଅସହାୟ ଭାବରେ ସେ ନିଜର ନାମ ଓ ଠିକଣା ପ୍ରଭୃତି ଲେଖି ସେଠାରୁ ବାରଣ୍ଡାକୁ ପଳାଇ ଆସିଲେ···

ତାଙ୍କ ପଛରେ ଯେପରି ଭୂତ ଗୋଡ଼ାଉଥିଲା !

ମଣ୍ଟୁ ତାଙ୍କ ପଛେ ପଛେ ବାରଣ୍ଡାକୁ ଆସିଲାବେଳେ, ମିଷ୍ଟର୍ ଓ ମିସେସ୍ ବେଲ୍ସା ଡାଇନିଙ୍ଗ୍ ହଲ ଆଡ଼େ ଚାଲିଥିଲେ ଡିନର ପାଇଁ । ଉଭୟଙ୍କ ଦେହରେ ସ୍ୱତନ୍ତ୍ର ସାନ୍ଧ୍ୟ-ପରିଚ୍ଛଦ । ଯେପରି ସେମାନେ ଆମନ୍ତ୍ରିତ ହୋଇ ଚାଲିଛନ୍ତି, ସ୍ୱୟଂ ମହାରାଣୀଙ୍କ ଆୟୋଜିତ ଡିନର ପାର୍ଟିକୁ ! ସବୁ ଚପଳତା ଚଞ୍ଚଳତା ଅନିଶ୍ଚିତତା ମଧ୍ୟରେ ସେଇମାନେ ଏକମାତ୍ର ଯେପରି ନିଶ୍ଚିତ ଓ ଶାଶ୍ୱତ !

*  *  *  *

ଉଦାସୀ ବାତ୍ୟାର ପରି ଏକ ଅକାରଣ ଆବେଗରେ ପୂବେଇ ପବନ ହୋଟେଲର ଝରକାଗୁଡ଼ାକୁ କାନ୍ଥରେ ବାରମ୍ବାର ପିଟି ଯାଉଥିଲା । ସମୁଦ୍ରର ଲହରୀ ସବୁ ଅଶାନ୍ତ ଫେନଚୂଡ଼ ବାହୁ ତୋଳି ଆକାଶର ମେଘମାଳାକୁ ଛୁଇଁବା ପାଇଁ ହଠାତ୍ ଯେପରି ଆକୁଳ ହୋଇ ଉଠିଥିଲା ।

ସବୁଆଡ଼େ ଏକ ଅକଳନ୍ତ ନିଃସଙ୍ଗତା ପୁଣି ବ୍ୟାକୁଳତା ।

ବ୍ରେକ୍‌ଫାଷ୍ଟ୍ ପରେ ମଣ୍ଟୁ ଉଦ୍ଦେଶ୍ୟହୀନ ଭାବରେ ହୋଟେଲର ବାରଣ୍ଡାରେ ପିତଳ ପାତ୍ରମାନଙ୍କରେ ଥିବା କାକ୍ଟସ୍ ଗଛ ସବୁ ବୁଲି ବୁଲି ଦେଖୁଥିଲା । ଲନ୍‌ରେ ଗୋଟିଏ ପାମ୍‌ଗଛର ଛାଇ ତଳେ ଖଣ୍ଡେ କାଠ ବେଞ୍ଚ ଉପରେ ବସି, ମିଷ୍ଟର ବେଲ୍ଲା ଏକା ଏକା 'ଚେସ' ଖେଳୁଥିଲେ । ମିସେସ୍ ବେଲ୍ଲା ଖଣ୍ଡେ ବହି କୋଳରେ ପକାଇ ପଢ଼ୁ ପଢ଼ୁ, କେତେବେଳେ ଢୁଳାଇ ପଡୁଥିଲେ ।

ମିସେସ୍ ରାଜନ ବା ମିଷ୍ଟର ମାଥୁର୍ କାହାରି ଦେଖା ନଥିଲା । ଗତ ରାତିଠାରୁ ମିସେସ୍ ରାଜନ୍‌ଙ୍କର କଣ ହୋଇଛି କେଜାଣି, ସେ ଡାଇନିଂ ହଲକୁ କମ୍ବା ଡାକରେ ଆସିଥିବା ଚିଠି ସଂଗ୍ରହ ପାଇଁ ରିସେପସନ୍ କାଉଣ୍ଟରକୁ ସୁଦ୍ଧା ଆସି ନାହାନ୍ତି ।

ଲଂଚ୍‌ରେ "ଜୁ୍ୟକ୍ ବକସ"ଟା ପୁଣି ପ୍ରଖର ମୌନତା ମଧ୍ୟକୁ ଫେରି ଯାଇଥିଲା । ମଣ୍ଟୁ ସେହି ସ୍ଥାନମାନଙ୍କରେ ମିସେସ୍ ରାଜନଙ୍କୁ କେବଳ ଥରେ ଦେଖିବା ପାଇଁ ଅପେକ୍ଷା କରି ଅକାରଣରେ ବାରମ୍ବାର ରିସେପ୍‌ସନଷ୍ଟ ସଙ୍ଗରେ ଏଣୁ ତେଣୁ କଥାବାର୍ତ୍ତା ହୋଇଥିଲା ।

ମିସେସ୍ ରାଜନ୍ ଯେପରି ହୃଦୟ-ବିଦାରକ ଭାବରେ ଅବଶ୍ୟ ସୁନ୍ଦରୀ ନୁହନ୍ତି । ବୟସରେ ପ୍ରୌଢ଼ା ନ ହେଲେ ସୁଦ୍ଧା ଯୁବତୀ ମଧ୍ୟ ନୁହନ୍ତି । ତାଙ୍କର ସ୍ୱାମୀ ମୃତ କି ସେ ବିଚ୍ଛିନ୍ନ-ଭର୍ତ୍ତୃକା ପୁଣି କିଏ ଜାଣେ ? ମଣ୍ଟୁ

ଦୃଷ୍ଟିରେ ସେ ବସ୍ତୁର ଅତ୍ୟନ୍ତ ଗୌଣ ହୋଇ ପଡ଼ିଥିଲା । ତାଙ୍କ ଦେହେ-ସ୍ୱରେ ଏକ ରହସ୍ୟମୟ ଆକର୍ଷଣ ମଣ୍ଟୁର କେଉଁ ନିଭୃତତମ ମର୍ମସ୍ଥଳକୁ କପରି ସ୍ପର୍ଶ କରିଥିଲା, ପୁଣି କେଜାଣି ' ମଣ୍ଟୁ ଜାଣିଥିଲା, ମିସେସ ରାଜନ୍ ସ୍ୱୈରିଣୀ, ତା' ନହେଲେ ପୁରୁଷ ବନ୍ଧୁଙ୍କ ସହିତ ସେ ଗୋଟିଏ ନିର୍ଜନ ସମୁଦ୍ର-ନିବାସକୁ ଏପରି ଆସି ନ ଥାନ୍ତେ ! ସେଥିରେ ପୁଣି ଦୂର ସହରର ବନ୍ଧୁମାନଙ୍କ ପାଖରୁ, ତାଙ୍କ ପାଖକୁ ଘନ ଘନ ଟେଲିଫୋନ ।

ମିସେସ୍ ରାଜନ୍ ରଙ୍ଗୀନ ପ୍ରଜାପତି ପରି ଜୀବନର ଉଦ୍ୟାନରେ ଖିଆଲି ରୂପଲୁବ୍ଧମାନଙ୍କୁ ପ୍ରଲୁବ୍ଧ କରି ଉଡ଼ି ଉଡ଼ି ବୁଲୁଛନ୍ତି କେବଳ ! ସେ ହୋଇପାରନ୍ତି ପୁଣି ମହାନଗରୀର ସମ୍ଭ୍ରାନ୍ତ ମୁକ୍ତନାରୀ ; ଉତ୍ତେଜନା-ସର୍ବସ୍ୱ ସମାଜ ଓ ସଭ୍ୟତାର ତୃପ୍ତି-ଦାୟୀ !

ଲୁହା ଲକ୍‌କଡ଼ରେ ଆକଣ୍ଠ-ନିମଜ୍ଜିତ ମଣ୍ଟୁ ପରି ମଣିଷ ମାନଙ୍କର ହୃଦୟରେ କିନ୍ତୁ ଆତ୍ମନାଶୀ ପ୍ରେମର ସେ ଉଦ୍‌ବେଳନ କୌଣସି ଦିନ ନଥିଲା ବା ନାହିଁ । ତଥାପି ଶେଷ ବସନ୍ତରେ, କୋକିଳର କୁହୁଧ୍ୱନି ପରି, ମିସେସ୍ ରାଜନ୍ କପରି ରହସ୍ୟମୟ ଭାବରେ ନିର୍ପୀଡ଼ିତର ସୀମାନ୍ତରେ ମଣ୍ଟୁର ଅନ୍ତଃସ୍ଥଳକୁ ସେଦିନ ସନ୍ଧ୍ୟାରେ ଆଲୋଡ଼ିତ କରି ଯାଇଥିଲେ; ମଣ୍ଟୁ ବହୁ ଆତ୍ମବିଶ୍ଳେଷଣ ପରେ ସୁଦ୍ଧା ତାହା ସ୍ଥିର କରି ପାରୁ ନଥିଲା । ମୋଟେ ଦୁଇ ଦିନ ତଳେ କେତେଗୋଟି ଫକ୍ଷଭ୍ର ମୁହୂର୍ତ୍ତ, ତଥାପି ତାହା ମଣ୍ଟୁର ସମଗ୍ର ସତ୍ତାକୁ ଆଚ୍ଛନ୍ନ କରି ଦେଇଥିଲା !

ଏବେ ମଧ୍ୟ ମଣ୍ଟୁ ସେଇଆ ଭାବୁଥିଲା ; ଆଉ ମିସେସ ରାଜନ୍‌ଙ୍କ କୋଠରୀ ଆଡ଼େ ବାରମ୍ବାର ପ୍ରତୀକ୍ଷମାନ ଦୃଷ୍ଟିରେ ଚାହୁଁଥିଲା ।

ମିସେସ୍ ରାଜନ୍‌ଙ୍କର କ'ଣ ହେଲା କେଜାଣେ ?

ଦୁଇଦିନ ତଳେ ଗୋଟିଏ ନିତାନ୍ତ ଘଟଣାବିହୀନ ସନ୍ଧ୍ୟା··· ଅନ୍ୟଦିନମାନଙ୍କ ପରି ମିଷ୍ଟର ବେଲି ଗୋଟିଏ ଓଲଟା ଡଙ୍ଗା ଉପରେ ସୂର୍ଯ୍ୟାସ୍ତକୁ ପିଠି କରି ବସିଥିଲେ । ମିସେସ୍ ବେଲି ସମୁଦ୍ର କୂଳରେ ବୁଲି ରଙ୍ଗୀନ ଶାମୁକା ସବୁ ସାଉଣ୍ଟୁଥିଲେ । ଦୂରରୁ ସୂର୍ଯ୍ୟାସ୍ତର ଆଲୋକରେ ସେ ଦେଖାଯାଉଥିଲେ ଗୋଟିଏ ଚପଳଚ୍ଛନ୍ଦା ବାଳିକା ପରି !

ମଣ୍ଟୁ ଗୋଟିଏ ବାଲିକୁଦ ଉଢ଼ାଳରେ ବସି ଅଦୂରର ଝାଉଁବଣ ଆଡେ ଅନାଇଁ ବସିଥିଲା, ଶୂନ୍ୟ ଓ କ୍ଳାନ୍ତ ଦୃଷ୍ଟିରେ । ଏକ ଅବ୍ୟକ୍ତ ଆକୁଳତା ପ୍ରକାଶର ଭାଷା ନ ପାଇ ଝାଉଁ ବଣର ନେପଥ୍ୟରେ ଗୋଧୂଳିର ଆକାଶକୁ ବେଦନାରେ ଯେପରି ରକ୍ତିମ କରି ଦେଇଥିଲା, ମଣ୍ଟୁ ତାହାର କୌଣସି ମର୍ମ ଉଦ୍‌ଘାଟନ କରି ପାରୁ ନଥିଲା; କିନ୍ତୁ ତାହା ପାରିଲେ ଯେପରି ତାର ସବୁ ଆକୁଳତାର ତୃପ୍ତି ମିଳନ୍ତା ।

ମିଷ୍ଟର ମାଥୁର ଓ ମିସେସ୍ ରାଜନ୍ ହୋଟେଲ ଆଡ଼ୁ ଚାଲି ଚାଲି ଆସି ମଣ୍ଟୁଠାରୁ ଅଦୂରରେ ବାଲି ଉପରେ ବସି ପଡ଼ିଲେ । ମିସେସ୍ ରାଜନ୍ ପିନ୍ଧିଥିଲେ ସମୁଦ୍ର ରଙ୍ଗର ଖଣ୍ଡେ ନେଳୀ ଶାଢ଼ୀ ! ରଙ୍ଗୀନ ଫୁଲର ଗୋଟିଏ ସ୍ତବକ ପରି ସମୁଦ୍ରର ବାଉଳା ପବନରେ ସେ ଯେପରି ଦୋଳୁଥିଲେ; କିନ୍ତୁ ତାଙ୍କ ପାଖେ ପାଖେ ପୃଥୁଳକାୟ ମିଷ୍ଟର ମାଥୁର ଭୂଷା ବାଲିରେ ଚାଲି ଚାଲି ଅଣନିଶ୍ୱାସୀ ହୋଇପଡ଼ିଥିଲେ ।

ମିସେସ୍ ରାଜନ୍ ଭିଜା ବାଲି ଉପରେ ଦୁଇ ପାଦ ଏକ ସୁକୁମାର ଭଙ୍ଗୀରେ ବେଳାକୁଆଁ ଲହରୀର ଫେନରାଶି ଆଡ଼େ ଲମ୍ବାଇ ବସିପଡ଼ିଲେ ! ମିଷ୍ଟର ମାଥୁର ଅଗତ୍ୟା ସେଠାରେ ସେହିପରି ବସିପଡ଼ିବା ପାଇଁ ଯେପରି ବାଧ୍ୟ ହେଲେ ।

ସେମାନଙ୍କର ବିଶ୍ରମ୍ଭାଳାପ ଶୁଣିବା ପାଇଁ ଏକ ଅନୁଚିତ କୌତୁହଳରେ ବାଲିକୁଦ ଉଢ଼ାଳରେ ମଣ୍ଟୁ ଉତ୍‌କର୍ଣ୍ଣ ହୋଇ ଉଠିଲା ।

ମିଷ୍ଟର ମାଥୁର, ମିସେସ୍ ରାଜନଙ୍କର ହାତ, ଥାବା ପରି ଦିଶୁଥିବା ନିଜ ହାତ ପାପୁଲିରେ ଉଠାଇ ଧରି କହିଲେ···"ତୁମେ ଚମତ୍କାର ଦିଶୁଛ ଲିଲି !"

ମିସେସ୍ ରାଜନ୍‌ଙ୍କ ନାମ ତା ହେଲେ ଲିଲି ! ଲିଳା ହେବାରେ ଆପତ୍ତି ମଧ୍ୟ କଣ ?

ଲିଲି ବା ଲିଳା ନିରୁତ୍ତର !

ମିଷ୍ଟର ମାଥୁର କହିଲେ···"ଆଃ - କିଛି ବୁଝନା, ଏଠାକୁ ଆସିବା ବେଳକୁ ତମେ ହଠାତ୍ ଉଦାସ ହୋଇପଡ଼ୁଛ ! ତା'ହେଲେ ଏଠାକୁ ଆମର ଏତେବାଟ ଆସିବାର କି ଦରକାର ଥିଲା ଯେ !"

ଲିଲି ବା ଲୀଳା ଶ୍ଳେଷପୂର୍ଣ୍ଣ କଣ୍ଠରେ ଉତ୍ତର ଦେଲେ···"କାରଣ ବମ୍ବେରେ ତମ ସ୍ତ୍ରୀ ଅଛନ୍ତି, ତମେ ଆସିଛ ଦିଲ୍ଲୀ, ବ୍ୟବସାୟ ଉପଲକ୍ଷରେ; ଆଜି ବମ୍ବେରେ ମୋର ସ୍ୱାମୀ ଅଛନ୍ତି, ମୁଁ ଯାଉଛି ମାନ୍ଦ୍ରାଜ, ଜଣେ ବାନ୍ଧବୀଙ୍କୁ ଦେଖିବା ପାଇଁ !"

ମିଷ୍ଟର ମାଥୁର, ଆଦରରେ ଲିଲି ବା ଲୀଳାଙ୍କର ହାତପାପୁଲି, ନିଜର ଦୁଇ ହାତର ପଂଝା ଭିତରେ ଚୁପି ଧରି କହିଲେ···"ସେଥିପାଇଁ ଜୀବନଠାରୁ ପଳାୟନର ଏ କେତୋଟି ମୁହୂର୍ତ୍ତକୁ କଣ ଏପରି ନଷ୍ଟ କରାଯାଏ ? ଆଃ···ଆସନା···"

ମିଷ୍ଟର ମାଥୁର ଲୀଳା ବା ଲିଲିଙ୍କୁ ଯେପରି ନିଜର କୋଳ ଆଡ଼େ ଟାଣି ଆଣୁଥିଲେ, ଏକ ଅହେତୁକ ଈର୍ଷାରେ ମଣ୍ଟୁକୁ ତାହା ଈର୍ଷାନ୍ୱିତ କରିଦେଲା । ମଣ୍ଟୁ ଭାବୁଥିଲା ବାଲିକୁଦ ଉହାଡ଼ରୁ ଲମ୍ଫ ଦେଇ, ସେମାନଙ୍କ ବ୍ୟଭିଚାର ଉଚ୍ଚ କଣ୍ଠରେ ଘୋଷଣା କରିବା ପାଇଁ !

ଲୀଳା ବା ଲିଲି, ହଠାତ୍ ବିସ୍ଫୋରଣ କରି ଉଠିବା ପରି କଣ୍ଠରେ ଚିତ୍କାର କଲେ···"ଆଃ, ମୋତେ କଣ ମୁହୂର୍ତ୍ତକର ଶାନ୍ତି ଦେବ ନାହିଁ ତୁମେ ? ଯାଅ-ଯାଅ ବି ଏ ଗୁଡ଼୍‌ବାୟ୍, ତମେ ହୋଟେଲକୁ ଫେରିଯାଅ; ମୁଁ ଅଳ୍ପ ସମୟ ପରେ ଭଲ ଲାଗିଲେ ତମ ପାଖକୁ ଫେରି ଆସିବି !"

ମିଷ୍ଟର ମାଥୁର୍, ଦୁଇ ଓଠ ଅଭିମାନରେ ଥରାଇ, କଣ ଆବ୍‌ଦାର୍ କରି ଆସୁଥିଲେ; ଲୀଳା ବା ଲିଲି କହିଲେ···"ଯାଅ, ପୁଣି ବସିଲ କାହିଁକି ?"

ତା'ପରେ ଅକାରଣରେ କ୍ଷୁବ୍‌ଧା ବାଳିକା ପରି ମେଞ୍ଚାମେଞ୍ଚା ଓଦା ବାଲି ମିଷ୍ଟର ମାଥୁର୍‌ଙ୍କ ଉପରକୁ ସେ ଯେପରି ଫିଙ୍ଗିଲେ, ତାହାର

ଆଘାତରେ ସେଠାରୁ ପଳାଇବା ବ୍ୟଗ୍ରତ ମିଷ୍ଟର୍ ମାଥୁରଙ୍କର ଗତ୍ୟନ୍ତର ନ ଥିଲା !

ମଣ୍ଟୁ ଏକ ବ୍ୟାଧିତ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଉଠିଥିଲା ।

ଲୀନା ବା ଲିଲି ସୂର୍ଯ୍ୟାସ୍ତ ଆଡ଼େ ମୁହଁ କରି ସମୁଦ୍ର କୂଳେ କୂଳେ ଏକା ହଠାତ୍ ବୁଲିବା ଆରମ୍ଭ କଲେ । ମଣ୍ଟୁ ତାଙ୍କ ଦୃଷ୍ଟିରୁ ନିଜକୁ ଲୁଚାଇବା ପାଇଁ ଚେଷ୍ଟା କରୁ କରୁ, ଲିଲି ବା ଲୀନା ହଠାତ୍ ସେଠାରେ ଆସି ପହଞ୍ଚି ଯାଇଥିଲେ ।

ବାଲିକୁଦ ଉତ୍ରାଳରେ ମଣ୍ଟୁକୁ ଦେଖି ଲୀନା କହି ଉଠିଲେ···"ହଲୋ, ଗୁଡ୍ ଇଭନିଂ ।"

ମଣ୍ଟୁ ଏ ସମ୍ଭାଷଣ ପାଇଁ ପ୍ରସ୍ତୁତ ନଥିଲା । ସେ ବାଉଳା କଣ୍ଠରେ ପ୍ରତି ସମ୍ଭାଷଣ ଜଣାଇ କହିଲା···"ଗୁଡ୍ ଇଭନିଂ" ।

ଲୀନା ଆଙ୍ଗୁଠିରେ ସେହି ଝାଉଁ ବଣଟା ଦେଖାଇ ଦେଇ ପଚାରିଲେ···"ସେ ଝାଉଁ ବଣ ଭିତରକୁ ଯାଇଛନ୍ତି କେବେ ? ମୁଁ ଏଠାକୁ ଆସିବାଦିନୁ ତା' ଭିତରକୁ ଯିବାପାଇଁ ଭାବୁଛି ।"

ଏ କଣ, ଏହି ବର୍ଣ୍ଣାଢ୍ୟ ଗୋଧୂଳିରେ ତାଙ୍କ ସାଙ୍ଗରେ ଝାଉଁଜଙ୍ଗଲ ଭିତରକୁ ଯିବା ପାଇଁ ଲିଲି ବା ଲୀନାଙ୍କର ପରୋକ୍ଷ ଆମନ୍ତ୍ରଣ ? କିନ୍ତୁ ଅଳ୍ପ ପୂର୍ବେ ମିଷ୍ଟର ମାଥୁର୍ ତାଙ୍କ ଠାରୁ ଯେପରି ବାଲିମାଡ଼ ଖାଇଛନ୍ତି, ତାହାର ଭାବନା ମଣ୍ଟୁକୁ ବିଶେଷ ଉତ୍ସାହିତ କରୁ ନଥିଲା । ଅସ୍ତସୂର୍ଯ୍ୟର ଆଲୋକରେ ଲିଲିଙ୍କ କପାଳ ଉପରେ ଚୂର୍ଣ୍ଣକୁନ୍ତଳସବୁ ଯେପରି ଉଡ଼ି ବୁଲୁଥିଲା, ସେସବୁ ଆଡ଼େଇ ଦେବାପାଇଁ, ମଣ୍ଟୁର ହାତର ଆଙ୍ଗୁଳି ସବୁ ଚପଳ ହୋଇ ଉଠୁଥିଲା ! ମଣ୍ଟୁ ଅନାସକ୍ତ କଣ୍ଠରେ ଉତ୍ତର ଦେଲା··"ମୁଁ କେବଳ ଦୂରରୁ ଚାହିଁ ଚାହିଁ ଦେଖିଛି ସିନା, ତା' ଭିତରକୁ କିନ୍ତୁ କେବେ ଯାଇନାହିଁ !"

ଏ କଣ ସ୍ୱପ୍ନରେ ଶୁଣା କଥା ନା ମୀନା ବା ଲଲ ସତରେ କହୁଥିଲେ···"ଆପଣ ଯଦି ଆସନ୍ତୁ, ତା'ହେଲେ ତା' ଭିତରକୁ ଯା'ନ୍ତେ ଆମେ; ମୋତେ ଏକା ଭୟ ଲଗିବ କାଳୁ !"

ମଣ୍ଟୁ ନିଜ ଦେହର ଗୋଟାଏ ଅଂଶ ଚିମୁଟି ଦେଖିଲା, ସେଠି ଯନ୍ତ୍ରଣା ଅଛି, ସ୍ପର୍ଶାନୁଭୂତି ଅଛି···ଏ ସବୁ ତା'ହେଲେ ଜାଗ୍ରତ ଅବସ୍ଥାର ବାସ୍ତବ ଅନୁଭବ !

ମୀନା ବା ଲଲ କହିଲେ···"ଆସନ୍ତୁନା···ଏଇ ଦେଖନ୍ତୁ, ଝାଉଁ ବଣ ସେପଟେ, ପଟେ ଜହ୍ନ କପର ଶେତା ହୋଇ ଉଠିଲଣି !"

ଶୁକ୍ଳାଷ୍ଟମୀର ଜହ୍ନ ଏହି ଅପ୍ରତ୍ୟାଶିତ ସନ୍ଧ୍ୟାଟିକୁ ରହସ୍ୟମୟ କରି ଦେବାପାଇଁ, ସତରେ କେତେବେଳେ ଝାଉଁ ବଣର ଉଡ଼ାଳରେ ଉଙ୍କିମାରି ଉଠି ଆସିଥିଲା !

ଝାଉଁ ବଣ କିନ୍ତୁ ତଥାପି ଦୂରରେ ରହିଗଲା । ଭୂଷାବାଲିରେ ଗୁଳ ଗୁଳି ମୀନା ବା ଲଲ କ୍ଳାନ୍ତ ହୋଇ ପଡ଼ୁଥିଲେ । ସନ୍ଧ୍ୟାର ପାତଳ ଅନ୍ଧାରରେ ଝାଉଁ ବଣଟା ଚେନାଏ ନିଶୂତି ରାତି ପରି ଚଳେ ଛୁଣ୍ଡି ପଡ଼ୁଥିଲା ।

ମୀନା ବା ଲଲ ବାଲିରେ ବସିପଡ଼ି କହିଲେ···"କାଲି ଯିବା ବରଂ, ଆଜ ଅନ୍ଧାର ହୋଇଗଲଣି ।"

ମଣ୍ଟୁର ଇଚ୍ଛାଶକ୍ତି ସେତେବେଳକୁ ଲୋପ ପାଇ ଯାଇଥିଲା । ସେ ତାଙ୍କ ପାଖରେ ବସିପଡ଼ି ଖଣ୍ଡେ ସିଗାରେଟରେ ନିଆଁ ଲଗାଇଲା ।

ମୀନା କହିଲେ···"ଆଃ ମୋତେ ଖଣ୍ଡେ ସିଗାରେଟ୍ ଦିଅନା; ମୁଁ ବାହାରେ ସିଗାରେଟ ଟାଣେନାହିଁ ସିନା, ତଥାପି ଏଠାରେ ସିଗାରେଟ୍ ଟାଣିବାରେ ଆପତ୍ତି ନାହିଁ !"

ଏକ ନିବିଡ଼ ମୁହୂର୍ତ୍ତର ଉତ୍ତେଜନା ମୀନାଙ୍କର ମୁହଁକୁ ଲାଲ କରି ଦେଇଥିଲା······ନା, ବନାନ୍ତର ଶେଷ ଆଲୋକ ?

ମଣ୍ଟୁ ଯନ୍ତ୍ରଗ୍ରସ୍ତଙ୍କ ପରି, ସିଗାରେଟ କେସଟା ଖୋଲି ମିଲାଙ୍କ ଆଡ଼େ ବଢ଼ାଇଦେଲା । ଦାମୀ ତମାଖୁର ସୌରଭ ଆଘ୍ରାଣ କରି, ମିଲା ବା ଲିଲି କହିଲେ···"ଏ ପ୍ଲେୟର୍ସ, ନୁହଁ ? ମୁଁ ବି ଏଇ ସିଗାରେଟ୍ ଟାଣେ ।"

ମଣ୍ଟୁ ମନେ ମନେ କୃତକୃତ୍ୟ ହୋଇଉଠୁଥିଲା । ମିଲା ବା ଲିଲି କେତେଟା ଦିଆସିଲି କାଠି ଜଳାଇବା ପରେ ସୁଦ୍ଧା, ସିଗାରେଟ୍‌ରେ ନିଆଁ ଲଗାଇ ପାରିଲେ ନାହିଁ । ସେ ଅସହାୟ କଣ୍ଠରେ କହିଲେ··"ଆଃ ଚାହିଁଛ କଣ ? ଲଗାଇ ଦିଅନା !"

ମଣ୍ଟୁର ଦୁଇ ହାତ ସେତେବେଳକୁ ଏକ ଅସ୍ୱାଭାବିକ ଉତ୍ତେ-ଜନାରେ କମ୍ପୁଥିଲା । ଦୁଇ ତିନିଟା କାଠି ଜଳାଇ ମିଲା ବା ଲିଲିର ଓଠ ପାଖକୁ ନେଉନେଉ ପବନର ଆଘାତରେ ତାହା ବାରମ୍ବାର ନିଭି ଯାଉଥିଲା ! ମିଲା ବା ଲିଲି ସିଗାରେଟ ସହିତ ନିଜ ଓଠ ମଣ୍ଟୁ ଆଡ଼େ ବଢ଼ାଇଦେଇ କହିଲେ···"ତମର ସିଗାରେଟରୁ ଲଗାଇ ଦିଅ ବରଂ ! ଦେଖୁଚି ଏ ସବୁଥିରେ ତୁମେ ବିଶେଷ ଅଭିଜ୍ଞ ନୁହଁ !"

ଏଥିରେ ଅବଶ୍ୟ ହସିବାପାଇଁ କିଛି ନ ଥିଲା; ତଥାପି ମିଲା ଓ ମଣ୍ଟୁ ଦୁହେଁ ହସିଉଠିଲେ ଉଚ୍ଛ୍ୱସିତ କଣ୍ଠରେ ।

ମିଲାଙ୍କ ହସ··· ଏଇ ଉଡ଼ନ୍ତା ଗଲ୍ ପକ୍ଷୀମାନଙ୍କ ପରି !

ମଣ୍ଟୁ ନିଜ ଓଠ ମିଲା ବା ଲିଲିଙ୍କ ଓଠ ପାଖକୁ ଲମ୍ବାଇ ନେଲା-ବେଳେ, ତାଙ୍କର ପ୍ରଶ୍ୱାସ ନିଜର ଗାଲ ଉପରେ ସ୍ୱଚ୍ଛ ଅନୁଭବ କରି ପାରୁଥିଲା । ମିଲା ବା ଲିଲି ସିଗାରେଟ୍ ଲଗାଇବାରେ ଯେପରି ଅଯଥା ବିଳମ୍ବ କରୁଥିଲେ !

କଳେ ଧୂଆଁ ଛାଡ଼ି ମିଲା ବା ଲିଲି କହିଲେ···"ତମେ ବାର ନମ୍ବର ରୁମ୍‌ରେ, ନୁହଁ ନା !"

ମଣ୍ଟୁ ପଚାରିଲା···"ତୁମେ ଜାଣିଲ କିପରି ?"

ମିଳା ବା ଲିଲି କହିଲେ···"ବାଃ···ଏତେ ବଡ଼ ହୋଟେଲରେ ଆମେ ମୋଟେ ଗୁରଜଣ, ସେଥିରେ ତୁମ୍ ନମ୍ବର ଜାଣିବାରେ ଅସୁବିଧା କେଉଁଠି ? ଆଚ୍ଛା, ମୋ ତୁମ୍ ନମ୍ବର କେତେ କୁହ ତ !"

ମଣ୍ଟୁ ସେ ତଥ୍ୟ ପ୍ରଥମ ରାତିଠାରୁ ଆବିଷ୍କାର କରିଛି, ତଥାପି ନ ଜାଣିବାର ଛଳନା କରି କହିଲା···"ଜାଣେ ନାଁ ତ !"

ମିଳା ବା ଲିଲି ଆଞ୍ଜୁଳାଏ ବାଲି ମଣ୍ଟୁ ଉପରକୁ ଫିଙ୍ଗି କହିଲେ···"ଇସ୍, କି ନିର୍ଲଜ୍ଜ ମିଛ କହିପାରୁଛ ! ଆଚ୍ଛା, ତୁମେ ଡାଇନିଙ୍ଗ ହଲ୍‌ରେ, ରିସେପ୍‌ସନ୍ କାଉଣ୍ଟରରେ, ମୋ ଆଡ଼େ ଯେପରି ଗୁହିଁ ରହିଁକି ନା କୁହ ତ ! ମିଷ୍ଟର ମାଥୁର୍ କହୁଥିଲେ, ତୁମେ ନିତାନ୍ତ ଅଭଦ୍ର !"

ମିଳା ବା ଲିଲି ଯେପରି ହସିଉଠିଲେ, ସେଥିରେ ମଣ୍ଟୁ ଅପ୍ରତିଭ ହୋଇପଡ଼ିଲା । ଚବିଶ୍ଶ ପ୍ରୌଢ଼ତ୍ୱର ସୀମାରେ ସୁଦ୍ଧା, ମଣ୍ଟୁର ମୁହଁ ରକ୍ତିମ ହୋଇଗଲା । ସେତେବେଳେ ଗୁରପଟେ ସମୁଦ୍ର ନଥିଲା, ଭୂଷାଁ ବାଲି ନଥିଲା, ଲହରୀ ଓ ପବନର ଉତ୍ତରୋଳ ଗର୍ଜନ ନଥିଲା···ଏକ ମହାଶୂନ୍ୟ ପଥରେ ମଣ୍ଟୁ ଯେପରି ଉଡ଼ି ଉଡ଼ି ଗୁଲିଥିଲା !

ମିଳା ସିଗାରେଟ୍‌ଟା ଫିଙ୍ଗିଦେଇ କହିଲେ···"ଯାଏଁ ଏଥର, କାଲି ତମେ ମୋ ସାଙ୍ଗରେ ଆସିବ ନାହିଁ । ମିଷ୍ଟର୍ ମାଥୁର୍ ନିଶ୍ଚୟ ଏଇଠି କୋଉଠି ଛପି, ମୋତେ ଅପେକ୍ଷା କରିଥିବେ ।"

ନିଭୃତ ସନ୍ଧ୍ୟାର ଏହି ଗୁପ୍ତ-ରହସ୍ୟ, କେବଳ ଯେପରି ମଣ୍ଟୁ ଓ ମିଳା ମଧ୍ୟରେ ସୀମିତ ଏକ ନିଷିଦ୍ଧ ଫଳ ପରି ! ସେଥିରେ ଆଉ କାହାରି ଅନୁପ୍ରବେଶ ନଥିଲା ।

ମଣ୍ଟୁ ଗୁରପଟେ ପୁଣି ଫେରି ଆସୁଥିଲା ଅଶାନ୍ତ ସମୁଦ୍ର, ଉଦ୍‌ବେଳିତ ଲହରୀ, ଝାଉଁର ଦୀର୍ଘଶ୍ୱାସ, ବାଉଳା ପବନର ହା-ହା-କାର !

ମିଳା ବା ଲିଲି ଅଦୃଶ୍ୟ ହୋଇଯିବା ପୂର୍ବରୁ ଫେରିପଡ଼ି କହିଲେ,··· "କାଲି କିନ୍ତୁ ସେ ଝାଉଁବଣକୁ ଆମେ ନିଶ୍ଚୟ ଆବିଷ୍କାର କରିବା !"

ଲୀଳା ଚାଲିଯିବା ପରେ, ମଣ୍ଟୁ ସେଇଠାରେ ଅଭିଭୂତ ପରି ବାଲି ଉପରେ ବସିପଡ଼ିଲା ।

*　　*　　*　　*

ତା' ପରଦିନ ସୂର୍ଯ୍ୟାସ୍ତର ବହୁପୂର୍ବରୁ, ମଣ୍ଟୁ ପୂର୍ବନିର୍ଦ୍ଦିଷ୍ଟ ସ୍ଥାନରେ, ଲୀଳା ବା ଲିଲି ପାଇଁ ଅପେକ୍ଷାରେ ବସିବସି, ସିଗାରେଟ୍ ପରେ ସିଗାରେଟ୍ ପୋଡ଼ୁଥିଲା, ଆଉ ଝାଉଁ ଜଙ୍ଗଲକୁ ଯିବା ବାଟରେ ତାଙ୍କ ସହିତ ବିଦଗ୍ଧ ଫଳାପର ଗୋଟାଏ ଖସଡ଼ା ମନେ ମନେ ତିଆରି କରୁଥିଲା ।

ଲୀଳା ବା ଲିଲି ଭୁଲିଗଲା ନା କ'ଣ ? ଲହରୀର ଫେନଚୂଡ଼ ଉପରେ କେତେଟା ଗଲ୍ ପକ୍ଷୀ, ଚକ୍ରୀ କାଟି ଉଡ଼ି ବୁଲୁଥିଲେ ! ଝାଉଁବଣ ଭିତରୁ ଜହ୍ନଟା ଉଠି ଆସୁଥିଲା, ଗଭୀର ନିଭୃତ ପ୍ରହରର ଅଶରୀରୀ ସ୍ୱପ୍ନ ପରି ! ଗୋଟାଏ ଜ୍ୱାଳାମୟୀ ପିଣ୍ଡ !

ସେ ଆଉ ଆସିଲେ ନାହିଁ ।

ଝାଉଁବଣ ସେଇ ପରି, ଭୂଷା ବାଲିର ଅପଲକ ଭିତରେ ପଡ଼ି ରହିଲା ।

ତାଙ୍କର କଣ ହେଲା କେଜାଣେ ? କାଲି ସନ୍ଧ୍ୟା କଣ ଛଳନା-ମୟୀ, ସ୍ୱୈରିଣୀର କେବଳ ଗୋଟିଏ ଛଳନା ?

ମଣ୍ଟୁ ସେଇଆ ଭାବୁଥିଲା । ପ୍ରତ୍ୟେକଟି ମୁହୂର୍ତ୍ତ, ଏକ ଅକଥନୀୟ ଜ୍ୱାଳାରେ ତାକୁ ଯେପରି ଦଗ୍ଧ କରି ଦେଉଥିଲା !

*　　*　　*　　*

ବାରଣ୍ଡାରେ ଷୋହଳ ନମ୍ବର କୋଠରୀଆଡ଼େ ଜଣେ ବୟ଼ରର୍, ବିଛଣା ଚାଦର ଓ ତଉଲିଆ ପ୍ରଭୃତି ଗୋଟାଇ ଫେରୁଥିଲା; ହୁଏତ

ବ୍ୟବହୃତ ଘରର ପ୍ରକୃତି ବଦଳାଇବା ପାଇଁ । ମଣ୍ଟୁ ମନେମନେ ସାହସ ସଞ୍ଚୟ କରି ବଏରର୍‌କୁ ପଚାରିଲା···"ଷୋଳ ନମ୍ବର ମେମ୍ ସାହେବ କ'ଣ କରୁଛି ?"

ବଏରର୍ ବେପରୁଆ କଣ୍ଠରେ ଉତ୍ତର ଦେଲା···"ଓ'ତ ସା'ବ, କାଲ୍ ସାମ୍‌ସେ ଚଲିଗଇ ! ସତ୍ତର ନମ୍ବର ସା'ବ ଆଜ୍ ସାମ୍‌କୁ ଯାଏଗା !"

ବଏରର୍ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ମଣ୍ଟୁ ଆଡ଼େ ଚାହିଁ ଚାଲିଗଲା ।

ମଣ୍ଟୁ ନିର୍ବୋଧ ପରି ଚାହିଁ ରହିଥିଲା ଷୋଳ ନମ୍ବର କୋଠରୀର ବନ୍ଦ ଦରଜା ଆଡ଼େ ।

ଲନ୍‌ରେ, ପାମ୍‌ଗଛ ଛାଇରେ ମିଷ୍ଟର ବେଲିଙ୍କ ଚେସ୍ ଖେଳ ଶେଷ ହୋଇଥିଲା । ମିସେସ୍ ବେଲି ଚଉକି ଉପରେ ଆଉଜି, ଶିଶୁ ପରି ଅସହାୟ ଭାବରେ, ବେକ ଭାଙ୍ଗି ଢୁଳାଇ ପଡ଼ିଥିଲେ ।

ମିଷ୍ଟର୍ ବେଲି ତାଙ୍କୁ ଧୀରେ ଧୀରେ ଉଠାଇ କହୁଥିଲେ···"କମ୍ ଡାର୍ଲିଂ, ଲେଟସ୍ ଗୋ !"

ସମୁଦ୍ରର ଅଶାନ୍ତ ଲହରୀ ସବୁ ବେଳାଭୂମି ଉପରେ ବାରମ୍ବାର ଉଠି ପଡ଼ି, ଯେପରି ଏକ ନିଶ୍ଚିତ ଅବଲମ୍ବନ, ନିର୍ଭରଯୋଗ୍ୟ ଆଶ୍ରୟ ଓ ବିଲୟହୀନ ସ୍ୱପ୍ନର ସନ୍ଧାନ କରୁଥିଲେ, ମାତ୍ର ପାଉ ନଥିଲେ !

କିନ୍ତୁ ତାଙ୍କ ନାମ ଜଣା ନା ଥିଲା ?

ଠିକଣାଟା ପୁଣି କଣ ?

ମଣ୍ଟୁ ବାରମ୍ବାର ଦୀର୍ଘଶ୍ୱାସ ପକାଇ ସେଇଆ ଭାବୁଥିଲା !

(୧୯୬୫)

---

# ଜୀବନ-ପ୍ରଭାତ

ମଣ୍ଟୁବାବୁ ହାଇମାରିଲେ ।

ମୁଣ୍ଡ ଭିତରେ ସକାଳର କୁହୁଡ଼ି ମାଡ଼ିଯାଇଛି ।

ସବୁ ଘୁଳଘୁଳିଆ······ବଡ଼ମାମାଙ୍କ କାହାଣୀ ପରି ।

ମଣ୍ଟୁବାବୁ ପୁଣି ହାଇମାରିଲେ ।

କାଲି ରାତି······

ବାପାଙ୍କ ଅଫିସଘର କାନ୍ଥଘଣ୍ଟା ଠନ୍ ଠନ୍ ହୋଇ ତିନଥର ବାଜିଲା, କାଲି ରାତିରେ । ଅଫିସ ଘର ଛାତ କଡ଼ରେ ସେ ଯେଉଁ ଚଢ଼େଇମାନେ ବସା ବାନ୍ଧିଛନ୍ତି, ସେମାନଙ୍କ ନିଦ ବି ଭାଙ୍ଗିଯାଇଥିବ, ସେତିକିବେଳେ !

ଅବଦୁଲ୍ ଚପରାସୀ କହୁଛି, ଚଢ଼େଇବସାରୁ ଡିମ୍ବ ଆଣିଦେବ ।

ମଣ୍ଟୁବାବୁ ପୁଣି ହାଇମାରିଲେ ।

ସକାଳର ଆଲୁଅ, ଝରକାବାଟେ, ମଶାଣ୍ଟିର ପର୍ଦ୍ଦା ଭେଦ, ବିଛଣା ଉପରେ ବିଞ୍ଚିହୋଇ ଗଲାଣି । ମଣ୍ଟୁବାବୁଙ୍କ ଦୁଇଆଖି, କୁଞ୍ଚିକୁଞ୍ଚି ହୋଇ ମେଲି ଆସିଲା ।

କାଲି ରାତି .....

ଏଇ ଝରକାଟା ଏମିତି ଖୋଲାଥିଲା । ଆଜି ଯେଉଁଠି ନେଳି ଆକାଶରୁ ଚେନାଏ ରଙ୍ଗ, ଖସି ପଡ଼ୁଛି । କାଠଚମ୍ପା ଡାଳର ଯେଉଁ ପତ୍ରହୀନ ଖୁଣ୍ଟାଟା ବାହାରିପଡ଼ିଛି, ତା'ର ଉପରେ ଦୁଇଟା ଚଢ଼େଇ ନାଚିକୁଦି, କିଚିର୍ ମିଚିର୍ ହେଉଛନ୍ତି......

ପ୍ରଭାତର ସଙ୍ଗୀତ ।

ମଣ୍ଟୁବାବୁଙ୍କ ଆଖି ଦୁଇଟା ଆଉଥରେ ମେଲିଗଲା । ଅବଦୁଲ ଚପରାଶୀ କହେ କେତେଜାତି ଚଢ଼େଇଙ୍କ କଥା; କିଏ ହେବ ଧରିଦେବ ବୋଲି ।

କିନ୍ତୁ ସବୁଦିନେ ଚାରି,...କାଲି !

ଆଜି ଏଇ ଖୋଲା ଝରକାରେ ଆଲୁଅ, ଚଢ଼େଇ ଆଉ ସକାଳ ।

କାଲି ରାତି ।

ଘଣ୍ଟାରେ ବାଜିଲା, ଏକ୍...ଦୁଇ...ତିନ୍ ! କେଜାଣି କାହିଁକି, ନିଦ ଭାଙ୍ଗିଗଲା । ମଶାଣ୍ଟି ସେପଟେ, ଝରକା ବାହାରେ, ନିସ୍ତବ୍ଧ ରାତି, କୋଇଲାରେ ଧୂଆଁ ସିଲଟ ପରି କଳା ଆକାଶ । ମନେ ମଣିଷଙ୍କ ଅକ୍ଷିଗୋଲା, ସେଠି ରଡ଼ନିଆଁ ପରି ଜଳୁଛି......ଆଜି ଅସୁରମାନଙ୍କ ଆଖି ବି !

କାଲି ସେଇ ନିସ୍ତବ୍ଧ ରାତିରେ ......

ଅକାରଣରେ ମଣ୍ଟୁବାବୁଙ୍କ କଣ୍ଠର ନାଡ଼ଗୁଡ଼ା ଟାଣ ହୋଇ, ପାଟିଟା ଆଁ ହୋଇ ଆସୁଥିଲା, କାନ୍ଦିବା ପାଇଁ । ମାତ୍ର, ବାହାରେ

ଅସୁର ପଲପଲ ହୋଇ ବୁଲୁଛନ୍ତି ଯେ ! ଦାନ୍ତ ସେମାନଙ୍କର ଲମ୍ବାଲମ୍ବା, ହାଣ୍ଡିଦାନ୍ତ ପରି । ନଖ ସେମାନଙ୍କର ମୂନିଆଁ, ଡାମ୍ଫଣ ପରି । ଜିଭ ସେମାନଙ୍କର ଲହଲହ, କେଳାପେଡ଼ିର ସାପ ଜିଭପରି !

ପିଲାଙ୍କ କାନ୍ଦ ଶୁଣିଲେ, ସେମାନେ କାଳେ ଧାଇଁ ଆସନ୍ତି !······

ସେଇ ବୁଢ଼ୀମଣିଷଟି ······ସେଇମ, ସେଇମ, ଯାହାଙ୍କୁ ସମସ୍ତେ ବଡମାମା ବୋଲି ଡାକୁଥିଲେ; ଯାହାଙ୍କ କୋଳ ଭିତରେ ଶୋଇଲେ, କେଉଁ ଅନ୍ଧାର ଗୁମ୍ଫା ଭିତରୁ ନିଦ ମାଡ଼ିଆସେ, ଆଉ ମାଡ଼ିଆସେ ସାତରଙ୍ଗୀ ଇନ୍ଦ୍ରଧନୁ ଦେଶର ସ୍ୱପ୍ନ; ଯାହାଙ୍କ କୋଳ ଭିତରେ ବାପା ନ ହାନ୍ତି, ମମୀ ନାହିଁ, ତିନ ବର୍ଷର ସାନ ଭଉଣୀ ମିନି ନାହିଁ,······ଖାଲି ମଣ୍ଟୁବାବୁ ଆଉ ପୁଷି ବିଲେଇ··ପୁଷି କାଟ୍, ପୁଷି କାଟ୍, ହୋପ୍ସାର ହାଡ଼ ଫୁ ବନ୍ ? ତା' ପରେ ? ତା'ପରେ ? କେ. ଜି. କ୍ଲାସର ସଙ୍ଗୀତ······

କୁଆଡ଼େ ଗଲେ ସେ ?

ସେଇ ବୁଢ଼ୀମଣିଷଟି, ସେଇମ, ଯୋଉଁପରି ତାଙ୍କ ବାଳ, ଯାହାଙ୍କ କୋଳ ଭିତରେ ଶୋଇଲେ, ଦନ୍ତା ଦନ୍ତା ଅସୁରମାନେ ହାରି ମାନି ପଳାନ୍ତି; ସେଇମ ଯିଏ କହନ୍ତି ଅସୁରୁଣୀ ବୁଢ଼ୀ କଥା, ନିଜ ଗୋଡ଼କୁ ନିଆଁ ଭିତରକୁ ଲମ୍ବାଇ ସେ ଦାନ୍ତ କଡ଼ମଡ଼ କରି ବସିଥାଏ, ଯିଏ କହନ୍ତି ପୁଣି ରଜାଝିଅ କଥା କାନ୍ଦିଲେ ତା ଆଖିରୁ ମଣି ଝରେ, ହସିଲେ ଓଠରୁ ମୁକ୍ତା ଝରେ; କନଭେଣ୍ଟ ସ୍କୁଲର ଷ୍ଟାଣ୍ଡାର୍ଡ ଟୁ (ବି) ର ସେଇ ଯେଉଁ ଫ୍ରକ୍ ପିନ୍ଧା ଝିଅଟି·····ପ୍ରୀତି ସିଂ····· ସେ ବି କାନ୍ଦିଲେ ତା ଆଖିରୁ ମଣି ଝରେ, ହସିଲେ ଓଠରୁ ମୁକ୍ତା ଝରେ; ନୁହେଁ ?·····
କାହାନ୍ତି ସେଇ ବୁଢ଼ିମଣିଷଟି ? କାହିଁ ତାଙ୍କ କୋଳର ଅଭସ୍ତ୍ର-ବ୍ୟୂହ ? ଆଜ ସବୁଆଡ଼େ ଖାଲି ପଲ ପଲ ଅସୁର !

ଆଜ ରବିବାର !

ସ୍କୁଲ ବନ୍ଦ । ସ୍କୁଲ ନାହିଁ । ସ୍କୁଲ ଛୁଟି !

ଅବଦୁଲ୍ ଚପ୍‌ରାସୀର କାମ ନାହିଁ । ଚନ୍ଦ୍ରେଇ ଧଇଁଦେବ ସେ । ଚନ୍ଦ୍ରେଇ ବସରୁ ଡମ୍ବ ଆଣିଦେବ ସେ ।

କିନ୍ତୁ ସେଇ ଗୁଡ଼ୀମଣିଷଟି କାହାନ୍ତି ? ଛୁଟି, ଚନ୍ଦ୍ରେଇଛୁଆ, ଚନ୍ଦ୍ରେଇ ଡମ୍ବ, ରଙ୍ଗୀନ କାଚଗୁଳି, ଚକୋଲେଟ, ଷ୍ଟାଣ୍ଡାର୍ଡ ‘ବ’ (ଟ୍) ର ପ୍ରୀଙ୍ଗ ସିଂ, ସବୁ ଥାଇଁ ସୁଦ୍ଧା ଆଜି ସବୁଅଡ଼େ ଖାଁ ଖାଁ ଅସୁରିଂପଲଟଲ !

ସେ’ ଦିନ······

ବାପାଙ୍କ ମୁହଁଟା ଦିଶୁଥିଲା ଘାଉଁରୁଟୀ, ଘାଉଁରୁଟୀପରି ! ଅନ୍ଧାର କୋଳରେ, କେଉଁଠି, ସେଇ ବଡ଼ ଦେଉଟାର କେଉଁ କୋଣରେ, ଝିଙ୍କାରି ଚେଁ—ଚେଁ କାନ୍ଦ ଛଡ଼ା ଆଉ ସବୁଆଡ଼ ଚୁନ୍‌ଚାନ୍ !

ମଣ୍ଟୁବାବୁ, କାନ୍ଧରେ ବହି ବାଗ୍ ଝୁଲେଇ, ସ୍କୁଲରୁ ଫେରି ଆସିଲେ ।

ଲେଫ୍‌ଟ୍······ରାଇଟ୍······ଲେଫ୍‌ଟ୍···ରାଇଟ୍····· ଲେଫ୍‌ଟ୍··· ଲେଫ୍‌ଟ୍······ହ-ଲ୍-ଟ୍ !

‘ଏସ୍ସୁ ମଣ୍ଟୁ’

ବାପାଙ୍କୁ ମନେ ମନେ ଘୃଣା କରନ୍ତି ମଣ୍ଟୁବାବୁ, ତାଙ୍କର ଏମିତିଆ କଣ୍ଠସ୍ୱର ପାଇଁ !

“ଅବଦୁଲ୍ ବାବାକୁ ଘଚ୍ଚପଟ ଲନ୍‌କୁ ନେଇଯାଅ । ଏଠାରେ ସେ ଯେପରି ନରହେ ! ଏବେ ଶବ ଉଠିବା ବେଳା ହେଲା ।”

କେତେ ମଣିଷ, କେତେ ଶକ୍‌ସା, କେତେ ସୁଁ-ସୁଁ-କାନ୍ଦ, ଘାଉଁରୁଟୀ ପରି କେତେ ଫୁଲ ଫୁଲ ମୁହଁ, ବାପାଙ୍କ ପାଖରେ ଚୁପ୍‌ଚାପ୍ ଠିଆହୋଇ, କେତେ ସିଗ୍ରେଟ୍ ଟଣା, କେତେ କୋଳାହଳ, ଅଥଚ କେତେ ଚୁପ୍‌ଚାପ୍ !

"ବାବା ! ଉଧର୍ ମତ ଯାନା"—ଅବଦୁଲ୍‌ର ଚିତ୍କାର !

ଭୋକ କରୁଛି ଯେ ! ବୋଉ, ମମୀ······ମମୀ······ମମୀ···

ଆମ୍ମା ଆଣି ଦେଇଗଲା, ଗିଲାସେ ଦୁଧ ଆଉ କେତେଖଣ୍ଡ ବିସ୍କୁଟ ! ବାପ୍, ଏତିକ ! ମ·····ମୀ

"ଆଓ ବାବା······ଚଡ଼ିଆ ଧରଦେବ" — ଅବଦୁଲ୍‌ର ପ୍ରଲୋଭନ !

ଚଡ଼ିଆ ! ଚଡ଼ିଆ ! ଗୃଲ ଅବଦୁଲ୍ ! ସତରେ ଚଡ଼ିଆ ଧରଦେବ ଅବଦୁଲ୍ ! କଣ ଖାଏ ଚଡ଼ିଆ ? ଶୁଏ କପରି ? ଚଡ଼ିଆ କଣ ଗାଧାଏ ? ଚଡ଼ିଆ ଗୁ' ପିଏ ନା କଫି ? ଅବଦୁଲ୍······

ସେଇ ବୁଢ଼ୀମଣିଷଟି ମ !

ସ୍କୁଲରୁ ଏମିତ ଫେରିଲାବେଳେ, କେତେ ଆଦରରେ ସେ କୋଳକୁ ଉଠାଇ ନଅନ୍ତି । ମୁହଁକୁ ପଣତରେ ପୋଛି ଦଅନ୍ତି ! କଣହେଲା କେଜାଣି ? କେତେ ଡାକ୍ତର ଆସିଲେ, ବେକରେ ଗୋଟାଏ ଗୋଟାଏ ରବର ନଳୀ ଝୁଲାଇ, ହାତରେ ଝଣ୍ଡେ ଖଣ୍ଡେ ବ୍ୟାଗ୍ ଧରି !

ମଣ୍ଟୁବାବୁଙ୍କୁ ମଧ୍ୟ ମିଳିଗଲା, ରୋଗୀଦେଖା ଖେଳ ପାଇଁ ଏକ ନୂତନ ଉପଜୀବ୍ୟ !

"ଏସ୍ତ ବାବା !"—ଅବଦୁଲ୍‌ର ଚିତ୍କାର । ଅବଦୁଲ୍ ବାରଣ୍ଡା ବେଞ୍ଚ ଉପରେ ଶୋଇ ପଡ଼ିଥିଲା ! ମଣ୍ଟୁ ତା ଛାତି ଉପରେ ଖଣ୍ଡେ ରୁଲ୍‌ବାଡ଼ି ଲଗାଇଥିଲା ଡାକ୍ତର ମାନଙ୍କର ଷ୍ଟେଥସ୍କୋପ୍ ପରି ।

"ମୁଁ ବାବା ନୁହେଁ । ମୁଁ ଡାକ୍ତରସାହେବ । ଛାତି ଦେଖିବ ।"···

ଅବଦୁଲ୍‌ର ହୋ—ହୋ—ହସ ।

ସଲାମ୍ ଡାକ୍ତରସାହେବ । ସଲାମ୍ । ସଲାମ୍ !

ଦୂର୍ ! ରୋଗୀମାନେ କୋଉଠି, ସଲାମ୍, ସଲାମ୍ କହନ୍ତ ?

ଏବେ ଡାକ୍ତରମାନଙ୍କ ଆସିବା ବନ୍ଦ ହୋଇଗଲା । ସେମାନେ ଆଉ ଆସିଲେ ନାହିଁ । ରୋଗୀଦେଖା ଖେଳଟା ମଧ୍ୟ ଆଉ ବେଶି ଆଗେଇଲା ନାହିଁ ।

କାଲୁ ସେଇ ବୁଢ଼ୀମଣିଷଟି ! ସେ ଗଲେ କୁଆଡ଼େ ?

"ମମୀ ... ମମୀ ..."

ମଣ୍ଟୁ ଅକାରଣରେ କାନ୍ଦି ଉଠିଲା ।

ସେ ଆଉ ଗୋଟିଏ ସ୍କୁଲଫେରନ୍ତା, ଗ୍ରୀଷ୍ମନେଉଟା ବେଳ । ମମୀ, ବାରଣ୍ଡାରେ ଖଣ୍ଡେ ବେତଚଉକି ଉପରେ ବସି, ଦୁଇଟା କଣ୍ଟା ଧରି ଉଲ୍ ସୂତାରେ ସ୍ୱେଟର ବୁଣୁଥିଲା ।

"ଏ'ଟା କାହାପାଇଁ ବୁଣୁଚୁ ମମୀ ?"

"ତୋ'ରି ପାଇଁ ! ଦେଖେଁ ତୋ ଗ୍ଭାତି ମାପକୁ ହେଉଚି ନା ନାଇଁ !"

ମଣ୍ଟୁବାବୁ ଗ୍ଭାତି ଫୁଲେଇ ଠିଆ ହୋଇଗଲେ, ଡ୍ରିଲ୍ କ୍ଲାସ୍‌ରେ 'ଆଟେନ୍‌ସନ୍'ରେ ଠିଆହେବାପରି ।

"ମିନିପାଇଁ ବୁଣିବୁ ନାଇଁ ?"—

"ନାଁ—"

ଦୁଇ ଓଠ ଭିତରେ କଣ୍ଟା ଦୁଇଟା ଚୁପି ମମୀଙ୍କର ସଂକ୍ଷିପ୍ତ ଗମ୍ଭୀର ଉତ୍ତର ! ମମୀ, କି ସୁନ୍ଦର ଦିଶେ, ଏମିତି ବସିଲାବେଳେ ! ସେଇ ରଜା ଝିଅ ପରି......ହସିଲେ ମୁକ୍ତା ଝରେ, କାନ୍ଦିଲେ ମାଣିକ ଝରେ !

"ମମ୍ମାଁ—ମାମା କାହାନ୍ତି ?"

"ନାହାନ୍ତି ।"

"କୁଆଡ଼େ ଗଲେ ?"

"ସେନେ ସମସ୍ତେ ଯୁଆଡ଼େ ଯାନ୍ତି !"

"କୁଆଡ଼େ ?"

"ସ୍ୱର୍ଗକୁ ।"

"ଏଠୁ ସେ ଜାଗା କେତେ ବାଟ ?"

"ଅତି ପାଖରେ, ପୁଣି ଅତି ଦୂରରେ !"

"ମୁଁ ଯିବ !"

"କୁଆଡ଼େ ?"

"ମାମା ଯୁଆଡ଼େ ଗଲେ । ସେଠି ସେ ମତେ କାହାଣୀ କହିବେ !"

ଏ କଣ ହେଲା ? ମମ୍ମାଁ ହାତରୁ କଣ୍ଟା, ଉଲ ସବୁ ଫିଙ୍ଗିଦେଇ, ହଠାତ୍ ମଣ୍ଟୁବାବୁଙ୍କୁ ଏମିତି ଛାତିରେ ଚୁପିଧରିଲେ କାହିଁକି ?

ଆଃ···କି ନରମ ! ଆଃ···କି ଉଷୁମ ! ଆଖି ମୁଦି ହୋଇ ଆସେ ! ଛାତି ଭିତରର ଦୁକ୍‌ଦୁକ ଶୁଭୁଛି ।

ମଣ୍ଟୁବାବୁ ସେଇ ଦୁକ୍‌ଦୁକ ଉପରେ ହାତ ରଖି ପଚାରିଲେ··· ଛାତି ଭିତରେ ଏ କଣ ଶୁଭୁଛି ?"

ବାହାରେ, ସୁର୍‌କି ବିଛା ରାସ୍ତାର ଉପରେ ମଟରହର୍ଣ୍ଣ ଶୁଭିଲା । ବାପା ଆସିଲେ ପରା !

କିନ୍ତୁ ମମ୍ମାଁ ଏମିତି ଭୁତପରି ଉଠିଗଲା କାହିଁକି ? ମଣ୍ଟୁର ପାଦରେ ଚଉକିର ଗୋଡ଼ଟା ବାଜିଲା ଯେ !

ମମୀ ପଛରେ ଗୁଡ଼ ଯାଇଥିବା ଉଲ୍‌ ପିଣ୍ଡୁଳା ଓ ଆ·ାବୁଣା ସ୍ୱେଟରର ଫ୍ୟାଟର୍ଣ ଗୁଡ଼ାକୁ, ଦାନ୍ତରେ, ନଖରେ ଛୁଣ୍ଡାଇ ପାରିଲେ କ ଆରାମ ମିଳନ୍ତା !

ଏଇ ସ୍ତ୍ରୀ ଲୋକଟି ! ମମୀ !

······ମଣ୍ଟୁ ଚିତ୍କାର କରି କାନ୍ଦିବା ପାଇଁ ଚେଷ୍ଟା କରୁଥିଲା, ମାତ୍ର ପାରୁ ନଥିଲା ।

ଏ କୁଆଡ଼େ କାହାଣୀର ସେଇ ରଜାଝିଅ, କାନ୍ଦିଲେ ଯିଏ, ଆଖିରୁ ମୁକ୍ତା ଝରେ, ହସିଲେ ମାଣିକ ଝରେ ! ତାକୁ ତ ବୁଝିହୁଏ, ଠିକ୍ ଷ୍ଟାଣ୍ଡାର୍ଡ ବ. (ଝ) ର ପ୍ରୀତି ସିଂ, ନୋହିଲେ ମଞ୍ଜୁ ଦାସ ପରି ! କିନ୍ତୁ ଏଇ ସ୍ତ୍ରୀ ଲୋକଟି······ମମୀ !

ଏଇ, ଯିଏ ଦଣ୍ଡକ ଆଗରୁ ଗୁଣ୍ଡ ଉପରେ ଚୁପି ଧରିଥିଲା; ଯାହାର ତତଲା ନିଶ୍ୱାସ ଗାଲରେ ଉଷ୍ମ ଲାଗୁଥିଲା; ଆଉ ଏଇ ଯିଏ ମଟର ହର୍ଣ ବାଜୁଛି କି ନ ବାଜୁଛି, ଭୂତ ଲାଗିଲା ପରି, ଦଉଡ଼ି ପଳାଇଗଲା ! ·····ଆଃ·····କାନ୍ଦିବାକୁ, ଚିତ୍କାର କରି କାନ୍ଦିବାକୁ ଇଚ୍ଛାହୁଏ ! କାନ୍ଦିଲେ ମନ୍ଦ କଣ ? ପାଦରେ, ଚଉକୀଗୋଡ଼ର ମାଡ଼ ଲାଗିଛି ଯେ ! · ପଚାରିଲେ ଯେକୌଣସି କୈଫିୟତ୍ ଦିଆଯାଇ ପାରିବ !

ଆଉ ଏଇ ଯେ ବାପାନାମଧାରୀ ମଣିଷଟି !

ପାଇପ୍ ଟାଣି ଟାଣି, ଦୁଗୁଳା ଟାଇଟା କାଡ଼ି କାଡ଼ି, ରେଲ୍‌-ଇଂଜନ୍ ପରି ଆଃ······ଉଃ······ଗର୍ଜନ କରି କରି,······"ଏଇ ଅବଦୁଲ୍", "ଆହେ, କୁଆଡ଼େ ଗଲ, ଶୁଣୁଛ" ଚିତ୍କାରରେ ଘର କମ୍ପାଇ, ରନ୍ଧାଘରେ "ଟୀ' ହେଲା ?" "ଟୀ' ହେଲା ?" ଝଡ଼ ଉଠାଇ, ମଚ୍ ମଚ୍, ମଚ୍ ମଚ୍, ହୋଇ, ଏଇ ଯେଉଁ ବାପାନାମଧାରୀ ମଣିଷଟି, ବେଳେ ବେଳେ ମଣ୍ଟୁର ଦୁଇ ଗାଲରେ ହାତବୁଲାଇ ଦିଏ,·ମୁଣ୍ଡର ବାଳ ଗୁଡ଼ାକୁ ଆଉଁସି ଦିଏ·····କାହାଣୀର ସେଇ ଅସୁରମାନଙ୍କ କଥା ମନେପକାଇ ଦିଏ; କାହିଁକି ?

ମଣ୍ଟୁବାବୁ,—ଅବଦୁଲ୍ ଯାହାଙ୍କୁ ଯଥାର୍ଥ ସମ୍ମାନ ଦେଇ, କଥା କଥାକେ କହେ, "ହଜୁର"; ବେଖା ଘୋଡ଼ାକୁ ଲଣ୍ଡେଇରେ ଯେ ଗଡ଼ାଇ ଦେଇ ପାରେ; ଗୁଲି ଖେଳରେ ଯିଏ ଅପ୍ରତିଦ୍ୱନ୍ଦୀ; ପ୍ରୀତ ସିଂ ଯାହାକୁ ହସି ହସି ଚକୋଲେଟ ମାଗେ, ଯିଏ ଏକ ବିଶେଷ କୌଶଳରେ ମନକୁ ମନ ପକ୍ଷୀରାଜ ଘୋଡ଼ାଉପରେ ଅସୁରଙ୍କୁ ମାରିବାପାଇଁ ଛୁଟିଥିବା ରାଜକୁମାର ହୋଇପାରେ,·····କେତେ ଅଗନାଅଗନ ବନସ୍ତ, ସେଠି କାଉ କୋଇଲିର ଡାକ ନାହିଁ,·····କେତେ ଅନ୍ଧାରୁଆ ପାହାଡ଼ ଗୁହା, ତା ଭିତରେ ପଲ ପଲ ଅସୁରୁଣୀ,·····କେତେ ନଈ, କେତେ ସମୁଦ୍ର, ତା ଭିତରେ ଖାଲି ମଣିଷଖିଆ କୁମ୍ଭୀର ଆଉ ମଗରମାଛ···ଯିଏ ପ୍ରାଇମର ବହିର ପୃଷ୍ଠା ଉପରେ ଚୂନାଉ ଚୂନାଉ, ରାସ୍ତା ଉପରେ ଗୁଲୁ ଗୁଲୁ, ମମୀଁ ହାତରୁ ଖାଉ ଖାଉ, ଏ ସବୁ ଦୁର୍ଗମ ଆଉ ଦୁର୍ମଦମାନଙ୍କୁ ଅବହେଳାରେ ଜୟ କରିପାରେ; ତା, ପ୍ରତି ଏ ବାପାନାମଧାରୀ ମଣିଷଟିର ତାଚ୍ଛଲ୍ୟ ଅସହ୍ୟ !

ଏବେ ଥରେ, ଗଳା ଫଟାଇ କାନ୍ଦିଲେ କପରି ହୁଅନ୍ତା ?

ମମୀଁ ପୁଣି ଏଡ଼େ ମାଚ ହୋଇପାରେ ? ହେଇ—ସେଇ ବାପା-ନାମଧାରୀ ମଣିଷଟିର ବେକରୁ ଟାଇଟା ଫିଟାଉଛି; କିନ୍ତୁ ମଣ୍ଟୁ ଦେହରୁ ଝାଳଭିଜା ସାର୍ଟଟା ଓହ୍ଲାଇଦେବ କିଏ ?

ଆୟା ଆସିଲା ।

ବୁଢ଼ୀ ଅସୁରୁଣୀର ଚେହେରା !

ହେଇ; ହଳଦିଆ ଦାନ୍ତ ଦି'ପାଟି ଦେଖାଇ, ମୁହଁ ଉପରେ କୁଞ୍ଚୁକୁଞ୍ଚିଆ ଅସୁମାରି ରେଖା ଟାଣି, ସେ ପାଟି ଆଁ କରି କହୁଛି·····"ଆସ, ତମ ଜାମାଟା ଖୋଲିଦେବି !"

"ନାଇଁ—ଜାମା ଖୋଲି ହେବନାଇଁ ।"

"ବାବା, ଗାଳିଦେବେ ଯେ !"

"ମୁଁ ବାବା ଫାବା ଜାଣେନା !"

"ମଣ୍ଟୁବାବୁ, ତୁମେ ଭାରି ଦୁଷ୍ଟହେଉଚ । ବାବା ଗାଳିଦେବେ !"

ଓଃ ······ ବାବା ··· ବାବା ··· ଏ ଯେପରି ଖାଲି ବାବାର ପୃଥିବୀ ! ଗେଟ୍ ଆଉଟ୍ !

"ମା—ମା, ଏଇ ଦେଖ ମଣ୍ଟୁବାବୁ ମୋ ଗୁଣ୍ଡରେ ଗୋଟାଏ ଗୋଇଠା ମାରିଦେଲେ ।"··· ଆପ୍ପା ଗଳା ଫଟାଇ ଆର୍ତ୍ତନାଦ କରୁଥିଲା ।

ନାଃ···ଏଥର ନିଷ୍ଟୟ କାନ୍ଦିବାପାଇଁ ପଡ଼ିବ, ସବୁ ଶକ୍ତି ପ୍ରୟୋଗକର ।

କିନ୍ତୁ ଶୁଣୁଛ ବା କିଏ ?

ହେଇ, ସେଇ ବାପାନାମଧାରୀ ମଣିଷଟି······ଷ୍ଟିନବର୍ଷର ଲଜ୍ଜଶୀ ମିନିକୁ ଦୁଇ ହାତରେ ଧରି, ଉପରତଳ ନଚାଇ, ଥଣ୍ଡା ପଡ଼ିଆସୁଥିବା ଟି' କପ୍ ପ୍ରତି ସୁଦ୍ଧା ଭ୍ରୂକ୍ଷେପ କରୁନାହାଁନ୍ତି ! ଆଉ ମମୀ, ହସି ହସି ସେ ଲୋକଟା ଆଡ଼େ ଗୃହିଁ କଣ ଏଣ୍ଡ ତେଣୁ କହୁଚି···"ଟି, ଥଣ୍ଡା ହୋଇ ଗଲା ମ !"

ମିନି ହସୁଛି ····ମିନି ହସୁଛି······

ମଣ୍ଟୁବାବୁଙ୍କ କାନ୍ଦ ଶୁଣୁଛି ବା କିଏ ?

ସେ ଚଢ଼େଇ ଦି'ଟା କାଠଚମ୍ପା ଗଛର ଥୁଣ୍ଟା ଡାଳରୁ ଗଲେ କୁଆଡ଼େ ?

ଅବଦୁଲ୍ କହୁଥିଲା, ଚଢ଼େଇମାନେ କାଲେ ସଞ୍ଜବେଳେ ଯାନ୍ତି ମାମୁଁଘରକୁ ।

ମାମୁଁ·····ସେଇ ପ୍ରାଣଖୋଲା ମଣିଷଟି । ବାପାଠାରୁ ଯଥେଷ୍ଟ ଭଲ, ଯଥେଷ୍ଟ ଭଦ୍ର, ଯଥେଷ୍ଟ ସୁନ୍ଦର !

ମଣ୍ଟୁକୁ ସେ ଡାକନ୍ତି "ହଲୋ ମଣ୍ଟି ! ମଣ୍ଟୁବାବୁ !"

ତାଙ୍କର ମନବାଗ୍ ଉପରେ ମଣ୍ଟୁର ଅବାଧ ଅଧିକାର !

ଗ୍ରେଟ୍ ଟାଇମପିସ୍ ଘଣ୍ଟାଟା ଟିକ୍ ଟିକ୍ ହେଉଛି···ଗୁଣ୍ଡ ତଳର ଦୁକ୍‌ଦୁକ ପରି ! ମହାକାଳର ଗୁଣ୍ଡତଳେ, ରକ୍ତର ଯେଉଁ ସୁଅ ସେକେଣ୍ଡ

ଆଉ ମିନଟ୍ ପରେ ବନ୍ଦ୍, ବନ୍ଦ୍ ହୋଇ ଝୁରି ଯାଉଛି, ଏ ଯେପରି ତାରି ଧୁକ୍‌ଧୁକ ! ମହାକାଳର ମଧ୍ୟ ହୃଦସ୍ପ ଅଛି !

ସେ ଚଢ଼େଇ ହଳଟା ମାମୁଁଘରକୁ ଉଡ଼ିଗଲେଣି ! ପୁଣି କାଲି ସକାଳେ ଫେରିବେ !·········

ହେଇ, ବାପାନାମଧାରୀ ସେଇ ଅଳସୁଆ ଲୋକଟି, ଭଡ଼ ମୋଡ଼ ହେଲଣି । ମମୀଟା ବି କ ଅଳସୋଇ !

କ ଆରାମରେ ଶୋଇଛନ୍ତି ସେମାନେ !

ଅଥଚ, ହଳେ ହଳେ, ସେଇ ବଡ଼ମାମା ବୋଲି ଯେଉଁ ମଣିଷଟି ଥିଲେ, ଯାହାଙ୍କର ଖଣ୍ଡେ ଫଟ ଏବେ ହେଇ, ସେଠି ଟଙ୍ଗା ହୋଇଛି, ତାଙ୍କଠାରୁ କାହାଣୀ ଶୁଣି ଶୁଣି, ରାତି ଡେରି ହୋଇଗଲେ, କୋହିଲେ କେତେ ଅଛୁଣ୍ଡା ସ୍ୱପ୍ନର ଅସରନ୍ତି ପ୍ରହର କଟ୍‌କଟ୍, ସକାଳେ ଉଠିବାପାଇଁ ପାଞ୍ଚମିନଟ, ଦଶମିନଟ ଡେରି ହୋଇଗଲେ ······ଏଇ ଅଳସୁଆ ଲୋକଗୁଡ଼ାଙ୍କର କ ଚିତ୍କାର ! କ ଗର୍ଜନ ! ସକାଳୁ ଉଠିବାପାଇଁ କେତେ ତାକିଦ୍ ! କେତେ ଉପଦେଶ ! ଅଥଚ ଏଇ ସେ ବାପା······ଭଡ଼ମୋଡ଼ ହେଉଛନ୍ତି; ଘୁଙ୍ଗୁଡ଼ି ମାରୁଛନ୍ତି, ଆଉ ଏଇ ସେ ମମୀ ·····ଅଳସୋଇଟା !

ଆଜ ରବିବାର । ଆଜ ଛୁଟି । ଆଜ ସ୍କୁଲ ନାହିଁ ।
ଆଜ ଡ୍ରିଲ୍ ନାହିଁ । ଆଜ କ୍ଲାସ୍ ଆରମ୍ଭରେ ପ୍ରାର୍ଥନା ନାହିଁ ।

ଝରକା ବାହାରେ, ଚଳେ ଛିଣ୍ଡି ପଡ଼ିଥିବା ଚେନାଏ ନେଳି ଆକାଶ, ଧଳା ରଙ୍ଗ ଧରି ଆସିଲାଣି ।

ସେ ଖଟ ଉପରେ, ତଥାପି ସେମାନେ ଶୋଇଛନ୍ତି ·········· ଶୋଇଛନ୍ତି ········· ଆଉ ମମୀଙ୍କ କୋଳରେ ଶୋଇଛି, ତିନିବର୍ଷର ଭଉଣୀ ମିନି ।

ମନର ନେଳି ଆକାଶରେ ମଧ୍ୟ ଖଣ୍ଡ ଖଣ୍ଡ ଧଳା ମେଘ ଆସୁଛି ! କାନ୍ଦିବାପାଇଁ ଇଚ୍ଛା ହେଉଛି ! ଏଇ ନୂଆ ସକାଳରେ, ଏଇ ସୁନ୍ଦର ସକାଳରେ,

ଏଇ ସକାଳଖବରର ଚୂନଲଗା ପୃଥିବୀରେ, ମଣ୍ଟୁବାବୁ ଏକା·········
ଏକା······ ବଡ଼ମାମା ବୋଲି ସେ ବୁଢ଼ୀମଣିଷଟି ନାହାନ୍ତି, ଚଢ଼େଇମାନେ ମାମୁଁଘରୁ ଫେରି ନାହାନ୍ତି । ଅବଦୁଲ୍ ଆସିନାହିଁ, ଆଜି ଛୁଟୀ, ଆଜି ରବିବାର, ବେଙ୍ଗାପ୍ପୁ ଆସିବ ନାହିଁ, ପ୍ରୀତି ସିଂ ଆସିବ ନାହିଁ, ସବୁ ନଗ୍ନଛିଆ, ଖାଲିଖାଲି, ସବୁ ଏକା ଏକା !

ତଳମହଲରେ ନିତିଦିନିଆ କେତେ ଖଟ୍‌ଖାଟ୍, ଟିକେଟେ ଟୁଙ୍ଗଟାଙ୍ଗ୍ ଶବ୍ଦ ଶୁଭୁଛି ।

ବାପାନାମଧାରୀ ମଣିଷଟି, ଅଧା ଶୋଇଛନ୍ତି, ଅଧା ଉଠିଲେଣି । ସବୁଦିନ ସକାଳେ, ଏ ତାଙ୍କର ନିତିଦିନିଆଁ ଖୁଁ ଖୁଁ କାଶ !

ମିନି କାନ୍ଦୁଛି ।

ଇସ୍, ଏ ମମୀଁ ମଷଣିଟି କେଡ଼େ ମାଚ !

ସେଇ ମିନି । ଅସଭ୍ୟ, ଅଧାବେଳ ଲଙ୍ଗଳା, ପ୍ୟାଣ୍ଟ୍‌ରେ ମୁତେ । ଦାନ୍ତସବେ ନାହିଁ ମଣ୍ଟୁପରି ବ୍ରସ୍ ଧରି । ପୁଣି ଏତେ ଦୁର୍ବଳ ! ଫୁଲପାଖୁଡ଼ା ପରି ! ଚଢ଼େଇଛୁଆ ପରି । ମମୀ ତାକୁ ନିଦ ଅଳସରେ ଗୁଣ୍ଡ ଭିତରେ ଜାକି ଧରୁଛି । ସେଇ ନରମ, ଉଷୁମ ଗୁଣ୍ଡ । ତା' ଭଳେ ଅଛି ଏକ ବିଚିତ୍ର ପ୍ରାଣ—ସଙ୍ଗୀତ······ଗୁଣ୍ଡର ଦୁକ୍‌ଦୁକ ! ସେଠି ଅଛି ନିଦମାଉସୀର ଗୀତ, ସେଠି ଅଛି ଅସରନ୍ତି ସ୍ୱପ୍ନ, ସେଠି ଅଛି ଗହନ, ଗଭୀର ନିଦ, ସେଠି ଅଛି ······

ମିନିର କାନ୍ଦ ବନ୍ଦ ହୋଇଗଲା !

ଆଉ ମଣ୍ଟୁବାବୁ ? ଏଇଯେ ଏଠି ଏକୁଟିଆ ବିଛଣାରେ ପଡ଼ିଛନ୍ତି ! ତାଙ୍କୁ ଆଜି ସମସ୍ତେ ଭୁଲିଗଲେ; ସେଦିନର ପଢ଼ା ପାଠପରି ! ଚଢ଼େଇ ହ'ଟା ଉଡ଼ିଗଲେଣି ! ବଡ଼ମାମା ବି ତାକୁ······ଭୁଲି ଚାଲିଗଲେଣି !

ବନ୍ଧୁହୀନ ପୃଥିବୀ !

ମମତାହୀନ ସକାଳ !

ଅଜଣା ସହରର ଅଚିହ୍ନା ରାସ୍ତାପର, ସବୁ ନଗ୍ନଛିଆ !

ନାଃ •• ••••••

ଏମିତି ମୁହୂର୍ତ୍ତରେ ନ କାନ୍ଦିଲେ, ଆଉ କାନ୍ଦିହେବ କେତେବେଳେ ?

ଏଇ ବାପା ବୋଲି ଯେଉଁ ଲୋକଟି····· ମଣ୍ଟୁର କାନ୍ଦିବା ସୁଦ୍ଧା, ତାଙ୍କର ବରଦାସ୍ତ୍ ହୁଏ ନାହିଁ !

"ଏଯ୍ ମଣ୍ଟୁ" !

ନାଃ···ଆଜି କାନ୍ଦିବାପାଇଁ ପଡ଼ିବ, ଏ ସବୁର ପ୍ରତିବାଦରେ କଣ୍ଠଖୋଲି କାନ୍ଦିବା ପାଇଁ ପଡ଼ିବ ।

"ଏଯ୍ ମଣ୍ଟୁ ! କଣ ହେଲା ? କାନ୍ଦୁଛୁ କାହିଁକି ?"

···ବାପା ନାମଧାରୀ ମଣିଷଟି ବିଛଣାରୁ ନିଦ-ଅଳସ କଣ୍ଠରେ ପାଟି କରି ଉଠିଲେ ।

ନାଃ···ଆଜି କାନ୍ଦିବାପାଇଁ ପଡ଼ିବ, ଆଖିର ସବୁ ଲୁହ ନିଃଶେଷ-କରି !

ମମୀ ମଣିଷଟିବି କମ ନୁହ । କଟାକ୍ଷରେ ଲୁଣଛିଟା ଦେଲାପରି ସେ ପଚାରୁଛି···"ତୋର କାନ ପୁଣି ଟାଣୁଚି କିରେ ମଣ୍ଟୁ ? ଥଣ୍ଡା ଲାଗିଲେ ତ ସେଇଆ ହବ !"

କାନ ଟାଣୁଚି ? ହୁଃ !

ନାଁ, ଆଉରି ଜୋରରେ କାନ୍ଦିବାପାଇଁ ପଡ଼ିବ ।

ଏ ପୃଥିବୀ କହାଏ ।

ମାନବ ଆଗମନରେ କାନ୍ଦିବା ପାଇଁ ଅବସର ଦିଏ ନାହିଁ ।

ଲୁହର ମର୍ଯ୍ୟାଦା ବୁଝେ ନାହିଁ ।

ବାପାନାମଧାରୀ ସେଇ ମଣିଷଟି ଆଉ ସେଇ ମର୍ମୀ ... ଯିଏ କହୁଥିଲା, ମଣ୍ଟୁ ନକ୍ଷତ୍ରରୁ ଖସି ଆସିଥିଲା ବୋଲି... ଦୁହିଁଙ୍କର ଷଡ଼ଯନ୍ତ୍ରରେ ଆସିଲା ସେଇ ବୁଢ଼ୀ ଅସୁରୁଣୀ ଆୟା, ମଣ୍ଟୁକୁ ଶେଜରୁ ଉଠାଇ ନେଇ ଯିବାପାଇଁ !

ମଣ୍ଟୁର କାନ୍ଦରେ ସେମାନଙ୍କର ନିଦ ଭାଙ୍ଗିଯାଉଥିଲା !

ତାର ଚଣାଭିଡ଼ା ଭିତରେ, ଏଇ ସୁନ୍ଦର ସକାଳଟା, ଝରକା ବାହାରେ ଖଣ୍ଡେ ଭଙ୍ଗା ଅଇନା ପରି ଛୁଣ୍ଟିପଡ଼ୁଥିବା ଏଇ ନେଳି ଆକାଶଟା, ଝର କାଠଚମ୍ପାର ବାସନାରେ ମାତି ଉଠୁଥିବା ଏଇ ଝରକା-ପାଖ ବଗିଚାଟା, ସବୁ କୁଆଡ଼େ ଲୁଚିଗଲା ! ନଇଁଗଲା !

ଇଏ, ସିମେଣ୍ଟର ବାରଣ୍ଡା !

ଇଏ କାର୍ପେଟବିଛା ହଲ ଘର !

ଇଏ ପୁଣି ରଙ୍ଗୀନ ମୋଜାଇକ୍‌ର ବାରଣ୍ଡା !

କିନ୍ତୁ ଏ ସବୁର ବାହାରେ, କିଏ ବିଛେଇ ଦେଇ ଯାଇଛି, ସାବୁଜା ଘାସର ଶେଜ ? ଆଉ କିଏ ସେମାନେ ? ଯେଉଁମାନେ କାଲି ରାତିରେ କାନ୍ଦୁଥିଲେ ? ଯେଉଁମାନଙ୍କର ବନ୍ଦୁବନ୍ଦୁ ଲୁହ ଘାସପତ୍ର ଉପରେ ଝରି ପଡ଼ୁଛି !

ସେମାନଙ୍କର କଣ କାଚର ରଙ୍ଗୀନ୍ ଗୁଲି ନାହିଁ ? ସେମାନଙ୍କର କଣ ଚକୋଲେଟ ନାହିଁ ? ସେମାନଙ୍କର ବଡ଼ମାମା କଣ ସେମାନଙ୍କୁ ଛାଡ଼ି ସ୍ୱର୍ଗକୁ ଚାଲିଗଲେଣି ?

ଏଇ ଯେ !

ଗୋଟିଏ ପ୍ରକାଣ୍ଡ ପ୍ରଜାପତି ! ହଳଦିଆ ଦୁଇ ପକ୍ଷୀରେ ତାର ଥୋପି ଥୋପି ନେଳି ବିନ୍ଦୁ !

ଏଇ ସେଠି ବସିଥିଲା, ସେଇ ଜୁନିଆଁ ଫୁଲଟା ଉପରେ ।

ଜହ୍ନଆଁରୁ ଉଡ଼ିଗଲା, ସେଇ ପ୍ରକାଣ୍ଡ ଡାଳିଆ ଉପରକୁ ।

ସେଠାରୁ ଉଡ଼ିଗଲା ପୁଣି ଶିମ୍ବିର ଧୂଆଗୋଲାପ ଉପରକୁ ।

ଉଃ·····ପାଦ ଦୁଇଟା ଧାଇଁଧାଇଁ ଘୋଳେଇ ପଡ଼ିଲାଣି ! ପାଦରୁ ରଙ୍ଗୀନ୍ ଚଟି ଦୁଇଟା କେଉଁଠି ପଡ଼ିଗଲାଣି କେଜାଣେ ?

ଏଇ ପୁଣି ପ୍ରଜାପତିଟା ଏଆଡ଼େ ଉଡ଼ିଉଡ଼ି ଆସୁଛି ।

ପୁଣି ଜହ୍ନଆଁ, ପୁଣି ଡାଳିଆ, ପୁଣି ଗୋଲାପ, ପୁଣି ଘାସ !···

କ୍ଳାନ୍ତ ପାଦ ଦୁଇଟାରେ ତଥାପି ଏ କି ଗତି ? ନନ୍ଦୁଆ ମନରେ ଏ କି ଉତ୍ତେଜନା ?

ଲୁହଧୂଆ ଆଖିରେ ଏ କି ଆଶାର ଆଲୋକ ?

ଜୀବନ-ପ୍ରଭାତରେ ଏ କି ବିଚିତ୍ର ପ୍ରଜାପତି ?

କିନ୍ତୁ ପ୍ରଜାପତି ପଛରେ ଧାଇଁ ବୁଲିବାର, ସେଇ ଏକାନ୍ତ ରମଣୀୟତାରେ ଏକ ଅଶ୍ଳୀଳ ପୂର୍ଣ୍ଣଚ୍ଛେଦ ଟାଣି ହଠାତ୍ ଉପର ବାରଣ୍ଡାରୁ ଶୁଭିଲା —

"ଏସୁ ମଣ୍ଟୁ" !

ସେଇ ବାପା ନାମଧାରୀ ମଣିଷଟିର ଚିତ୍କାର !

"ଏସୁ ମଣ୍ଟୁ" !

ପ୍ରଜାପତି ସେତେବେଳକୁ କେଉଁଆଡ଼େ ଅଦୃଶ୍ୟ ହୋଇ ସାରିଥିଲା । ବାପାନାମଧାରୀ ସେଇ ମଣିଷଟି, ଦୁଇ ଓଠ ମଝିରେ ପାଇପ ଟାଣି, ମଣ୍ଟୁର ଅଳିଆ ମୁଣ୍ଡବାଳ ଭିତରେ ଆଙ୍ଗୁଠିଗୁଡ଼ା କେବଳ ତୀବ୍ରତାରେ ବୁଲାଇ ନେଉଥିଲେ ଆଉ କହୁଥିଲେ —ଦୁଷ୍ଟ ! (୧୯୬୦)

---

# ଲବଣର ସ୍ୱାଦ

ଆଉଟା ସୁନାର ଝୁଲୀବୁଲା ଆଉ ଗୋଟିଏ ସକାଳ ··· ତଳେ ବଗିଚାର ଘାସଶେଜ ଉପରୁ ଗ୍ଲାଇର କମ୍ବଳ ତଥାପି ଉଠିନାହିଁ । ···ସେଠି, ତଥାପି ଲାଗି ରହିଛି, କାଲି ରାତିର ନିଦ ଅଳସ, ଆଉ ବନ୍ଦ ବନ୍ଦ ଶିଶିର ···ମାତ୍ର ସେଇ ଢଙ୍ଗା ଶିରୀଷଗଛଟାର ଡାଳରେ; ଗୋଲ୍ଡ଼ନ୍‌ଶ୍ୱେର୍‌ ବୁଦାରେ ଅସୁମାରି ବାଇଗଣୀ ରଙ୍ଗର ଫୁଲ ପାଖୁଡ଼ା ଉପରେ, କଅଁଳ ସକାଳର ଝର ଧୀରେ ଧୀରେ ଫାଟି ଆସୁଛି··· କାହାଣୀର ସେଇ ଇନ୍ଦ୍ରଧନୁ ଦେଶର ରାଜକନ୍ୟାର ଓଠରେ ହସର କୁଞ୍ଚିତ ରେଖା ପରି···ନନ୍ଦଙ୍କ ଆଖିରେ, ସେ ରାଜକନ୍ୟାର ଚିତ୍ର ଆଉ କେହି ଆଙ୍କିବ ନାହିଁ···ସେ କାହାଣୀ ଆଉ କେହି କହିବ ନାହିଁ··· ବଡ଼ମାମା ମଲେଣି···ସେ ରାଜକନ୍ୟା ଗଲାଣି···ମମିଁର କାହାଣୀରେ ସେ ରାଜକନ୍ୟା ଆଉ ସେପରି ଆସେ ନାହିଁ, ପାଦ ଚପି ଚପି, ସନ୍ତର୍ପଣରେ, ଦୁଇ କଅଁଳ ହାତ ପାପୁଲିରେ, ପଛଆଡ଼ୁ ଦୁଇ ଆଖି ମୁନ୍ଦିଧରିବା ପାଇଁ ! ··· କିନ୍ତୁ ସେ ରାଜକନ୍ୟାର ହସ ସେମିତି ଲାଗି ରହିଛି, ଏଇ ଶିରୀଷ ଗଛଟାର ଡାଳରେ, ଏଇ ଗୋଲ୍ଡ଼ନ୍‌ଶ୍ୱେର ବୁଦାରେ······

କଟ୍ଟକିଆ ପଢ଼ାଘର···ଟେବୁଲ୍ ଉପରେ ହସ୍ତାକ୍ଷର ଲେଖାର ଖାତା···ଅଙ୍କ କଷାର ଖାତା··ଦୁର୍ବୋଧ ସଂଖ୍ୟା···ବଙ୍କାଟେଢ଼ା ଅକ୍ଷର ···ଟିଉସନ୍ ମାଷ୍ଟର ଆଜ ଆସି ନାହାଁନ୍ତି···ଆଃ···ମନର ପାଖୁଡ଼ା ଧୀରେ ଧୀରେ ଫିଟି ଫିଟି ଯାଉଛି, ବାହାରେ ଏଇ ଆଲୁଅର ପାଖୁଡ଼ା ପରି !

ଏ ଘରଟା କଟ୍ଟକିଆ, ଅତି ଶୂନ୍‌ଶାନ୍ ! ବାହାର ବାରଣ୍ଡାରେ, ଖବର ଚତୁଷ୍କୋଣ ଭିତରେ, ଖଣ୍ଡେ ଆରାମଚୌକି ଉପରୁ, ବାପାନାମଧାରୀ ସେହି ମଣିଷଟିର 'ଚୁରୁଟଧୂଆଁ'ମିଶା କାଶ ଶୁଭୁଛି···ଚୁରୁଟ୍‌ର କଡ଼ା ବାସ୍‌ନା ବି ଭାସି ବୁଲୁଛି ପବନରେ···ଖବରକାଗଜ ପୃଷ୍ଠା ଓଲଟାଇବାର ଶବ୍ଦ ବି ଶୁଭୁଛି । ଏମିତି ଏଇ ହେମାଳିଆ ପଢ଼ାଘର, ସ୍ୟାଇଡ଼ଳା ଟେବୁଲ୍ ପାଟରେ; ବଙ୍କାଟେଢ଼ା ଅକ୍ଷରବୁଲ ହସ୍ତାକ୍ଷର ଆଉ ଦୁର୍ବୋଧ ସଂଖ୍ୟାର ଅଙ୍କ ଉପରେ ମୁହଁମାଡ଼ି ବସିବା ଠାରୁ, ସକାଳର ଡେରଗୁ, ତାଜା ଖବରରେ, ଆରାମଚଉକ ଉପରେ ଦେହଢାଳି, ଆଲୁଆନ୍ତଡ଼ଙ୍କା ଦେହକୁ ଖଣ୍ଡି ଖଣ୍ଡି କାଶରେ; ଏପାଖ ସେପାଖ ଦୋହଲାଇ, ଚୁରୁଟ୍‌ରୁ ଧୂଆଁର କୁଣ୍ଡଳୀ ଉଡ଼ାଇ ବସିବାରେ କି ଆରାମ୍···ଆଃ···କି ଆରାମ୍ !

ମଣ୍ଟୁ ସେଇଆ ମନେମନେ ଭାବୁଥିଲା ।

···ମମୀ ହାତରେ ଚୁଡ଼ିର ଋଣ୍ଟ୍‌ଝିଣ୍ଟ୍ ଶବ୍ଦ, କେଉଁଠି, ଏଠି, ସେଠି ଶୁଭୁଛି···କି ବଚନ ସ୍ୱପ୍ନସଙ୍ଗୀତ ! ···ଯେପରି ଅତି ଦୂରରୁ, କେଉଁ ସ୍ୱପ୍ନର ଅପନ୍ତରରୁ, କେତେ ନଦୀ ଉପର ଦେଇ, କେତେ ପାହାଡ଼ର ଶୃଙ୍ଗ କାଟି, କେତେ ଅରଣ୍ୟ ଭେଦି, ସେହି ବଚନ ସଙ୍ଗୀତର ମୂର୍ଚ୍ଛନା ଭାସି ଆସୁଅଛି···ଆଖିରେ ନିଦ ଲାଗିଆସେ !···କିନ୍ତୁ ସେ ସଙ୍ଗୀତ ଧୀରେ ଧୀରେ, ପୁଣି, ଏଠି, ସେଠି, କେଉଁଠି ବିଲୀନ ହୋଇଯାଉଅଛି । ମିନିର ଚେଁ-ଚେଁ କାନ୍ଦ, ବାପାଙ୍କର ଲହରିଆ କାଶର ଆବାଜ୍, ଆଲ୍‌ସେସିଆନ୍ କୁକୁର ଜମୀର ଅକାରଣ ଗର୍ଜନ ଭିତରେ ସେ ସଙ୍ଗୀତ ନୀରବ ହୋଇ ଯାଉଅଛି ।

ସବୁର ଊର୍ଦ୍ଧ୍ୱରେ ଝରକା ସେପଟେ, କାଠଚମ୍ପାର ଅଣ୍ଟା ଡାଳରେ, ଗୋଲ୍‌ଡନ୍‌ଡ୍ରେନ୍ ବୁଦାର ପତ୍ରଗହଳରେ, ଚଢ଼େଇମାନଙ୍କର ବଚନ କଳରବ ··· ଶବ୍ଦ ଓ ସଙ୍ଗୀତର ସାତରଙ୍ଗୀ ଇନ୍ଦ୍ରଧନୁ !

ବାହାରେ ଆଲୋକ···ବାହାରେ ସଙ୍ଗୀତ···ବାହାରେ ଉଚ୍ଛ୍ୱସିତ, ବନ୍ଧନହୀନ ଜୀବନ !

ଭିତରେ ଏଠି ହେମାଳିଆ ଘର, ଦୁର୍ବୋଧ ଅଙ୍କ ଆଉ ବଙ୍କାଟଙ୍କା ହସ୍ତାକ୍ଷରର ବନ୍ଧନୀ ଭିତରେ, ଏକ ବ୍ୟର୍ଥ, ବାଧାଗ୍ରସ୍ତ ସକାଳ !

ଚଢ଼େଇମାନେ ସେମିତି ଆସୁଛନ୍ତି, ଯାଉଛନ୍ତି, ଶୁଖିଲା କାଠଚମ୍ପା ଡାଳରେ ନାଚୁଛନ୍ତି, କୁଦୁଛନ୍ତି, ଝରକା ସେପଟେ ସେମାନଙ୍କ କଚରମିଚର ସଙ୍ଗୀତ ଆଲୁଅର କଡ଼ିକୁ ଧୀରେ ଧୀରେ ଫିଟାଇ ଦେଉଛି; ଆଉ ତା ସଙ୍ଗେସଙ୍ଗେ ଫିଟାଇ ଦେଉଛି ନଦୁଆ ମନର ପାଖୁଡ଼ା ବି !

ସବୁ ହୁଏତ ସେମିତି । ସବୁ ଆଗପରି । ସବୁ ନିତିଦିନିଆ; କିନ୍ତୁ ସବୁଥିରୁ ନୂଆର ରଙ୍ଗ, କପର ଛାଡ଼ି ଛାଡ଼ି ଯାଉଛି । ··· କାହିଁକି ? କାହିଁକି ?

ତଳେ ଅଜୟର — ଅବଦୁଲ୍‌ର ବଡ଼ପୁଅ — ମନମତାଣିଆ ହୁଇସିଲ୍ ଶୁଭିଲା । କି ଚମତ୍କାର ଭାବରେ ଦୁଇ ଓଠକୁ ଚାପି, ଅଜୟ୍ ହୁଇସିଲ୍ ବଜାଇ ପାରେ ! ବହୁତ ଚେଷ୍ଟା ସତ୍ତ୍ୱେ ମଣ୍ଟୁ ସେଥିରେ ତଥାପି ସଫଳ ହୋଇ ପାରିଲା ନାହିଁ ! ଓଠ ଦୁଇଟା ଚଢ଼େଇ ଥଣ୍ଟ ପରି ଗୋଳିଆ କରି, ବହୁତ ଚେଷ୍ଟାରେ ମଣ୍ଟୁର ହୁଇସିଲ୍‌ରୁ ଯେଉଁ ଶବ୍ଦ ବାହାରେ, ସେଥିରେ ସଙ୍ଗୀତ ନଥାଏ ବା ଅଜୟ୍‌ର ମନମତାଣିଆ ଆମେଜ ନଥାଏ ।

ଅଜୟ୍ ଏଇ ହେମାଳିଆ ସକାଳଟାରେ, ଗାରେଜ୍ ବାହାରେ, ବାଲ୍‌ଟି ବାଲ୍‌ଟି ପାଣି ଢାଳି, ସବୁଦିନ ପରି ମୋଟର ଗାଡ଼ି ଧୋଉଛି । ଏ ଶୀତ, ଏ ହେମାଳ, ତାର ଫୁଙ୍ଗୁଳା ଛାତିରେ କଫସର୍ଦ୍ଦି ଜମାଏ ନାହିଁ, ନାକରୁ ପାଣି ଝରାଏ ନାହିଁ । ଏଇ ସେ, ଟାପ୍‌ରୁ ବାଲ୍‌ଟି ବାଲ୍‌ଟି ପାଣି ବୋହି ଆଣୁଛି···ପିନ୍ଧାରେ ତାର କେବେକାର ସେଇ ପୁରୁଣା କଳା ହାଫ୍‌ପାଣ୍ଟ, କେହି ସମ୍ଭବତଃ ଦାନ ଦେଇଥିବା, ଖଣ୍ଡେ ଢିଲା ବେମାପ କମିଜ, ମୁଣ୍ଡରେ ବାଁ ପାଖକୁ ମଡ଼ା ସେଇ ଟୋପି···ରେଲ୍‌-ଗାଡ଼ିର ଗାର୍ଡ଼ମାନଙ୍କର ଟୋପି ପରି ! ଅଜୟ୍ ଏ ଟୋପି ଖଣ୍ଡ କେଉଁଠୁ

ପାଇଥିଲା କେଜାଣି ? ମର୍ମୀଁ ସାଙ୍ଗରେ ମଣ୍ଟୁ କେତେ ଜିଦ୍ ଲଗାଇଛି, ଏପରି ଖଣ୍ଡେ ଟୋପୀ ପାଇଁ ! ! ମାତ୍ର ଯାହା ମିଳିଛି, ତାହା ଉଲ୍‌ବୁଣା ଖଣ୍ଡେ "ମଙ୍କି କ୍ୟାପ୍" ! ଦୁର···ପିନ୍ଧିଲେ ଦିଶେ ଏସ୍କିମୋ ପରି ! ·· ମାଙ୍କଡ଼ ଟୋପୀ ! ମର୍ମୀଁର କାଣ୍ଡଜ୍ଞାନ ହେଲା ନାହିଁ !

ଅଜ୍‌ଜର୍‌ର ଦୁଇପିଲ୍, ସକାଳର ଏଇ ଖବରପରି, ମଣ୍ଟୁର ଦେହ ଓ ମନରୁ ସବୁ ଜଡ଼ତା କାଟି ଫାନା କରିଦେଲା ! ଅଜଜ୍ କହିଛି ଚଢ଼େଇଛୁଆ ଧରିଦେବ ଆଜି··ଥଣ୍ଟର ରଙ୍ଗ ତାର ନାଲି, ବେକର ରଙ୍ଗ ସବୁଜ, ଦେହର ରଙ୍ଗ ନେଳି ! ଅଜଜ୍ କାଲେ ଦେଖିଛି ଚଢ଼େଇ-ମାନଙ୍କର ମାମୁଁଘର; ସ୍କୁଲ ପଛ ଗୀର୍ଜାପଡ଼ିଆର କେଉଁ ଗୋଟାଏ ଓସ୍ତଗଛ ଡାଳରେ !

ଚଢ଼େଇମାନେ କଣ ସତରେ, ସବୁଦିନ ସନ୍ଧ୍ୟାରେ, ମାମୁଁଘରକୁ ଚାଲିଯାନ୍ତି, ଲେଉଟା ଖବର ନାଇ ସଙ୍ଗେସଙ୍ଗେ; ଆଉ ପୁଣି ଫେରି ଆସନ୍ତି ସକାଳର ଆଲୁଅରେ ?

ଦୁର୍···ମିଛ କଥା ! ସେଦିନ ବେଙ୍କା ସିଂହ ବାଜି ଲଗେଇଥିଲା, ଏଇକଥା ଉପରେ । ଖେଳକୁଟୀରେ, ସ୍କୁଲପଡ଼ିଆର ସେଇ ଝଙ୍କାଳିଆ ଆମ୍ବଗଛ ତଳେ, ଏଇ କଥାରୁ ଲାଗି ଯାଇଥିଲା ମୁଷ୍ଟିଯୁଦ୍ଧ । ବେଙ୍କା ସିଂହର ନାକରୁ ରକ୍ତ ଝରିଥିଲା, ଆଉ ବେଙ୍କାସିଂହର ମୁନିଆଁ ଦାନ୍ତକାମୁଡ଼ାରେ ମଣ୍ଟୁର ହାତ ଆଙ୍ଗୁଳି ଗୋଟାଏ ଫୁଟି ଯାଇଥିଲା !

ଚଢ଼େଇମାନେ ସବୁଦିନ ସନ୍ଧ୍ୟାରେ, ମାମୁଁଘରକୁ ଚାଲିଯାନ୍ତି··· ମଣ୍ଟୁର ତଥ୍ୟ !

ହୁଃ·· ଚଢ଼େଇମାନଙ୍କର କାଲେ ମାମୁଁଘର ଅଛି ? ···ବେଙ୍କା-ସିଂହର ପ୍ରତିବାଦ !

ମଣ୍ଟୁ ତ ଚଢ଼େଇମାନଙ୍କର ମାମୁଁଘର ଦେଖିଆସିଛି, ଅବଦୁଲ୍ ସାଙ୍ଗରେ । ପକ୍ଷୀରାଜ ଘୋଡ଼ା ଉପରେ ଚଢ଼ି ସେ, ସାତ ସମୁଦ୍ର ତେରନଈ ଯେଉଁଠାରେ, ସେଇ ଅଗନାଅଗନ ବନସ୍ତ ମଝିରେ, ଯେଉଁଠି କାଉକୋଇଲିର

ସବ ନାହିଁ, ସେଠି ନନ୍ଦଞ୍ଚ ଥୁଇ, ସେଠି କୁତ୍କୁ କୁତ୍କୁ ହୋଇ ବହି ଯାଉଛି ପାହାଡ଼ୀ ଝରଣାଟିଏ, ତାର କୂଳରେ ନିତ ସକାଳେ ଗାଧୋଇ ସାର, ପିଠି ଉପରଯାକ ଭିଜା ବାଳ ଲମ୍ବାଇ, ଯେଉଁ ସାହାଡ଼ାସୁନ୍ଦରୀ ବସିଥାଏ, ଯାହାକୁ ଦିନେ ଗୋଟାଏ ଅସୁର କାନ୍ଧରେ ବସାଇ ତାର ଅନ୍ଧାରୁଆ କଳାସନ୍ଥ ପର କଟି କଟି ଅନ୍ଧାରୁଆ ଗୁମ୍ଫା ଭିତରକୁ ଝିକିନେଇ ଯାଇଥିଲା, ଅସୁରମାନଙ୍କର ଗୁମ୍ଫା ଭିତରୁ ସେହି ସାହାଡ଼ାସୁନ୍ଦରୀକୁ ଯେଉଁ ମଣ୍ଟୁ ଅବହେଳାରେ ଫେରାଇ ଆଣିପାରେ···ତା' କଥାରେ ପୁଣି ସନ୍ଦେହ ?

ଜମି ପଟ୍ଟନାୟକ, ଦେବାଶିଷ ଓ ଆଉର ଦଳେ ସ୍କୁଲକଡ଼େ ବେଡ଼ି, ଲଜେନ୍ସ ଚୁଷି ଚୁଷି, ଏହି ସ୍ୱାଦ୍ୟ ବିତର୍କ ଶୁଣୁଥିବା ପିଲାମାନଙ୍କର ସେ କି ଅଟ୍ଟହାସ !

ଆଶ୍ଚର୍ଯ୍ୟ···ଚଢ଼େଇମାନଙ୍କର ମାମୁଁଘର କେହି ଦେଖି ନାହାନ୍ତି; ମାମୁଁଘର ଥିବା ସୁଦ୍ଧା କେହି ଶୁଣି ନାହାନ୍ତି !

ବାପା ମଣିଷନ୍ତି, ଯେପରି ଦୁଇ ଓଠ ମଝିରେ ପାଇପ୍‌ର ବେଣ୍ଟ ଗୃପିଧରି କଥା କହନ୍ତି, ମଣ୍ଟୁ ସେହିପରି ପେନ୍‌ସିଲ୍‌ଟା ଦୁଇ ଓଠ ମଝିରେ ଗୃପିଧରି କହିଲା···'ବ୍ଲୁ ବ୍ଲଡ଼ ଫୁଲ୍" !

ବ୍ଲଡ଼ ଫୁଲ୍ ! ବେଖା ଫିହ ବ୍ଲଡ଼ ଫୁଲ୍ ?

ତା'ପରେ ମୁଷ୍ଟିଯୁଦ୍ଧ ଓ ରକ୍ତପାତ !

ଯୁଦ୍ଧ ଓ ରକ୍ତପାତର ସମ୍ବାଦ ପାଇ ଘଟଣାସ୍ଥଳରେ ପହଞ୍ଚିଗଲେ ମିସୀ ( ମିଷ୍ଟ୍ରେସ୍ ) । ଗୋଟାଏ ହାତରେ ମଣ୍ଟୁର କାନ ଓ ଅନ୍ୟ ହାତରେ ଦେବାସିଂହର ଡେଣା ଧରି, ମିସୀ କ୍ଲାସ୍‌କୁ ନେଇଦେଲେ, ସେ କି ଲଜ୍ଜ୍ୟା, କି ଅପମାନ, କି ଯନ୍ତ୍ରଣା !

ମାତ୍ର ମୁଷ୍ଟିଯୁଦ୍ଧର କାରଣଟା କିଏ ବା ଏତେବେଳଯାଏ ମନେ ରଖିଛି ? ମିସୀ ପଚାରିବା ସଙ୍ଗେ ସଙ୍ଗେ କହି ଦେଇ ପାରିବ ? କିନ୍ତୁ ବିନା କାରଣରେ ଏପରି ମୁଷ୍ଟିଯୁଦ୍ଧ, କାରଣ ଘଟିତ ମୁଷ୍ଟିଯୁଦ୍ଧ ଠାରୁ, ଆଉରି ମାରାତ୍ମକ ଯେ ! ଗୋଟିଏ ଗାଲରେ ଚଟକଣା ବସିଲେ, ଆଉ ଗାଲଟି

ଏକାନ୍ତ ଆଜ୍ଞାବଦ୍ଧ ପର ଦେଖାଇଦେବା ଯେଉଁ ଶିକ୍ଷାପ୍ରବଚନର ଆଦର୍ଶ, ସେଠାରେ ପୁଣି ଏପରି ହିଂସାଦଷ୍ଟିତ ବ୍ୟାପାର ?

ମଣ୍ଟୁ ଉପରେ ରୁଲ୍ ବାଡ଼ିରେ ଗୃଣ ପାହାର·········

ଯେ ହେତୁ ଦାନ୍ତ ଲଗାଇ, ପଶୁ ପରି କାମୁଡ଼ିବା ଏକ ହିଂସ୍ର ପଶ୍ଵାଚ୍ଚର, ବେଣୀସିଂହ ଉପରେ ଛଅ ପାହାର !

କିନ୍ତୁ ମଣ୍ଟୁ ପ୍ରଥମେ 'ବ୍ଲଡ଼ ଫୁଲ୍' ଗାଳି ଦେଲା ଯେ !

ବେଣୀସିଂହର ଲୁହଟିଣା ଅଭିଯୋଗ !

ଚଡ଼େଇମାନଙ୍କର ମାମୁଁଘର ନାହିଁ ବୋଲି ବେଣୀସିଂହ କହିଲା କାହିଁକି ?·· ମଣ୍ଟୁର ସଫେଇ !

ପୁଣି ସପାତ୍ ସପାତ୍ ରୁଲ୍ ମାଡ଼ର ପୃଷ୍ଠଭୂମିରେ, ଚପାହସ, ଖିଲ୍ ଖିଲ୍ ହସ·····ଲଜ୍ଜାରେ ମାଟିରେ ମିଶିଯିବା ପରି ବ୍ୟାପାର !

ଚଡ଼େଇମାନଙ୍କର କଣ ସତରେ ତା'ହେଲେ ମାମୁଁଘର ନାହିଁ ? ସେମାନେ ରାତିରେ ମାମୁଁଘରକୁ ଯାଆନ୍ତି, ପୁଣି ସକାଳେ କଣ କାଠଚମ୍ପା ଗଛର ଡାଳକୁ, ବୋଗେନ୍‌ଭେଲିଆର ବୁଦା ଭିତରକୁ, ସାବୁଜା ଘାସ ପଡ଼ିଆ ଉପରକୁ ଉଡ଼ି ଆସନ୍ତି ନାହିଁ ?

ତା' ହେଲେ ଅବଦୁଲ୍ କଣ ମିଛ କହିଥିଲା ? ପୁରୁଣା ଦିନର ଗୋଟିଏ ନିର୍ଭର ବିଶ୍ୱାସ ଉପରେ ସନ୍ଦେହ ଓ ଅବିଶ୍ୱାସର ପରଳ ମାଡ଼ି ଆସୁଅଛି !

ଆଜି ଅବଦୁଲ୍ ସୁଦ୍ଧା ନାହିଁ । ସେଇ ଏକା ଦେଇ ପାରିଥାନ୍ତା ଏହି ସନ୍ଦେହର ମୀମାଂସା; ମାତ୍ର ଅବଦୁଲ୍ ଆଜି ଆଉ ନାହିଁ । ସେ ବି କାଳେ ଆଉ ଫେରିବ ନାହିଁ । ସେ' ବି ଚୁଆଡ଼େ ଗୁଲି ଗଲା ସେଇଠାକୁ, ଯେଉଁଠାରୁ କେହି ଆଉ କେବେ ଫେରନ୍ତି ନାହିଁ !

ସେଇ ମଣିଷଟି ଅବଦୁଲ୍···ତାକୁ ଆଜି ମନେ ପକାଇହୁଏ ଦରପାଚିଲା ମୋଟା ନିଶରେ, ଗମ୍ଭୀର ଗାରଟଣା ମୁହଁରେ, ବଡ଼ ନୋହିଲେ

ବାପାଙ୍କ ସିଗାରେଟ୍ ଟିଣରୁ ଅବଦୁଲ୍‌କୁ ଲାଞ୍ଚ ଦେବା ଉଦ୍ଦେଶ୍ୟରେ, ଶେଷ ହୋଇଥିବା ସିଗାରେଟ୍ ଟଣାରେ, ଚଢ଼େଇ ଧରି ଆଣିଦେବାର ନାନା ପ୍ରତିଶ୍ରୁତିରେ, ଆଉ "ଛୋଟ ସାହେବ" "ଗ୍ରେଟେଲ୍‌ଲ୍" "ବାବାସାହେବ" ପ୍ରଭୃତି ନାନା ପ୍ରାଣଉଚ୍ଛୁଳା ସମ୍ବୋଧନରେ ।

ଚଢ଼େଇମାନେ ସେମିତି ଆସୁଛନ୍ତି, ଅଁଶା କାଠଚମ୍ପା ଡାଳରେ ନାଚୁଛନ୍ତି...କିନ୍ତୁ ସେଇ ଅବଦୁଲ୍ ଯିଏ କହୁଥିଲା, କେତେ ରକମ ଚଢ଼େଇ ଧରି ଆଣିଦେବ ବୋଲି, ଯିଏ ସତକୁ ସତ ଦିନେ ଗୋଟାଏ ପଞ୍ଜୁରି କେଉଁଠୁ ଆଣି "ଗ୍ରେଟସାହେବ" ଙ୍କ ପଢ଼ାଘର ବାରଣ୍ଡାରେ ଟାଙ୍ଗି ଦେଇଥିଲା, ଆଉ ସେଉଁ ଖାଲିପଞ୍ଜୁରିଟା ଆଜି ସୁଦ୍ଧା ସେମିତି ଖାଲି ଟଙ୍ଗା ହୋଇଛି...ସେଇ ଅବଦୁଲ୍ କୁଆଡ଼େ ଗଲାଣି ! ଚଢ଼େଇମାନେ ଏ ପଞ୍ଜୁରିକୁ ଆଉ ଆସିବେ ନାହିଁ, କି ଅବଦୁଲ୍ ଆଉ ଫେରିବ ନାହିଁ !

*    *    *    *

ଦିନେ କିନ୍ତୁ ମମୀଁ ପାଖକୁ ଆସିଲା, ଗୋଟିଏ ଚଳନ୍ତା ଅଖାବସ୍ତା ପରି, ମଇଳା ଶାଢ଼ୀ ଆଉ କଳା ଓଢ଼ଣାରେ ଢଙ୍କା ଗୋଟିଏ ସ୍ତ୍ରୀଲୋକ— ଅବଦୁଲ୍‌ର ସ୍ତ୍ରୀ । ପଛରେ ଚାରି, ଦଳେ କଳା ଲଙ୍ଗଳା ଛୁଆ...କିଏ ଶାଢ଼ୀର କାନି ଟାଣି ଧରିଛି, କିଏ ହାତକୁ ଜାବୁଡ଼ି ଧରିଛି...ଅବଦୁଲ୍‌ର ସଂସାର, କାହାକୁ ଆଶ୍ରୟ କରି ରହିବା ପାଇଁ ଯେପରି ଅବଲମ୍ବନ ଖୋଜି ବୁଲୁଛି । ଆଉ ସମସ୍ତଙ୍କ ପଛରେ, ଖଣ୍ଡେ ଛିଣ୍ଡା ହାଫ୍‌ପାଣ୍ଟ ପିନ୍ଧି, —କେବେ କେଉଁ ଇଦ୍ ପର୍ବରେ କିଣା କଳା ରଙ୍ଗର ହାଫ୍‌ପାଣ୍ଟ ଉପରେ ଏବେ ପାଉଁଶିଆ ରଙ୍ଗ ବୁଲି ଆସିଲାଣି—ଦେହରେ ଖଣ୍ଡେ ଚିଲା, ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବି ଆସିଥିବା—ଉତ୍ତରାଧିକାରୀ ସୂତ୍ରରେ, ପୈତୃକ ବୋଧହୁଏ—କାମିଜ୍ ଲଟକାଇ, ମୁଣ୍ଡରେ ବାଁଆଡ଼କୁ ଢଳାଇ ଗୋଟାଏ ଟୋପୀ—ରେଲଗାଡ଼ିର ଗାର୍ଡ଼ସାଇବର ଟୋପୀ ପରି ପିନ୍ଧି, ଦାନ୍ତରେ କି ଖଣ୍ଡେ କାଠି କି କୁଟା କାମୁଡ଼ି କାମୁଡ଼ି ଆସୁଥିଲା, ମଣ୍ଟୁଠାରୁ

ବୟସରେ ଦୁଇ କ ତିନିବର୍ଷ ବଡ଼, ମଣ୍ଟୁଠାରୁ ସାମାନ୍ୟ ଡେଙ୍ଗା, ଅବଦୁଲ୍‌ର ଜ୍ୟେଷ୍ଠପୁତ୍ର ଅଜଜ୍ !

ମମୀ ବଗିଚାର ସାବ୍‌ଜା ଭେଲ୍‌ଭେଟ୍‌ର ଗାଲିଚା ପରି, ନରମ ଘାସ-ଲନ୍ ଉପରେ, ଗୋଟିଏ ବେତଚଉକି ପକାଇ, ଅପରାହ୍ଣର ଚେରୁଛା ଖରାରେ ବସି, ବାପାନାମଧାରୀ ସେଇ ମଣିଷଟି ପାଇଁ ସମ୍ଭବତଃ ଗୋଟିଏ ସ୍ୱେଟର ବୁଣୁଥିଲା । ମମୀ ଆଉ ରଙ୍ଗୀନ୍‌ଉଲ୍‌ର ଜଟିଳ ପିଣ୍ଡୁଳା ·····ମଣ୍ଟୁ ପକ୍ଷରେ ବାରମ୍ବାର ଦୁର୍ବୋଧ ରହି ଆସିଲା ।

ମମୀ ଦୁଇ ଓଠ ଭିତରେ ଉଲ୍‌ବୁଣାର ଗୋଟାଏ କଣ୍ଟା ଚୁପିଧରି, ସ୍ୱେଟରର ପ୍ୟାଟର୍ଣ୍ଣ ସମାଲୋଚକର ଏକାଗ୍ର ଦୃଷ୍ଟିରେ ପରୀକ୍ଷା କରୁଥିଲା । ମଣ୍ଟୁ ହଠାତ୍ ଧାଇଁ ଆସି, ମମୀର କୋଳ ଉପରେ ଲମ୍ଫ ଦେଇ ପଚାରିଲା···"ମମୀ, ଏ ସ୍ୱେଟରଟା ମୋ ପାଇଁ ?"

ମମୀ ଅସନ୍ତୁଷ୍ଟ ଭାବରେ ମଣ୍ଟୁକୁ କୋଳରୁ ଠେଲି ଦେଇ କହିଲା··· "ଯାଅ ଏଠୁ, ସବୁବେଳେ ମୋତେ ବିରକ୍ତ ନ କଲେ ଏ ପିଲାଟାର ଶାନ୍ତି ନାହିଁ !"

ମଣ୍ଟୁ ଯେପରି ଅନାହୂତ ଝଡ଼ ପରି ମମୀର କୋଳ ଉପରକୁ ଧାଇଁ ଆସିଥିଲା, ସେହିପରି ପୁଣି ସେଠାରୁ ଧାଇଁ ପଳାଇଗଲା । ଅପରାହ୍ଣର ବିଷଣ୍ଣ ଆଲୋକ ଆଡ଼େ ଚାହିଁ ଏକ ଅବ୍ୟକ୍ତ ଯନ୍ତ୍ରଣାରେ ମଣ୍ଟୁର ଆଖି ଦୁଇଟି ମୁହୂର୍ତ୍ତକ ପାଇଁ ଲୁହରେ ଛଳଛଳ ହୋଇ ଆସୁଥିଲା, ମାତ୍ର ସେତିକବେଳେ ଗୋଟିଏ ଗୁଣ୍ଡୁଚିମୂଷା, ଅକାରଣରେ ଏଣେ ତେଣେ ଧାଇଁ ବୁଲୁଥିଲା । ମଣ୍ଟୁ ସେହି ଗୁଣ୍ଡୁଚିମୂଷା ପଛରେ ଧାଇଁବାର ଉତ୍ତେଜନା ମଧ୍ୟରେ ହଠାତ୍ ଭୁଲିଗଲା ମୁହୂର୍ତ୍ତକ ପୂର୍ବର ସବୁ ବେଦନା, ଯନ୍ତ୍ରଣା ଓ ଅପମାନ । କାହାର ଗୋଟାଏ ରଙ୍ଗୀନ୍ ଗୁଡ଼ି ଛିଣ୍ଡି, ଭାସି ଭାସି ତଳକୁ ଖସି ଆସୁଥିଲା··· ଏଇ ଶିଶୁଗଛ ଡାଳରେ ଖସିବ ପରା; ନା···ଏଇ କୃଷ୍ଣଚୂଡ଼ା ଗଛ ଡାଳରେ···ନା···ଅନ୍ୟ କେଉଁଠି ଯାଇଁ ପଡ଼ିଲା ପରା !

ମଣ୍ଟୁ ଗୁଣ୍ଡୁଆଡ଼କୁ ଚଞ୍ଚଳ ଦୃଷ୍ଟିରେ ଚାହିଁ, ହୋଟରେ ସନ୍ଧାନ କରୁଥିଲା, ଆକର୍ଷଣ ଓ ଉତ୍ତେଜନାର ନୂତନ ଉପକରଣ । ଛୁଣ୍ଡା ଗୁଡ଼ୀ କୁଆଡ଼େ ଉଡ଼ି ଗଲାଣି । ପାଚେରୀ ବାହାରେ, ଦୂରରେ ସେଇ ଛୁଣ୍ଡାଗୁଡ଼ୀଟାକୁ ଧରିବା ପାଇଁ ସମ୍ଭବତଃ ଦଳେ ପିଲାଙ୍କର କୋଳାହଳ ଶୁଭୁଛି । ଗୁଣ୍ଡୁ ଚମ୍ପୁଷାଟା ମଧ୍ୟ କେଉଁଆଡ଼େ ଅଦୃଶ୍ୟ ହୋଇଗଲାଣି । ବଗିଚାର ମାଳୀ—ଅବଦୁଲ୍‌ର ପୁରାତନ ସୁହୃଦ୍—ମଇଳା ଶାଢ଼ୀ ଆଉ କଳା ଓଢ଼ଣାରେ ଢଙ୍କା, ଚଳନ୍ତା ଅଖାବସ୍ତା ପରି, ସେଇ ସ୍ତ୍ରୀ ଲୋକଟି ଓ ତାପଛରେ ସେଇ କୁଆପଲଙ୍କୁ ମମୀ ପାଖକୁ ଆଣି କହିଲା···"ମା, ଏମାନେ ଅବଦୁଲ୍‌ର ପିଲାପିଲି; ଆପଣଙ୍କ ପାଖକୁ ଆସିଛନ୍ତି । ଆଃ··· ବଚାରା ଅବଦୁଲ୍···ଚାଲିଗଲା···ପଛରେ ଏ ଚୂଙ୍ଗୁଡ଼ଭେଳା ଛାଡ଼ି !"

ସମସ୍ତଙ୍କ ପଛରେ ଛୁଣ୍ଡା ହାଫପାଣ୍ଟ୍, ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବି ଆସିଥିବା ଢିଲା କାମିଜ ଖଣ୍ଡେ ଦେହରେ ଗଳାଇ, ମୁଣ୍ଡରେ ବାଁ ଆଡ଼କୁ ଢଳାଇ ଟୋପି ପିନ୍ଧି, ମଣ୍ଟୁଠାରୁ ସାମାନ୍ୟ ଢେଙ୍ଗା, ସେଇ ଯେଉଁ କଳା କଟ୍ କଟ୍ ପିଲାଟି, ଏଣିକି ତେଣିକି ଚାହିଁ, ସମସ୍ତଙ୍କଠାରୁ ଦୂରଛଡ଼ା ହୋଇ ଆସୁଥିଲା, ତାକୁ ଏକ ସନ୍ଦେହଜନକ ଚରିତ୍ର ଭାବି, ଆଲେ୍‌ସେସିଆନ୍ କୁକୁର ଜମୀ, କୁଆଡ଼ୁ ପ୍ରଚଣ୍ଡ ଗର୍ଜନ କରି ଧାଇଁ ଆସିଲା ।

ଏଇ ନରମ ଘାସ ଶେଯ, ଭେଲଭେଟର ଗାଲିଚା ପରି······ଏଇ ଡାଲିଆ, କ୍ରିସାନ୍‌ଥାମେମ୍, ପିଟୁନିଆ, ଜୁନିଆଁ ଆଉ ଗୋଲାପର ରଙ୍ଗହୋଳି···ଏଇ ସୁସ୍ଥ, ସ୍ୱଚ୍ଛନ୍ଦ ପରିବେଶ···ଏଠି, ନର୍ଦ୍ଦମା ଧାରରେ ଫଙ୍ଗା ଶୁଖିଲା ନାଲିହାଡ଼ ପରି ଏଇ ପିଲା, ପୁଣି ତାର ଏଇ ବିଚିତ୍ର ପରିଧାନ···ଏ ଚୋରର ନିଶ୍ଚୟ, ଡାକୁ ନିଶ୍ଚୟ···ଏହାର ବିଷାକ୍ତ ସ୍ପର୍ଶରେ ଏଇ ସୁନ୍ଦର, ରଙ୍ଗୀନ ପ୍ରାଚୁର୍ଯ୍ୟମୟ ସଂସାର ଜଳିଯିବ ନିଶ୍ଚୟ···ପ୍ରଭୁଭକ୍ତ ଜମୀ, ତାହା ବରଦାସ୍ତ କରିବ କିପରି ? ବେକରେ ବନ୍ଧାଥିବା ଲୁହା ଚେନ୍‌କୁ ତଳେ ଘୋଷାଡ଼ି, କ୍ରୁଦ୍ଧ ଗର୍ଜନ କରି, ସାମ୍ନା ଦୁଇ ଗୋଡ଼ର ପଂଝା ଅଜଣାର କାନ୍ଧ ଉପରେ ରଖି, ତାର ବେକରେ ଦାନ୍ତ ଗଳାଇ ଦେବା ପାଇଁ ଯେପରି, ଜମୀ ଧାଇଁ ଆସୁଥିଲା ।

ମମୀ ଉଦ୍ଭ୍ରାନ୍ତ କଣ୍ଠରେ ଆର୍ତ୍ତନାଦ କରି ଉଠିଲା···ଜମୀ ! ଜମୀ ! ନୋ ଜମୀ—ନୌ—ନୌ ।

ଜମୀ, ସ୍ୱଭାବତ ଇଂରେଜୀ ଭାଷା ବୁଝେ । ଜମୀ ଇଂରେଜ !···

ଜମୀ ଉପରକୁ ଉଠାଉଥିବା ଦୁଇଗୋଡ଼ ତଳେ ରଖି ଠିଆ ହୋଇଗଲା ।

ଅଜଜ୍ କିନ୍ତୁ ଅବିଚଳିତ ଭାବରେ, ଜମୀର ଦୁଇ ଆଖି ଭିତରକୁ ଚାହିଁ ଠିଆ ହୋଇ ରହିଥିଲା···ଗଛପତ୍ରି, ଝୁଣ୍ଟପରି···ସେ ସଂସାରର ବହୁ ଗର୍ଜନ ଶୁଣିଛି, ଭୋକିଲା ପେଟର ମୁନିଆଁ ଦାନ୍ତ ଦେଖିଛି, କାମୁଡ଼ା ରାମ୍ପୁଡ଼ା ମଧ୍ୟ ସହିଛି···ଆଉ, ଏ ତ କୁକୁରଟାଏ ! ହେଉନା ପଛେ ଇଂରେଜୀ କୁକୁର !

ଜମୀ ଅଜଜ୍‌ର ଚାରିପଟେ, ତାକୁ ସୁଂଘି ସୁଂଘି, ଥରେ ବୁଲି, ବଗିଚା ଭିତରେ ପୁଣି ଅଦୃଶ୍ୟ ହୋଇଗଲା ।

ଅଜଜ୍ ଉଦ୍ଦେଶ୍ୟରେ ମଣ୍ଟୁ ମନେମନେ କହିଲା, "ବ୍ରାଭୋ !" ବଗିଚାର ପଶ୍ଚିମକୋଣରେ, ସେଇ ଉଞ୍ଚା, ଝଙ୍କାଳିଆ ଶିରୀଷ ଗଛଟାରେ, ଆଉଟା ସୁନା ରଙ୍ଗର ଖରାଡ଼ଳା କେଉଁ ଗୋଟାଏ ଡାଳରୁ, କ ଗୋଟାଏ ଚଢ଼େଇର ଏକଟଣା ଡାକପରେ ସେହି ଗ୍ରୀଷ୍ମଦିନଙ୍କା ଅପରାହ୍ଣ ଯେପରି ଆହୁରି ଗମ୍ଭୀର ଓ ବିଷର୍ଣ୍ଣ ହୋଇଗଲା ।

କ ଚଢ଼େଇ ଏଟା କେଜାଣି ?

କିନ୍ତୁ ସେଇ ଅତି ଦୂର, ସୁଦୂରର, ସାତସମୁଦ୍ର ତେରନଦୀ ପାରିର, ସେଇ ବିଚିତ୍ର ସାହାଡ଼ାସୁନ୍ଦରୀ ଦେଶର ରହସ୍ୟମୟ ବାର୍ତ୍ତା ଯେପରି ବାହିତ ହୋଇ ଆସିଛି, ଏଇ ନିଃସଙ୍ଗ ପକ୍ଷୀଟାର ଏକଟଣା ଡାକପରେ ।

କିନ୍ତୁ କାହିଁ ସେହି ଗ୍ରୀଷ୍ମଦିନଙ୍କା, ବିବର୍ଣ୍ଣ, ବିଷର୍ଣ୍ଣ ଅପରାହ୍ଣ···ବଡ଼ ମାମାଙ୍କ କୁଞ୍ଚକୁଞ୍ଚିଆ ରେଖାଟଣା ମୁହଁ ପରି···ମମତାମୟ ଅଥଚ ଶୀତଳ; ଏଠି ସକାଳର ହେମାଳିଆ ଗ୍ରାଇ···ଏଠି ସ୍ୟାଇଡଳା, ପାଠପଢ଼ା ଟେବୁଲ୍, ବାପାଜାମାଆଗ ମଣିବନ୍ଧିର ମୁହଁପରି, ଅକାରଣରେ ଗମ୍ଭୀର······ହସ୍ତାକ୍ଷର

ଖାତାର ସ୍ୟାଇବୋଳା ପୃଷ୍ଠା···ଏଠି, ମିଶାଣ ଫେଡ଼ାଣ, ଗୁଣନ ଓ ହରଣର ନାନା ଦୁର୍ବୋଧ ଅଙ୍କ···ଏଠି ଜଡ଼ତା, ଅବସାଦ ଓ ଗ୍ଲାନି···ଏଠି ବାପାଙ୍କ ଚୁରୁଟର ଧୂଆଁ ଆଉ ଖବରକାଗଜର ପୃଷ୍ଠା ଲେଉଟାଇବାର ଶବ୍ଦ !

ପଢ଼ା ଟେବୁଲ୍‌ର ଦରାଜ ଭିତରେ ପଡ଼ିଛି, ଏଇ ରବର ବାଟୁଳୀ-ଖଡ଼ା ···ଅଜୟ୍ ଆଣି ଦେଇଥିବା ନୂତନ ଅସ୍ତ୍ର । କେତେ ଦୁର୍ଦ୍ଧର୍ଷ ଡକାୟତ, କେତେ ମଣିଷଖିଆ ରାକ୍ଷସ, କେତେ ମହାବଳ ବାଘକୁ ଏଥିରେ ଅକ୍ଳେଶରେ ଶୀକାର କରାଯାଇ ପାରିବ ବୋଲି ଅଜୟ୍‌ର ନିର୍ଭର ପ୍ରତିଶ୍ରୁତି, ମଣ୍ଟୁବାବୁଙ୍କ ରଙ୍ଗୀନ୍ ପରଲଗା କଳ୍ପନାରେ ବହୁବାର ନିତ୍ୟନୂତନ ସଫଳତା ଅର୍ଜନ କରିଅଛି । ଆଲୁଅର ଚୂନଲିପା ଏଇ ସକାଳରେ, ଏଇ ଅସ୍ତ୍ର ଧରି ବାହାରି ପଡ଼ିବାକୁ ମନ ଚଞ୍ଚଳ ହୋଇଉଠେ ସ୍ୱପ୍ନର ମୃଗୟାରେ······କିନ୍ତୁ ଏଠି ପଢ଼ାଘରର କାନ୍ଥସବୁ ଠିଆ ହୋଇଛି, ଅସୂର-ଗୁମ୍ଫାର ପ୍ରହରୀ ପରି !

ମାଝ କାରାବନ୍ଧନରେ ଏଇ ଶୀତଳ ଅଥବା ନୀରବତାର ଊର୍ଦ୍ଧ୍ୱରେ କେଉଁଠି କେଉଁ ଗଛର କେଉଁ ଡାଳରେ, ଅଦିନ କୋଇଲିର ଏ କୁହୁଧ୍ୱନି ?

ହାତରେ ବାଟୁଳୀଖଡ଼ା ଧରି ମଣ୍ଟୁ ଟେବୁଲ୍ ପାଖରୁ ଖୋଲା ଝରକା ପାଖକୁ ଉଠିଆସିଲା । ଅଜୟ୍ ଏକା, ପକ୍ଷୀମାନଙ୍କର ସ୍ୱର ଏପରି ଅବିକଳ ନକଲ କରିପାରେ । ରାସ୍ତାର ଅଜୟ୍, ଆଉ ପଢ଼ାଘରର ନିଶ୍ୱାସ-ରୁଦ୍ଧା ନିସ୍ତବ୍ଧତା ମଧ୍ୟରେ ମଣ୍ଟୁ···ଦୁହିଙ୍କ ମଧ୍ୟରେ ଯୋଗସୂତ୍ରର ଏହା ଏକ ସାଙ୍କେତିକ ଭାଷା !

ଏଇ ଯେ ଅଜୟ୍···

ପାଚେରୀ ପାଖକୁ ଲାଗି, ଡାଳପତ୍ର ମେଲି, ଦେହ ବଙ୍କାଇ, ବାଡ଼୍‌ନା ଭୂତ ପରି ଠିଆ ହୋଇଥିବା କୃଷ୍ଣଚୂଡ଼ା ଗଛର ଦୋକେନା ଉପରେ ଏଇ ଯେ ବସିଛି ଅଜୟ୍······

ଖୋଲା ଝରକାବାଟେ ଏଠାରୁ ସ୍ପଷ୍ଟ ଅଜୟଙ୍କୁ ଦେଖାଯାଏ··· ମୁହଁ ଭିତରେ ଦୁଇଟି ଆଙ୍ଗୁଠି ପୂରାଇ ସିଟି ବଜାଇ ସେ ଅଦ୍ଭୁତ କୋଇଲିର ଅନୁକରଣ କରୁଛି, ମଣ୍ଟୁର ଦୃଷ୍ଟି ଆକର୍ଷଣ କରିବା ପାଇଁ !

ଅଜୟ୍ ମଣ୍ଟୁକୁ ଦେଖି, ଛୁଣ୍ଡା ହାଫ୍‌ପ୍ୟାଣ୍ଟ୍ ପକେଟରୁ ଖଣ୍ଡେ ଲାଲ୍ ରୁମାଲ୍ କାଢ଼ି, ମୁଣ୍ଡ ଉପରେ ହଲାଇଲା······

ସାତତାଳ ଗଭୀର ପାଣିର କଳା ଦରିଆରେ, ନାଗରାଜାର ବନ୍ଦୀଶାଳା ଭିତରୁ, ସଙ୍ଗାତ ମନ୍ତ୍ରୀପୁଅକୁ ମୁକୁଳାଇବା ପାଇଁ, ବିକ୍ଷିପ୍ତ ସଙ୍ଗାତ ସାଧବପୁଅ ଅଜୟ୍ ବାହାରିଥିଲା ବୋଇତରେ ପାଲ ମେଲି। ବୋଇତ ଭାଙ୍ଗିଗଲା, ଗୋଟିଏ ପ୍ରବାଳଦ୍ୱୀପରେ ଧକ୍କା ବାଜି । ଚାରିଆଡ଼େ ଦରିଆର ଅଥଳ ପାଣି ଆଉ ଲହରୀର ଗର୍ଜନ । ଜନମାନବର ଚିହ୍ନ ନାହିଁ । ଚାରିଆଡ଼େ ଖାଲି ସୁ-ସୁ-ପବନ, ଲହରୀର ଗର୍ଜନ ଆଉ କଳା ମେଘ ପରି ପ୍ରକାଣ୍ଡ ଚଢ଼େଇମାନଙ୍କର ଡେଣାର ଗୁଞ୍ଜ । ସକାଳେ ନାଲି ଟହଟହ ସୂର୍ଯ୍ୟ ଦରିଆକୋଳରୁ ଆକାଶକୁ ଡେଇଁପଡ଼ନ୍ତି···ଦିନାନ୍ତରେ ପୁଣି ଫେରି ଆସନ୍ତି କ୍ଳାନ୍ତ ସୂର୍ଯ୍ୟ, ଧୂସରିତ ଆକାଶକୋଳକୁ, ଖେଳ-ବାହୁଡ଼ା ଶିଶୁଟି ପରି ! ତାପରେ ପୁଣି ନିତିଂକାଳର ରୂପକଥାର ରାତି, ଝିକିମିକି ତାରା···ମନପବନ ଘୋଡ଼ାରେ ଉଡ଼ି ଚଳାଇଥିବା କେଉଁ ରାଜକୁମାର ପଛରେ ବୁଣିଯାଇଥିବା ସୋରିଷର ଅସୁମାରି ଫୁଲ ପରି ! ଛୋଟକୋଠରେ ମାଙ୍କଡ଼ପୁଅର ପ୍ରାଣ ଯିବା ପରି । ଏଣେ ସେଉଁ ମାଲୁଣୀ ବୁଢ଼ୀ, ଦୁଇ ସଙ୍ଗାତଙ୍କୁ ଦେଇଥିଲା ନାଗକନ୍ୟାର ସନ୍ଧାନ, ତାରି ଘରେ ଦୁଇ ସଙ୍ଗାତଙ୍କ ପ୍ରତୀକ୍ଷାରେ ବସିବସି, ରାଜାପୁଅ ଦିନେ ମଧ୍ୟ ବାହାରି ପଡ଼ିଲା, ଦୁଇ ସଙ୍ଗାତଙ୍କ ସନ୍ଧାନରେ । ପେନ୍ଥା ପେନ୍ଥା ଶିମିଳୀତୁଳା ପରି ଭାସି ବୁଲୁଥିବା ଖଣ୍ଡ ଖଣ୍ଡ ଧଳାମେଘର ଗହଳି ଭିତରେ, ମନପବନ ଘୋଡ଼ାରେ ଉଡ଼ି ଯାଉଁଯାଉଁ ରାଜାପୁଅ ଦେଖିଲା, ଅଥଳ ଦରିଆ ମଝିରେ, ସେଇ ପ୍ରବାଳଦ୍ୱୀପ ଉପରେ ସାଧବପୁଅ ଠିଆ ହୋଇ, ଦେହର ଉତ୍ତରୀ କାଢ଼ି ପବନରେ ହଲଉଛି ! ଏ ଯେ, ସାଧବପୁଅ ସଙ୍ଗାତ···ରାଜାପୁଅର ମନପବନ ଘୋଡ଼ା ଡେଣା ନୁଆଇଁ ଓହ୍ଲାଇ ଆସିଲା ପ୍ରବାଳଦ୍ୱୀପ ଉପରକୁ !

କୃଷ୍ଣଚୂଡ଼ା ଗଛର ଏଇ ଦୋକେନାଟା ସେଇ ପ୍ରବାଳ ଦ୍ୱୀପ··· ଆଉ ଅଜଜ୍, ଦ୍ୱ ଖପ୍ନ ସଙ୍ଗୀତ ସାଧବପୁଅ !

କୃଷ୍ଣଚୂଡ଼ା ଗଛର ଦୋକେନା ଉପରେ ଠିଆହୋଇ, ଅଜଜ୍ ଝଣ୍ଡେ ଲାଲ୍ ରୁମାଲ୍ ହଲାଉଛି, ମଣ୍ଟୁର ଦୃଷ୍ଟି ଆକର୍ଷଣ କରିବା ପାଇଁ··· ବାହାରେ ଅଗଣିତ ପକ୍ଷୀ କଣ୍ଠରେ ରୂପ ପରିଗ୍ରହ କରିଥିବା ଏଇ ସ୍ୱଚ୍ଛ, ସୁନ୍ଦର, ପ୍ରାଣ-ଚଞ୍ଚଳ ସକାଳର ଉଦ୍‌ବେଳ ଆହ୍ୱାନ, ଯେପରି ଅଜଜ୍‌ର ଲାଲ ରୁମାଲ୍‌ରେ ମୁଖର ହୋଇ ଉଠୁଛି !

*   *   *   *

ବାହାରେ, ପଡ଼ାଘର ବାରଣ୍ଡାରେ, ଆରାମଚଉକୀ ଉପରୁ ଖବର-କାଗଜ ପୃଷ୍ଠା ଓଲଟାଇବାର ଶବ୍ଦ ଆଉ ଶୁଭୁନାହିଁ । ମଣ୍ଟୁ ଥରେ, ସନ୍ତର୍ପିତ ପାଦରେ ଭୁକିମାରି ଦେଖିଆସିଲା···ଆରାମ ଚଉକୀ ଉପରେ ଖବରକାଗଜର ପୃଷ୍ଠା ତଳୁ, ବାପାଙ୍କ ନାକ ଘଁ ଘଁ ଡାକୁଛି । ପାଖରେ, ଆସ-ଟ୍ରେ ଉପରେ ଚୁରୁଟ୍‌ଟା ଜଳିଜଳି ନିଭିଗଲାଣି; ପୋଡ଼ା ପାଉଁଶର ପାଉଁଶିଆ ଅଂଶଟା କେବଳ, ଆସ୍-ଟ୍ରେ ଉପରେ ଲାଗି ରହିଛି ।

ମଣ୍ଟୁ ଶଲ ପରି ତଳକୁ ଧାଇଁ ପଳାଇଗଲା । ଧାଇଁବାରେ ମଣ୍ଟୁର ଏକ ନିଜସ୍ୱ ରୀତି ଅଛି; ଅଜଜ୍ ଠାରୁ ତାହା ଆହୃତ—ତାହା ହେଉଛି, ନିଜକୁ ଏକ ଚଳନ୍ତା ରେଳଗାଡ଼ି ରୂପେ କଳ୍ପନା କରି, ଓଠରେ ଶୁ··· ଶୁ··· ସିଟୀ ଦେଇ, ହାତକୁ ରେଳଚକ ପରି ପବନରେ ଦୂରାଇ, ଧାଇଁବା ! ଏ ତ ସକାଳ ନୁହେଁ···ଏ ଆଲୁଅର ସମୁଦ୍ର···ଆଉ ମଣ୍ଟୁ ତ ମଣ୍ଟୁ ନୁହେଁ, ମନପବନ ଘୋଡ଼ା ଉପରେ ଆଲୁଅର ଡେଣା ମେଲି ଆକାଶରେ ଉଡ଼ି ଯାଉଥିବା ରାଜପୁତ୍ର···ମନପବନର ଘୋଡ଼ା କିନ୍ତୁ ଆକାଶରେ ଉଡ଼ିଲାବେଳେ ଏପରି ଶବ୍ଦ କରେ କି ନାହିଁ କେଜାଣି ? ଆଉ ବାପାନାମଧାରୀ, ଆରାମଚଉକୀ ଉପରେ ଢ଼ଳେଇ ପଡ଼ିଥିବା, ଏଇ ମଣିଷଟି···କାହାଣୀର ଅସୁର···ଗୁମ୍ଫା ମୁହଁରେ ଜଗି ବସିଛି !

ବଗିଗୁଡ଼ୁକୁ ଧାଇଁ ପଳାଇଗଲା ବେଳେ, ମଣ୍ଟୁର ଚିତ୍କାର ଓ ଶବ୍ଦ ଶୁଣି ମମୀଁର ଡାକ ଶୁଭିଲା···"ମଣ୍ଟୁ···ଏସ୍ସ ମଣ୍ଟୁ" !

କିନ୍ତୁ ମଣ୍ଟୁ କାହିଁ ? ଏଇ ଦରମଇଳା ଲେଗ୍ଗକୋଟ୍ସ ଅଧା ପ୍ୟାଣ୍ଟ, ଆଉ ପାଚିଲା ଉଲ୍‌ର ଖଣ୍ଡେ ପୁଲ୍‌ଓଭରପିନ୍ଧା, ଖାଲି ପାଦରେ, ଉନ୍ମାଦ ପରି ଶବ୍ଦ କରି ଧାଇଁଥିବା ପିଲାଟି ତ କନ୍‌ଭେଣ୍ଟ ଷ୍ଟାଣ୍ଡାର୍ଡ଼ 'ଥ୍ରୀ'ର ମଣ୍ଟୁ ନୁହେଁ···ଏ ସଂଦାଡ଼ାସୁନ୍ଦରୀ, ମାଲ୍ଲାଣୀ ବୁଢ଼ୀ, ନାଗକନ୍ୟା, କଲାଦ୍ରୁମର ସାତତାଳ ପାଣିର ଅଥଳ ଦରିଆ ଆଉ ପ୍ରବାଳଦ୍ୱୀପ ଦେଶର ରାଜକୁମାର !

ମଣ୍ଟୁକୁ ଦେଖି ଅଜିତ୍ କୃଷ୍ଣଚୂଡ଼ାଗଛର ଦୋକେନା ଉପରୁ ତଳକୁ ଡେଇଁ ପଡ଼ିଲା !

ଊର୍ଦ୍ଧ୍ୱଶ୍ୱାସ ହୋଇ ଅଜିତ୍ ପଚାରିଲା—

···"ମଣ୍ଟୁବାବୁ, ଯିବ ?"

ମଣ୍ଟୁ ପଚାରିଲା···"କୁଆଡ଼େ" ?

ଅଜିତ୍ କହିଲା·· "ଚଢ଼େଇ ଧରିବ ପରା ? ମୁଁ ବଣି ଚଢ଼େଇର ବସା ଦେଖିଆସିଛି । ତା' ଭିତରେ ଅନେକ ବଣିଛୁଆ !"

ମାଲ୍ଲାଣୀ ବୁଢ଼ୀ ଠାରୁ ନାଗଜେମାର ବାର୍ତ୍ତା ଅପେକ୍ଷା, ଏ'ତ ଆହୁରି ଉତ୍ତେଜକ ! ଏଇ ବାର୍ତ୍ତାଟି ଦେବା ପାଇଁ ଅଜିତ୍‌ର ଧୈର୍ଯ୍ୟ ନଥିଲା । ମଣ୍ଟୁ ଠାରୁ କୌଣସି ଉତ୍ତରର ପ୍ରତୀକ୍ଷା ନରଖି, ଅଜିତ୍ ଅସୁର-ମାନଙ୍କ ବଚ୍ଛୁଧିରେ ଘୁଞ୍ଚିର ସାଙ୍କେତିକ ଧ୍ୱନି, "କଡ଼୍‌ଦକ୍"···"କଡ଼୍‌ଦକ୍" ···ଶବ୍ଦ କରି, ବଗିଚା ବାହାରକୁ ଧାଇଁ ପଳାଇଗଲା । ତା' ପଛେ ପଛେ ଅନୁରୂପ ଶବ୍ଦ କରି, ମଣ୍ଟୁ ମଧ୍ୟ ଧାଇଁ ବାହାରିଗଲା, ଅଣନିଶ୍ୱାସୀ ହୋଇ !

*　　　*　　　*　　　*

କେଉଁଠି କେଉଁ ଅପନ୍ତସରେ ଦନ୍ତା ଅସୁରମାନଙ୍କ ବିରୁଦ୍ଧରେ ରଚିତ ହୋଇଛି, ସେ ରଣକ୍ଷେତ୍ର କେଜାଣି ? ନାଗ ରାଜକନ୍ୟା ପୁଣି, କେଉଁ ଅନ୍ତଃପୁରର ଗବାକ୍ଷରେ, ଫୁଲମାଳା ଧରି, ରାଜପୁତ୍ର ରାଜପୁତ୍ରର ଅପେକ୍ଷା କରି ବସିଛି କିଏ ଜାଣେ ? କେଉଁ ମାଲୁଣୀର କି ମନ୍ତ୍ରରେ, ସେ ରାଜପୁତ୍ର ଦନ୍ତାଦନ୍ତା ଅସୁରଦଳଙ୍କୁ ଜୟ କରିବାର ଶକ୍ତି ଆହରଣ କରିଛି, ସେ କଥା ପୁଣି କିଏ କହିବ ?

ଏ’ ତ ରାସ୍ତା ନୁହେଁ···ଅରଣ୍ୟ !

ରାସ୍ତା ଦୁଇପାଖରେ ଏ ଉଚ୍ଚା ଉଚ୍ଚା କୋଠା, ଆଉ ଶହଶହ ପରି ଦିଶୁଥିବା ବଙ୍ଗଳାଗୁଡ଼ାକ ତ ଇଟା ସିମେଣ୍ଟର ଘର ନୁହେଁ···ଉଚ୍ଚା ଉଚ୍ଚା ପାହାଡ଼ ପର୍ବତ···ଏ ବିଦ୍ୟୁତ୍‌ଖୁଣ୍ଟଗୁଡ଼ାକ ତ ବିଦ୍ୟୁତ୍‌ଖୁଣ୍ଟ ନୁହେଁ, ଶାଳବଣୀ···ରାସ୍ତା କଡ଼େକଡ଼େ ଧାଇଁଥିବା, ଯୋଳେଇ ପଡ଼ିଥିବା ଏ ଯାଦ ଦୁଇଟି ତ ପାଦ ନୁହେଁ, ମନପବନ ଘୋଡ଼ାର ରଙ୍ଗୀନ୍ ଡେଣା ·· ଆଉ ରାଜମହାଣୀ ଛକରେ ସେ ଗୋଲେଇଟା, ଯାହା ଉପରେ ଟ୍ରାଫିକ ପୋଲିସ୍ ଠିଆ ହୋଇଛି, ସେ’ ଟା କଣ ପ୍ରବାଳର ଦ୍ୱୀପ ?

କେତେ ଦୂରରେ କେଜାଣି ?

ଦୂରତ୍ୱ ଏଠି ଅର୍ଥହୀନ । ଏଠି କ୍ଷୁଧା ନାହିଁ, କ୍ଳାନ୍ତି ନାହିଁ, ଭୟ ନାହିଁ···ଏଠି କେବଳ ସ୍ୱପ୍ନର ମୃଗୟା···

*　　　*　　　*　　　*

କାହାର, କେବେକାର, ଗୋଟାଏ ଭଙ୍ଗା, ପରିତ୍ୟକ୍ତ କୋଠା; ତା ଗୁହପଟେ ଝାଉଁ, ତେନ୍ତୁଳ, ଆମ୍ବ, ପଣସ, ପିଜୁଳି, ଜାମୁ ପ୍ରଭୃତି

ନାନା ଗଛର ଗୋଟାଏ ଅରଣ୍ୟ । ଏହି ଖର୍ବାକୃତି ଗଛଗୁଡ଼ିକର ଶୀର୍ଷକୁ ଅତିକ୍ରମ କରି, ଗୋଟାଏ ଡେଙ୍ଗା ଇଉକାଲିପଟସ୍ ଗଛ ଠିଆ ହୋଇଛି, ଦୁଇଟା ଥୁଣ୍ଟା ପ୍ରଶାଖା ମେଲି ।

ଗାଈରଖୁଆଳି ପିଲମାନେ ଏଠି ଗାଈ ଚରାନ୍ତି । ସେଇମାନଙ୍କର ଡାଳିମାକୁଣ୍ଡି ଖେଳରେ ଏଇ ନିର୍ଜନ କୋଣଟା ମୁଖରିତ ହୋଇ ଉଠେଛି । ପତ୍ରଗହଳି ଭିତରେ ଗୁଣି ହୋଇ, ତଳେ ଝରି ପଡ଼ିଥିବା ଖରା, ଦେହକୁ ଏକ ଉତ୍ତେଜନାରେ ଥରାଇ ଦେଉଛି । କେତେ ବିଚିତ୍ର ପକ୍ଷୀର କଳଧ୍ୱନିରେ, ଏକ ଅଳସ ମଧ୍ୟାହ୍ନର ମର୍ମ-ସଙ୍ଗୀତ ଏଠାରେ ଯେପରି କୁହରିତ ହୋଇ ଉଠୁଛି ।

ଏଇ କଣ କାହାଣୀରେ ଶୁଣା ପାହାଡ଼ାସୁନ୍ଦରୀର ଦେଶ ?

କୋଣଟାର ଗୋଟାଏ ପାଖରେ; ଦଳ ଓ ଶିଉଳୀଭରା ପୋଖରୀଟିଏ । ହୁଡ଼ା ଉପରକୁ ଗୋଟାଏ ଝଙ୍କାଳିଆ ସାହାଡ଼ାଗଛ ଠିଆ ହୋଇଛି । ଅଜୟ୍ ଓ ମଣ୍ଟୁ ଦୁହେଁ, ପୋଖରୀ ହୁଡ଼ା ଉପରେ, କେବେକାର ଗୋଟାଏ ଭଙ୍ଗାବୃନ୍ଦାବନ ଉପରେ ବସିପଡ଼ିଲେ ।

ଭଙ୍ଗାକୋଠାର ପଛପଟେ ଆମ୍ବତୋଟା ଆଡ଼ୁ କି ଗୋଟାଏ ପକ୍ଷୀର ଚିତ୍କାର, ଶାଗୁଆ କୁହୁଡ଼ିର ମଧ୍ୟାହ୍ନର ସ୍ତବ୍ଧତାକୁ ମାରିଚାଲୁଛି ହୃଦାର୍ଦ୍ଧ୍ର କରି ଦେଉଥିଲା ।

ଅଜୟ୍ କହିଲା··"କାଠକଟା ଚଢ଼େଇ ଏଟା !"

ତାପରେ ଆଉ ଏକ ପକ୍ଷୀର ବିଚିତ୍ର ବିଳାପରେ ସେହି ନିର୍ଜନ ଭୂମି, ପୋଖରୀ ହୁଡ଼ା, ଉପରର ସାହାଡ଼ାଗଛ, ଭଙ୍ଗା ବୃନ୍ଦାବନ, ପୋଖରୀ ଭିତରେ ଶିଉଳୀ ଆଉ ଦଳର ଅନାବନା, ରଙ୍ଗୀନ ଫୁଲ, କି ଏକ ଅବ୍ୟକ୍ତ ବେଦନାରେ ଯେପରି, ବିଳାପ କରି ଉଠିଲା ।

ଅଜୟ୍ କହିଲା···"କାପ୍ତା ଚଢ଼େଇ ଏଟା !"

ମାହାଡ଼ାସୁନ୍ଦରୀ ଦେଶର ରଚିତ ସ୍ୱପ୍ନସଙ୍ଗୀତ······

କିନ୍ତୁ ସାହାଡ଼ାସୁନ୍ଦରୀ କାହିଁ ?

କାହିଁ ଚାର ଅଣ୍ଟା ପର୍ଯ୍ୟନ୍ତ, ପିଠି ଉପରେ ଲମ୍ବି ଆସିଥିବା, ଭିଜାବାଳ ?

ବନ୍ଧହୁଡ଼ା ଉପରେ ସାହାଡ଼ାଗଛ ତଳେ ଏଠି ଖସି ବିଞ୍ଚି ହୋଇ ପଡ଼ିଛି । କିନ୍ତୁ ପିଠି ଉପରେ ଭିଜାବାଳ ଲମ୍ବାଇ, କାହିଁ କୈଶୋରର ଧ୍ୟାନମୂର୍ତ୍ତି··ସେହି ସାହାଡ଼ାସୁନ୍ଦରୀ ?

ଭଙ୍ଗାଗୃହଟିମ କଡ଼ରେ, ପଥର ପାହାଚ ଉପର ଦେଇ, ଗୋଟିଏ ପଚିସାଉଁଟାଳି ବୁଢ଼ୀ, ମୁଣ୍ଡ ଉପରେ ଗୋଟିଏ ଭଙ୍ଗା ଟୋକାଇରେ କାଠି, କୁଟା, ଶୁଖିଲାପତ୍ର ଭରି, ଗାଧୋଇବା ପାଇଁ ପୋଖରୀ ଭିତରକୁ ଓହ୍ଲାଇଲା । ସାହାଡ଼ାସୁନ୍ଦରୀ···ହସିଲେ ଓଠରୁ ଚାର ମୁକ୍ତା ଝରେ, କାନ୍ଦିଲେ ଆଖିରୁ ମାଣିକ ଝରେ । ସାହାଡ଼ା ଗଛ, କଳାଦୁମର ପାଣିର ବେଣ୍ଟ-ପୋଟରୀ, ଅଳସ ହାଇ ପରି ଲମ୍ବି ଯାଇଥିବା ଖସି···ସବୁ ପଡ଼ି ରହିଛି, ମର୍ମ-ନାୟିକା ସାହାଡ଼ାସୁନ୍ଦରୀର ପ୍ରତୀକ୍ଷାରେ; କିନ୍ତୁ କାହିଁ ସାହାଡ଼ାସୁନ୍ଦରୀ ?

ପିଚାଶୁଣୀ କି ଚିରଗୁଣୀ ପରି ଦିଶୁଥିବା ଏଇ ବୁଢ଼ୀଟା ଏଠି, ବେକ ଠାରୁ ଅଣ୍ଟା ପର୍ଯ୍ୟନ୍ତ ଦେହ ଲଙ୍ଗଳା କରି ପାଣି ଭିତରେ ଠିଆ ହୋଇଛି, ଆଉ ମନକୁ ମନ କାହାକୁ ଯେପରି ଜଣ ଅଭିସମ୍ପାତ ଦେଉଛି ।

ସାହାଡ଼ାସୁନ୍ଦରୀ କଣ ମିଛ ତା' ହେଲେ ?

କିନ୍ତୁ ଏଇ ସାହାଡ଼ାସୁନ୍ଦରୀକୁ ଅବଲମ୍ବନ କରି, ମନର ଗଛ ଦେହରେ, ସ୍ୱପ୍ନର ଅସୁମାରି ଲତା ବେଡ଼େଇ ହୋଇ ଯାଇଥିଲା ଯେ !

ଅଜଜ୍ ହଠାତ୍ ଉଠିପଡ଼ି କହିଲା···"ମଣ୍ଟୁ ବାବୁ, ତୁମେ ପୁଲିସ୍, ମୁଁ ଡକାୟତ୍ । ତୁମେ ମୋତେ ଧରିବା ପାଇଁ ଧାଇଁଛ···ଆସ, · ରେଡ଼ୀ, ଓ୍ୱାନ୍, ଟୁ, ଥ୍ରୀ······"

ଅଜଜ୍ ଓଠରେ ଗୋଟାଏ ହୁଇସିଲ୍ ବଜାଇ, ଆଖି ପିଛୁଡ଼ାକେ କୁଆଡ଼େ ଅଦୃଶ୍ୟ ହୋଇଗଲା ! ମଣ୍ଟୁ, ଅସୁରମାନଙ୍କ ବଚ୍ଛରେ "କଟ୍-ଢକ୍" "କଟ୍-ଢକ୍" ଯୁଦ୍ଧ-ଧ୍ୱନି କରି, ଅଜଜ୍ ପଛେପଛେ ଊର୍ଦ୍ଧ୍ୱଶ୍ୱାସ ହୋଇ ଧାଇଁଲା ।

*　　　*　　　*　　　*

ମଧ୍ୟାହ୍ନର ଝଲ୍ସ ନଇଁ ପଡ଼ିଲାଣି । ଚେର୍ଚ୍ଛା ଖରା, ଆଉ ଲମ୍ବା ଛାଇ ପଡ଼ି, ଏଇ ଭଙ୍ଗା କୋଠା ଆଉ ତା' ଚାରିପଟେ ଅପନ୍ତରା ଚୋଟାଟା, ସତରେ ଦିଶୁଛି ଗୋଟାଏ ଅଗ୍ନାଅଗ୍ନି ବନସ୍ତ ପରି । ଗାନ୍ଧିଆଳ ଟୋକାମାନଙ୍କର ଡାକମାକୁଡ଼ ଖେଳଶବ୍ଦ ଆଉ ଶୁଭୁନାହିଁ । ସେମାନେ କୁଆଡ଼େ ଫେରିଗଲେଣି । ଆମ୍ବ ପଣସର ଚୋଟା ଭିତରୁ ଏଥର କ ଗୋଟାଏ ନୂଆ ଚଢ଼େଇ ଏକ ବିଚିତ୍ର କଣ୍ଠରେ ଡାକ ଉଠାଉଛି । ଆଉ ଅନ୍ୟ ଗୋଟାଏ ଚଢ଼େଇ, ଅନ୍ୟ କେଉଁ ଗଛଶାଖା'ର ଅନ୍ଧାରବୋଳା ଗହଳ ଭିତରୁ, ଯେପରି ତାର ପ୍ରତ୍ୟୁତ୍ତର ଦେଉଛି ।

କାହିଁ ଅଜଜ ?

ଆଉ ସେ ଉକାସୁର ନୁହେଁ ବା ମଣ୍ଟୁ ବନ୍ଧୁକଧାରୀ ପୁଲିସ ନୁହେଁ । ମଣ୍ଟୁ କଣ୍ଠ ଫଟାଇ ଚିତ୍କାର କଲା···ଅଜଜ୍ ··ଅ-ଜ-ଜ୍ ··

କେବଳ ଏକ ଆତଙ୍କ ନୁହେଁ, କ୍ଷୁଧା ଓ କ୍ଳାନ୍ତିରେ ମଧ୍ୟ, ମଣ୍ଟୁ ଭାଙ୍ଗି ପଡ଼ୁଥିଲା । ସେଦିନ ପଡ଼ାଘରର ବୈଚିତ୍ର୍ୟହୀନ କୋଣ, ବାପାଙ୍କର ଚୁରୁଟ୍ ଧୂଆଁ ଆଉ ଚିତ୍କାର, ମମୀଁ ହାତଚୂଡ଼ିର ଠଣ୍‌ଠଣ ଶବ୍ଦ, ଜମି କୁକୁରର ଅହେତୁକ ଗର୍ଜନ···ମୂହୂର୍ତ୍ତକ ଭିତରେ ସବୁ, ସାହାଡ଼ାବୁଦାଘର ଦେଶ ଠାରୁ ସୁଦ୍ଧା ହଠାତ୍ ଆହୁରି ପ୍ରିୟ ଓ ସୁନ୍ଦର ହୋଇ ଉଠିଲା । ମାତ୍ର ଏଇ ହେମାଳିଆ, ଛାଇଢଙ୍କା ଅପନ୍ତରା ଠାରୁ ସେଦିନ ପ୍ରିୟଭୂମି ଯେପରି ବହୁ ଦୂରରେ···ସୁଦୂରରେ···

ମଣ୍ଟୁ ସବୁ ଶକ୍ତି ପ୍ରୟୋଗ କରି ଆଉଥରେ ଚିତ୍କାର କରି ଉଠିଲା···ଅଜଜ୍ !

ଆରଣ୍ୟ ନିର୍ଜନତା ଓ ବାତ୍ୟାଭୂତ ପତ୍ର ଠିଆ ହୋଇଥିବା ଭଙ୍ଗା କୋଠାର କାନ୍ଥ ଉହାଡ଼ରୁ ପ୍ରତିଧ୍ୱନି ଭାସି ଆସିଲା —

···"ଅ-ଜ-ଜ୍"

ଏତେବେଳେ ଯଦି ଗୋଟାଏ ଭୂତ ବାହାରେ ? ଗୋଟାଏ ବ୍ରହ୍ମରାକ୍ଷସ ବାହାରେ ? ଯେଉଁବେଳେ ସେ ସେଦିନ ପିଲାଙ୍କୁ ଚର୍ମୁଣୀ ଗାଧୋଉଥିଲା, ସେ ଯଦି ବାହାରେ ?

ଦରିଆମଝି ପ୍ରବାଳଦ୍ୱୀପରେ, ବନ୍ଧୁବର୍ଜିତ, ନିଃସଙ୍ଗ ଓ ପରିତ୍ୟକ୍ତ ସାଧବପୁଅ ଠାରୁ ସୁଦ୍ଧା ସେ ଏବେ ଅତ୍ୟନ୍ତ ଏକାକୀ !

ମଣ୍ଟୁ ଅସହାୟ ଶିଶୁ ପରି କାନ୍ଦି ଉଠି ପୁଣି ଥରେ ଚିତ୍କାର କଲା, ·· ଅଜଜ୍ !

ଏଥର ପୁଣି ଭାସି ଆସିଲା, ସେଇ ନିଷ୍ଠୁର ପ୍ରତିଧ୍ୱନି ··"ଅ-ଜ-ଜ୍ !"

କିନ୍ତୁ ତା' ସହିତ ମଧ୍ୟ ଭାସି ଆସିଲା, ଅଦନ କୋଇଲିର ପରିଚିତ କୁହୁ ଶବ୍ଦ !

ଅଜଜ୍ ଭଙ୍ଗା ଇଟା ଆଉ ଭୁଷୁଡ଼ା କାନ୍ଥର ଗୋଟାଏ କୁଡ଼ ଭିତରୁ ବାହାରି ଆସି, ମଣ୍ଟୁ ପାଖରେ ଠିଆ ହୋଇଗଲା । ନିଜେ ଗୋଟାଏ ପିଜୁଳି କାମୁଡ଼ି ଆଉ ଗୋଟାଏ ପିଜୁଳି ମଣ୍ଟୁ ଉପରକୁ ଫିଙ୍ଗି ଦେଇ କହିଲା···

"ଚଢ଼େଇ ଛୁଆ ଧରିବ ପରା ?"

"ଚଢେଇଛୁଆ ?"

ମଣ୍ଟୁର କ୍ଳାନ୍ତ ଦେହ, ଶ୍ରାନ୍ତ ମନ, ଆକାଶଗାମୀ ପକ୍ଷୀର ରଙ୍ଗୀନ୍ ପକ୍ଷପତ୍ର ପୁଣି ସ୍ୱପ୍ନର ଆକାଶପଥରେ ଡେଣା ମେଲାଇଦେଲା ।

କିନ୍ତୁ ସ୍କୁଲଫେରନ୍ତା ବେଳର ଉଗ୍ରକ୍ଷୁଧା ଶରଣହ ମୂନିଆଁ ଦାନ୍ତରେ, ପେଟ ଭିତରକୁ ଯେପରି ଖିନ୍‌ଭିନ୍ କରି ଦେଉଥିଲା !

ଏଠି ମମୀଁର ଆବ୍‌ଦାର୍ ନାହିଁ, ଆସ୍ୱାର ଅନୁନୟ ନାହିଁ !

ଏଠି ରୁକ୍ଷ, ମମତାହୀନ, ନିଷ୍କରୁଣ ପରିବେଶ···ଏଠି ନିଷ୍ଠୁର କ୍ଷୁଧା···

ମଣ୍ଟୁ ପିଜୁଳିଠାରୁ କଚେଇ କାମୁଡ଼ିନେଲା !

ଅଜିଜ୍ କହିଲା···"ତୋଟା ଭିତରେ ଗୋଟାଏ ତେନ୍ତୁଳି ଗଛରେ, ବଣୀଚଢ଼େଇ ବସା ବାନ୍ଧିଛି । ଆସ ମୋ ସଙ୍ଗରେ, ଛୁଆ ଧରିବା ।"

ମଣ୍ଟୁର ଉତ୍ତର ପାଇଁ ଅପେକ୍ଷା ନକରି, ଅଜିଜ୍ ତୋଟା ଭିତରକୁ ପୁଣି ଧାଇଁ ପଳାଇଗଲା । ତା' ପଛରେ ମଣ୍ଟୁ !

ଏଇ ସେ ତେନ୍ତୁଳି ଗଛ ।

ଅପରାହ୍ଣରେ ଲେଉଟା ସୂର୍ଯ୍ୟର ଛାୟା, ପତ୍ରଗହଳ ଉପରେ ଏକ ଅସ୍ପଷ୍ଟ, ତରଳ ଛାୟା ବୁଲାଇ ଆଣିଛି । ତଳେ ଠିଆ ହୋଇ, ତା' ଭିତରେ ଚଢ଼େଇବସା ଦେଖି ହୁଏ ନାହିଁ ।

ଅଜିଜ୍ କିନ୍ତୁ ଅଭ୍ୟସ୍ତ ଚଢ଼ାଳୀ ପରି, ଗୁଡ଼ୁଗୁଡ଼ୁ ଗଛ ଉପରକୁ ଉଠିଗଲା ।

ମୁହୂର୍ତ୍ତକ ଭିତରେ ପଲେ ଚଢ଼େଇର ଏକ ସୁତୀବ୍ର ଚିତ୍କାରରେ, ଛାୟାଢଙ୍କା ନୀରବ ତୋଟାଟା ପ୍ରଚଣ୍ଡଭାବରେ ଚହଲିଗଲା···ମଣ୍ଟୁର

ଟେକା ପଡ଼, ସେଇ ଦନ୍ତୁଆ ପୋଖରୀର କଳା, ଶିଉଳିବଦ୍ଧା ପାଣି ଆଜ ସକାଳେ ଯେପରି ଚହଲି ପଡ଼ୁଥିଲା ।

ଅଜଳ୍ ଗୋଟାଏ ବଣୀଚୁଆ ଢେଲାକୁ ଫିଙ୍ଗି ଦେଇ, ଦୁଇ ହାତରେ ଗଛ ଗଣ୍ଡିକୁ ଧରି ଓହ୍ଲାଇ ଆସୁଥିଲା । କେତେଟା ବଣୀ ଚଢ଼େଇ ଖୁବ୍ କଣ୍ଠରେ ଚିତ୍କାର କରି, ଅଜଳର ଦେହ ଓ ମୁଣ୍ଡକୁ ଖୁମ୍ପି ପକାଉଥିଲେ, ଅପହୃତ ଶାବକକୁ ଉଦ୍ଧାର କରିବା ପାଇଁ ।

ମଣ୍ଟୁ ଗଛ ତଳୁ ଚଢ଼େଇ ଛୁଆଟାକୁ ହାତରେ ଉଠାଇନେଲା । ତଳେ ପଡ଼ିଲା ବେଳେ, ତାର ଦୁଇ ନରମଡେଣା ଉପରକୁ ଉଡ଼ିଯିବା ପାଇଁ ଥରି ଉଠୁଥିଲା; ମାତ୍ର ଏବେ ତାହା ନିଷ୍ଟଳ ହୋଇ ପଡ଼ିଥିଲା ।

ଆଃ··· ଚଢ଼େଇ ଛୁଆର ଗ୍ଲୁଡ କି ଉଷ୍ମ, କି ନରମ !···ମମୀଁର ଗ୍ଲୁଡ ପରି !

ତେଲୁଳି ଗଛ ଡାଳରୁ ଅଜଳ୍ ତଳକୁ କୁଦିପଡ଼ିଲା । ଗଛ ଡାଳରେ ଚଢ଼େଇମାନଙ୍କର ବିକ୍ଷୁବ୍ଧ କୋଳାହଳ ତଥାପି ଶାନ୍ତ ହୋଇ ନଥିଲା ।

ଅଜଳ୍ କହିଲା···"ଚାଲ ଏଥର ଫେରିଯିବା !"

ମଣ୍ଟୁ କରୁଣ ବେଦନାର୍ତ୍ତ ଆଖିରେ, ହାତରେ ସେହି ପକ୍ଷୀ-ଶାବକଟିକୁ ଧରି, ଧୀରେ ଧୀରେ ଆଉଁସୁଥିଲା ।

ଚଢ଼େଇ ଛୁଆଟିର କଳା ଆଖିଡୋଳା ଦୁଇଟି, ଉପରକୁ ଓଲଟି ପଡ଼, ଧୀରେ ଧୀରେ ଧଳା ପଡ଼ିଆସୁଥିଲା । ଉଷ୍ମ, ନରମ ଗ୍ଲୁଡର ଦଡ଼ା ଉଠା, ନିସ୍ପନ୍ଦ ହୋଇ ଆସୁଥିଲା ।

ଅଜଳ୍ କହିଲା···"ଚାଲ" !

ମଣ୍ଟୁ ପଚାରିଲା, "ଏ ଚଢ଼େଇ ବୋବାଉ ନାହିଁ ଯେ··· ? ସକାଳେ କାଠଚମ୍ପା ଗଛର ଥୁଣ୍ଟା ଡାଳରେ ଚଢ଼େଇମାନେ ଯେପରି କୁଦନ୍ତି, କିଚିର୍ ମିଚିର୍ ହୁଅନ୍ତି !"

ଅଜଜ୍ କହୁଥିଲା···"ଛଳେ ପଡ଼ି, ଚଡ଼େଇ ଦେହରେ ଜଖମ୍ ଲଗିଯାଇଛି । ଆମର ଯେମିତି ଜଖମ୍ ଲାଗେ !"

ମଣ୍ଟୁ ଅସହାୟ କଣ୍ଠରେ ପଚାରିଲା···

"ଏ କଣ ମରିଯିବ ?"

ଅଜଜ୍ କହିଲା···"ଘରେ ତାକୁ ଟିକଏ ଗରମ ଚା' ପିଆଇ ଦେଲେ, ସେ ପୁଣି ତାଜା ହୋଇଯିବ ।"

ଅଜଜ୍ ଆଉ ମଣ୍ଟୁ, ସେଇ ଅପରାହ୍ନ ତୋଟା ଭିତରୁ ବାହାରି ରାସ୍ତାକୁ ଆସିଲେ ଆହତ ପକ୍ଷୀଶାବକକୁ ଯଥାଶୀଘ୍ର ଗରମ ଚା' ପିଆଇବା ପାଇଁ । ଅପରାହ୍ଣର ଆକାଶ ସେତେବେଳକୁ ଧୂସର ଓ ବିବର୍ଣ୍ଣ ହୋଇ ଆସୁଥିଲା··ନାନା ଆତଙ୍କ ଓ ଆଶଙ୍କାର ଛାୟାରେ ମଣ୍ଟୁର ହୃଦୟ ଭରି !

ବାଂପାନାମଧାରୀ ମଣିଷଟିର କଠୋର ମୁହଁ···
ଦୁଇ ମୋଟା ଓଠରେ ଚୁରୁଟ୍‌ର ଦପ୍ ଦପ୍ ନିଆଁ ···
ମର୍ମୀର ମୁହଁରେ ଭ୍ରୁ କୁଞ୍ଚିର କୁଟିଳ ରେଖା ··
କାହିଁ ସକାଳର ସେ ଶାଳବନ ?
ଏ ତ ଘରବାହୁଡ଼ା, ଚିରୁରାସ୍ତା··
କାହିଁ ସେ ଉଞ୍ଚା ଉଞ୍ଚା ପର୍ବତ ଆଉ ଶୃଙ୍ଗ ?
ଏ ତ ଜଣା, ଅଜଣା, ରାସ୍ତା ଦୁଇପାଖର ଅନେକ ଘର···

ଏକ ଆତଙ୍କରେ ମଣ୍ଟୁର ଦେହ ଓ ମନ ଅଥର୍ବ ହୋଇ ପଡ଼ୁଥିଲା ।

ଗୋଟାଏ ଗଳି ମୋଡ଼ରେ ଅଜଜ୍ ତା ଘରକୁ ଧାଇଁ ପଳାଇଲା । ମଣ୍ଟୁର ହାତମୁଠା ଭିତରେ ସେ ଚଡ଼େଇଟା କେତେବେଳୁ ମରି ସାରିଥିଲା !

* * * *

ଆଗରେ ଏଇ ଘର ଦିଶୁଛି·····

ଶିଶୁଷ ଗଛଟାର ଅଗଡାଳରେ ଚେନାଏ ସୁନେଲି ଖରା ଧୀରେ ଧୀରେ ପାଉଁଶିଆ ପଡ଼ି ଆସୁଛି । ଜମିର ଗର୍ଜନ ଶୁଭୁଛି ଉତ୍ପରିତ୍ପ !

ମଣ୍ଟୁର ଦୁଇପାଦ ଆଉ ଆଗକୁ ଚଳିଲା ନାହିଁ !

ଅପରାହ୍ଣର ବିବର୍ଣ୍ଣ ଆଲୋକରେ, ଗୋଟାଏ ବର୍ଷାନ୍ତ୍ତ ପାଖରେ ଠିଆହୋଇ, ହାତମୁଠା ଭିତରେ ଚପେଇ ଛୁଆଟିକୁ ସେ ଥରେ ଅନାଇଁଲା··ଦୁଇ ଡୋଳା ଓଲଟି ପଡ଼ିଛି, ବେକ ବଙ୍କା ହୋଇ ଯାଇଛି, ଥଣ୍ଟ ଦୁଇଟି ଅଳ୍ପ ମେଲା ।

କିନ୍ତୁ ଗରମ କ୍ଷୀର ପିଇଲେ ପୁଣି ତାଜା ହୋଇ ଉଠିବ···ଅଜଜ୍ କରୁଛି !

କିଏ ଜଣେ ହଠାତ୍ ଚିତ୍କାର କରି ଉଠିଲା·····"ଏଇ ତ ମଣ୍ଟୁ ବାବୁ ! କୁଆଡ଼େ ଯାଇଥିଲେ ଫେରିଲେଣି !"

ବଗିଚାର ମାଳୀ, ମଣ୍ଟୁର ଗୋଟାଏ ହାତ ଧରି ପକାଇଲା ।

ମାଳୀ ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇ କହିଲା···"ତୁମେ ଦିନସାରା କେଉଁଠି ଥିଲ ମଣ୍ଟୁବାବୁ ? ତମକୁ ଖୋଜି ଖୋଜି ଆମେ ସମସ୍ତେ ନିସ୍ତାନ୍ତ ହେଲୁଣି ! ହାତରେ କଣ ଧରିଛ ସେଇଟା ?

ମଣ୍ଟୁ ହାତମୁଠା ଭିତରେ ଚପେଇଛୁଆଟା ନୀରବରେ କେବଳ ଦେଖାଇଦେଲା ।

ମାଳୀ ସେ ଚଢ଼େଇଛୁଆଟାକୁ ରାସ୍ତା କଡ଼କୁ ଫିଙ୍ଗିଦେଇ କହିଲା ...“ଛି, ଛି, ମଲା ଚଢ଼େଇ ଛୁଆଟାକୁ ହାତରେ ଧରନ୍ତି! ଘରକୁ ଚାଲ ତୁମେ!”

ମାଳୀର କଠିନ ହାତମୁଠା ଭିତରେ, ମଣ୍ଟୁ ଅବୋଧ ଶିଶୁ ପରି ଚିତ୍କାର କରି କାନ୍ଦି ଉଠିଲା! ତାର କ୍ଷୁଦ୍ର ସଂକ୍ଷିପ୍ତ ଜୀବନରେ ଏଇଟି ଯେପରି ପାଇ ହରାଇବାର, ବେଦନା ଓ ବ୍ୟର୍ଥତାର ପ୍ରଥମ ଲବଣାକ୍ତ ପରିଚୟ।

( ୧୯୬୦ )

# ନିର୍ମୂଳୀଲତାର ଫୁଲ

ଆଜ ଗୋଟିଏ ସକାଳ···ଶୈଶବର ଆଲୋକଚପଳ, ଚୂନଲପା ସକାଳ ନୁହେଁ···ଶେଷ କୈଶୋରର ମେଘୁଆ, ଲୁହଛଳଛଳ ବିଷାଦଗ୍ରସ୍ତ ସକାଳ ।

ଝରକା ତଳେ ସେ କାଠଚମ୍ପା ଗଛ ଆଜ ନାହିଁ । ତାର ଅଣ୍ଟା ଡାଳରେ ସକାଳର ଚଢ଼େଇମାନେ ଆଉ କଚରମିଚର ହେଉନାହାନ୍ତି । ବଗିଚ୍ଚ-ମାଳୀର ଭାତରନ୍ଧା ଚୂଲ୍ଲୀରେ କେଉଁଦିନୁ ତାହା ଜଳପୋଡ଼ ପାଉଁଶ ହୋଇଗଲଣି । ପାଚେରୀକୁ ଲଗି ସେଇ ଯେଉଁ କୃଷ୍ଣଚୂଡ଼ା ଗଛଟା, ସାତତାଳ ଦରିଆ ପାଣି ଭିତରେ କୈଶୋର-କଳ୍ପନାର ସେଇ ଯେଉଁ ପ୍ରବାଳ ଦ୍ୱୀପ; ଯାହା ଉପରେ କ୍ଳାନ୍ତ ମନପବନ ଘୋଡ଼ା ଡେଣା ଦୁଆଉଁ ଥିଲା, ଏବେ ଫେନମ୍ନିଲଶୀସାବୋଳା ଆକାଶ ତଳେ ତାହାର ମଲ୍ଲ ଅଣ୍ଟା, ଟିଆହୋଇଛି ସ୍ୱପ୍ନାନ୍ତର ଧୂସର, ନିଷ୍ଠୁର ସକାଳେ, ଆହତ, ଉଲଙ୍ଗ ହୃଦୟ ପରି !

କୈଶୋରର ସେଇ ହେମାଳିଆ, ସ୍ୟାଇତଲା ପଡ଼ାଘର ।

ଯେଉଁ କାନ୍ଥସବୁ ଦିନେ ଅସୁରୁଣୀବୁଢ଼ୀ ଗୁମ୍ଫାର ଜାଗ୍ରତ ପ୍ରହରୀ ପରି ଚପଳ, ଚଞ୍ଚଳ କୈଶୋରକୁ ବନ୍ଦୀ କରି ରଖିଥିଲା, ଆଜ ତାହା

ଆଦ୍ୟଯୌବନର ଉତ୍ତପ୍ତ, ଉଦଗ୍ର ଯୌନଚେତନାର ପୃଷ୍ଠଭୂମି···ସେଠି କେତେଟଣ୍ଡ୍ରେ ପୁରୁଣା କ୍ୟାଲେଣ୍ଡର, ସିନେମା ଅଭିନେତ୍ରୀମାନଙ୍କର ମର୍ମଭେଦୀ ବକ୍ଷାଗ୍ରର ମର୍ମାନ୍ତକ ଚିତ୍ର ଝୁଲୁଅଛି···ଆଦ୍ୟଯୌବନର ସ୍ୱପ୍ନସଙ୍ଗିନୀ ସେମାନେ ।

କି ଏକ ଅବ୍ୟକ୍ତ ବେଦନା, ମଣ୍ଟୁର ଅନୁଭୂତିରେ ଏଇ ଶାନ୍ତ, ମେଘସ୍ନାତ ସକାଳଟିକୁ ବିକ୍ଷୁବ୍ଧ କରି ଦେଇଅଛି । ଟେବୁଲ୍ ଉପରେ ଇକନମିକ୍ସ୍, ଲଜିକ୍ସ୍, ଇଂରାଜୀ ସାହିତ୍ୟ ପଢ଼ାବହିର ଜଞ୍ଜାଳ ଠେଲି, ମଣ୍ଟୁର ଦୁଇ ଆଖିର ବେଦନାତୁର ଦୃଷ୍ଟି ବାରମ୍ବାର ଖସିଯାଉଅଛି, ଝରକା ବାହାରେ ମେଘମେଦୁର ଆକାଶର କୋଳକୁ । କି ଏକ ବ୍ୟଗ୍ର ବ୍ୟାକୁଳତା ମଣ୍ଟୁର ଚେତନାରେ ରହିରହି ଯେପରି ତୀକ୍ଷ୍ଣ ଶେଳାଘାତ କରୁଅଛି ।

ମଣ୍ଟୁ କାନ୍ଥରେ ଝୁଲୁଥିବା ଗୋଟିଏ ଅଇନା ସାମନାରେ ଠିଆ ହୋଇ, ନିଜକୁ ଚାହିଁ, ନିଜେ ହଠାତ୍ ଆତ୍ମହରା ହୋଇପଡ଼ିଲା । ସେଫ୍ଟୀ-ରେଜର୍ ପ୍ରତିଦିନ ଲଗାଇ ଲଗାଇ, ଅଜାତଶ୍ମଶ୍ରୁ ଚିକ୍କଣ ଗାଲ ଉପରେ ବାରମ୍ବାର ଟାଣି ସୁଦ୍ଧା, ତଥାପି ସେଠାରେ ଶୈବାଳୋଦ୍‌ଗମ ହୋଇ ନାହିଁ !

ଅଇନା ଦେହରେ ସହପାଠୀ ସୁନନ୍ଦର ମୁହଁ ହଠାତ୍ ଯେପରି ଭାସିଉଠିଲା । ସୁନନ୍ଦର ଗାଲ କିନ୍ତୁ ଆଉରି ଚିକ୍କଣ, ଆଉରି ମୋଲାୟେମ୍··· ଗୋଟିଏ ଝିଅର ମୁହଁପରି ! ମଣ୍ଟୁ ନିଜର ଗାଲ ଉପରେ ବାରମ୍ବାର ଅଙ୍ଗୁଳି ଚଳାଇ ଚଳାଇ, ପୀଡ଼ନରେ ତାହାର ଉଷ୍ମ କୋମଳତା ଅନୁଭବ କରି କରି, ଯେପରି ସହପାଠୀ ସୁନନ୍ଦର ସାନ୍ନିଧ୍ୟ ଉପଭୋଗ କରୁଥିଲା । ମାତ୍ର ସାମାନ୍ୟ କଳହରେ, ଏବେ ସୁନନ୍ଦ ସହିତ ତାର ବାଚିକ ସମ୍ପର୍କ ସୁଦ୍ଧା ନାହିଁ । କଳହର କୌଣସି କାରଣ ଅବଶ୍ୟ ନଥିଲା । ଏମିତି ଅକାରଣରେ ବନ୍ଧୁ କଳହ ଲାଗେ; ପୁଣି ଛୁଡ଼ିଯାଏ । କିନ୍ତୁ ପ୍ରତି କଳହ, ପ୍ରତି ଛଡ଼ାଛଡ଼ି, ପ୍ରତି ବାକ୍ୟବିଚ୍ଛେଦ ପରେ, ପ୍ରତ୍ୟେକ ସହିତ ପ୍ରତ୍ୟେକର ହୋଇଥାଏ ଯେପରି ଏକ ନୂତନ ପରିଚୟ !

ନିଃସଙ୍ଗ, ଉତ୍ତାପବିହୀନ, ଘଟଣାହୀନ, ବନ୍ଧ୍ୟା, ବିବର୍ଣ୍ଣ ସକାଳ ।

ଶେଷବସନ୍ତରେ ଗୋଟିଏ କୋଇଲିର ଆକୂଳ ଆହ୍ୱାନ କେଉଁଠୁ କେଉଁ ଶୀତଳ ପତ୍ରକୁଞ୍ଜର ଶ୍ୟାମଳ ମର୍ମଭୂମିକୁ ବିଦୀର୍ଣ୍ଣ କରି, ଜରାଗ୍ରସ୍ତ ବୃଦ୍ଧର କାମନାହୀନ, ବେଦନାହୀନ, ଆନ୍ଦୋଳନହୀନ ଗତିପରି ଏହି ନିସ୍ତବ୍ଧ ନିର୍ବେଦ ସକାଳଟିକୁ, ଆନ୍ଦୋଳିତ କରି ଦେଉଅଛି ।

ଏହି ବିରାଟ ପୃଥିବୀରେ ମଣ୍ଟୁ ଯେ ଅତି ଏକାନ୍ତ ଭାବରେ ନିଃସଙ୍ଗ ଓ ପରିତ୍ୟକ୍ତ, ତାହା କୋଇଲିର କୁହୁଧ୍ୱନି ମଧ୍ୟରେ ବାରମ୍ବାର ସୂଚିତ ହୋଇ ଯାଉଅଛି !

ଉପର ବାରଣ୍ଡାକୁ ବାପା ଏପର୍ଯ୍ୟନ୍ତ ଆସି ନୈମିତ୍ତିକ ଭାବରେ ଆରାମଚଉକୀ ଉପରେ ଦେହ ଢାଳି ଖବରକାଗଜ ପଢ଼ା ଆରମ୍ଭ କରି ନାହାନ୍ତି । ମଣ୍ଟୁ ଥରେ ସନ୍ତର୍ପଣରେ ବାହାରକୁ ଚାହିଁଆସି, ଖଣ୍ଡେ ସିଗାରେଟ୍‌ରେ ନିଆଁ ଲଗାଇଲା ।

ତା ପରେ ସିଗାରେଟ୍‌ରୁ ଧୂଆଁର କୁଣ୍ଡଳୀ ଛାଡ଼ି, ସିନେମାର ଛବିରେ, ନାୟିକା-ବଞ୍ଚିତ ନାୟକ ପରି ଏକ ଟ୍ରାଜିକ୍ ଭାବରେ ନିଜେ ଠିଆ ହେବାର ଭଙ୍ଗୀ ଅଇନାରେ ନିରୀକ୍ଷଣ କରିକରି, ମଣ୍ଟୁ ପୁଣି ଥରେ ଆତ୍ମବିସ୍ମୃତ ହୋଇପଡ଼ିଲା ।

ପାଖ କୋଠରୀରେ ସାନ ଭଉଣୀ ମିନି ଗୋଟିଏ ତାନପୁରାରେ ସ୍ୱରସଙ୍ଗତ କରୁଅଛି । ତାହାର ଅନଭ୍ୟସ୍ତ ଅଙ୍ଗୁଳିର ବେସୁରା ରାଗିଣୀ ଏହି ବେଦନାଭୁର ପରିବେଶ ମଧ୍ୟରେ କପୋତ ଖାପଛଡ଼ା ଶୁଭୁଅଛି । ମିନି ଆଉ ସେଦିନର ମିନି ନାହିଁ । ବସନ୍ତର ହିଲ୍ଲୋଳରେ କମ୍ପିତ କିଶଳୟ ପରି, ମିନି ଏବେ ଯୌବନର ତରଙ୍ଗରେ କମ୍ପିତା ଏକ ବାଳିକା । ତାର ସ୍ନିଗ୍ଧ କପାଳ ଉପରେ ଅଳକର ଚୂର୍ଣ୍ଣି, ଦୁଇ ବେଦନାବିଦ୍ଧ ଆଖିରେ ବ୍ରୀଡ଼ାର ତରଙ୍ଗ ··

ମଣ୍ଟୁ ସିନେମାର ଟ୍ରାଜିକ୍ ନାୟକ ପରି ଗୋଟିଏ ନିଃଶ୍ୱାସ ପକାଇ, କପାଳ ଉପରେ ଉଡ଼ିବୁଲୁଥିବା ବାଳକୁ ଗୋଟିଏ ତରୁଣୀରେ ଆହୁରି ଅବିନ୍ୟସ୍ତ କରିଦେଇ, ଝରକା ପାଖରେ ଆସି ଠିଆହେଲା । ଅସ୍ଥା କୃଷ୍ଣଚୂଡ଼ା

ଗଛଟାର ସେପଟେ, ଯେଉଁ ଦୋତାଲା ଘରଟା, ଯାହାର ପଶ୍ଚିମପଟେ ଲୁହା ରେଲିଂ ଦେହରେ, ନାନାରଙ୍ଗର ଶାଢ଼ୀ ଶୁଖେ, ସାୟା ଶୁଖେ, ଆଉ ଯାହାର ବାରଣ୍ଡାରେ ପ୍ରତିଦିନ ସକାଳେ, ଆଉ ସନ୍ଧ୍ୟାରେ ଝିଅଟିଏ ପିଠି ଉପରଯାକ କୁଞ୍ଚୁକୁଞ୍ଚିଆ ବାଳର ମେଘ ଝୁଲାଇ, ଏକ ଅକାରଣ ପ୍ରତୀକ୍ଷାରେ ଉଦାସ ଆଖିରେ ଗୁହାଁଚିଆନ୍ତିଏ, ଦିନେଦିନେ ଅସ୍ତସୂର୍ଯ୍ୟର ସ୍ୱର୍ଣ୍ଣାଭ ଆଲୋକରେ ଯିଏ ଦେଖାଯାଏ ସନ୍ଧ୍ୟାଦୀପର ଗୋଟିଏ ଶିଖା ପରି......ସେ ଦୋତାଲା ଘରର ଅଧିବାସୀ, ଏଇ ସହରରୁ ଅନ୍ୟ କେଉଁ ସହରକୁ ବଦଳି ହୋଇଗଲେଣି । ଅନ୍ୟ ଭଡ଼ାଟିଆମାନଙ୍କର ଅପେକ୍ଷାରେ ଘରଟି ଖାଲି ପଡ଼ିଛି ।

ସେଇ ପ୍ରତିବେଶିନୀ ଝିଅଟିର ଦୃଷ୍ଟି ଆକର୍ଷଣ କରିବା ପାଇଁ, ମଣ୍ଟୁ ପ୍ରତିଦିନ ସକାଳ ଆଉ ସନ୍ଧ୍ୟାରେ ଛାତ ଉପରେ ବ୍ୟାୟାମ କରୁଥିଲା, ଗଛ ଉପରେ ଚଢ଼ୁଥିଲା, ତଳେ ଗୋଟାଏ ବାଡ୍‌ମିଣ୍ଟନ କୋର୍ଟ କାଟି ବାଡ୍‌ମିଣ୍ଟନ୍ ଖେଳୁଥିଲା । ମାତ୍ର ମଣ୍ଟୁକୁ ଛାତ ଉପରେ ବା ତଳେ ପଡ଼ିଆରେ ଆକସ୍ମିକ ଭାବରେ ଥରେ ଦେଖିଦେଲେ, ବ୍ୟାଧଗ୍ରସ୍ତା ହରିଣୀ ପରି ମୁହୂର୍ତ୍ତକ ମଧ୍ୟରେ ସେ କେଉଁଆଡ଼େ ଅନ୍ତଃପୁର ମଧ୍ୟରେ ପୁଣି ଆତ୍ମଗୋପନ କରୁଥିଲା ।

ସୁନନ୍ଦ ଏକେ ତ ବୟସରେ କନିଷ୍ଠ; ତା ଉପରେ ତା ସହିତ ଏହି ପ୍ରତିବେଶିନୀ ଝିଅଟି ସମ୍ବନ୍ଧରେ କୌଣସି ଆଲୋଚନା କଲେ, ସେ କପଟ ଅକାରଣରେ ରୁଷ୍ଟ ହୋଇ ଉଠେ । ତା ପରେ କେତେଦିନ ସୁନନ୍ଦ ସହିତ ସାକ୍ଷାତ ମିଳିବା ସୁଦ୍ଧା କଠିନ ହୋଇପଡ଼େ । ମଣ୍ଟୁ ଠାରୁ ବୟସରେ ବର୍ଷେ ବା ଦୁଇବର୍ଷର ବଡ଼, ଅନ୍ୟ ସହପାଠୀ ଶ୍ରୀମନ୍ତ ଏସବୁ ବ୍ୟାପାରରେ କିନ୍ତୁ ଅଧିକ ଅଭିଜ୍ଞ ଓ ଅନୁଭୂତିସମ୍ପନ୍ନ । ମଣ୍ଟୁ ସହିତ ସେହି ପ୍ରତିବେଶିନୀ ବାଳିକାଟି ଯେ ଗଭୀର ପ୍ରଣୟସୂତ୍ରରେ ଆବଦ୍ଧ ହୋଇ ପଡ଼ିଅଛି, ତାହା ତାହାର ଏ ପ୍ରକାର ଆଚରଣରୁ ସ୍ପଷ୍ଟ ସୂଚିତ ହେଉଅଛି ବୋଲି ଶ୍ରୀମନ୍ତ ବହୁବାର ମଣ୍ଟୁକୁ ସାନ୍ତ୍ୱନା ଦେଇଅଛି । ଯେଉଁଠାରେ ପ୍ରେମ ଯେତେ ନିବିଡ଼ ସେଠାରେ ମୃଗତୃଷ୍ଣା ପରି ଇପ୍‌ସିତକୁ ବାରମ୍ବାର ବଞ୍ଚିତ କରି, ତାହାର ତୃଷାକୁ ସେତେ ବେଶି ପ୍ରଖର

କରାଇବା ନାଗରିକର କୁଆଡ଼େ ଗୋଟିଏ ରହସ୍ୟ ବୋଲି, ଶ୍ରୀମନ୍ତ ବନ୍ଧୁବାର ମଣ୍ଟୁକୁ ସାନ୍ତ୍ୱନା ଦେବାକୁ ଯାଇଁ ତାହାର ହୃଦୟର ଜ୍ୱାଳାକୁ ଆଉରି ପ୍ରଜ୍ୱଳିତ କରିଅଛି ।

ଶ୍ରୀମନ୍ତର ପରାମର୍ଶରେ ମଣ୍ଟୁ ଏହି ପ୍ରତିବେଶିନୀର ଶୁଭଦୃଷ୍ଟି ଆକର୍ଷଣ କରିବା ପାଇଁ ପ୍ରତିଦିନ ଗାର୍ଲସ୍କୁଲ ବସ୍ ସହିତ ସାଇକେଲ୍‌ରେ ପ୍ରତିଯୋଗିତା କରୁଥିଲା । ହଠାତ୍ ବସ୍ ଆଗକୁ ସାଇକେଲ୍ ମଡ଼ାଇଆଣି ବସ୍‌ଟିକୁ ଦଣ୍ଡିକ ପାଇଁ ବନ୍ଦ କରି ଦେଉଥିଲା; ମାତ୍ର ପ୍ରତିବେଶିନୀର ସମବେଦନାପୂର୍ଣ୍ଣ ଆଖିରେ ବେଦନାବିଦ୍ଧ ସହାନୁଭୂତିଶୀଳ ଦୃଷ୍ଟି ଅପେକ୍ଷା ବସ୍ ଡ୍ରାଇଭର୍‌ର କ୍ରୁଦ୍ଧ ଗର୍ଜନ ଓ ଅଶ୍ଳୀଳ ଗାଳି ଛଡ଼ା ବିନିମୟରେ ମଣ୍ଟୁ ଭାଗ୍ୟରେ ଆଉ କିଛି କେବେ ଜୁଟୁ ନଥିଲା ।

ଥରେ କେବଳ ଆକସ୍ମିକ ଭାବରେ, ଏହି କୁଞ୍ଚିତକେଶୀ ବାଳିକା ସହିତ ମଣ୍ଟୁର ଦୃଷ୍ଟି ବିନିମୟ ହୋଇଥିଲା ମୁହୂର୍ତ୍ତିକ ପାଇଁ ।

ବଗିଚାର ପଶ୍ଚିମକୋଣରେ ସେଇ ଯେଉଁ ପିଜୁଳି ଗଛଟା, ଯାହାର କେତେଟା ଝଙ୍କାଳିଆ ଡାଳ, ସେପାଖ ଘରର ବଗିଚା ଉପରକୁ ଝୁଙ୍କି ପଡ଼ିଅଛି; ଦିନେ ଗୋଟିଏ ନିର୍ଜନ ମଧ୍ୟାହ୍ନରେ, ମଣ୍ଟୁ ପିଜୁଳି ତୋଳିବା ପାଇଁ ସେହି ଗଛ ଉପରକୁ ଚଢ଼ିବା ବେଳେ ଗଛ ଉପରେ ସେହି କୁଞ୍ଚିତକେଶୀ ବାଳିକାଟିକୁ ଦେଖି, ମୁହୂର୍ତ୍ତିକ ପାଇଁ ସେ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ପଡ଼ିଥିଲା ।

ଗଛତଳେ ମଣ୍ଟୁକୁ ଦେଖି, ଗଛ ଉପରେ ସେହି କୁଞ୍ଚିତକେଶୀ ବାଳିକାଟି ମଧ୍ୟ କମ୍ ବିସ୍ମିତ ହୋଇ ନଥିଲା; ମାତ୍ର ଅପେକ୍ଷା କରିବା ପାଇଁ ସେତେବେଳେ ଆଉ ସମୟ ନଥିଲା । ବାଳିକାଟି ଗୋଟିଏ ଡାଳ ଦେହରେ ଆଉଜି ଗୋଟିଏ ପିଜୁଳୀକୁ ପରମତୃପ୍ତିରେ ଭକ୍ଷଣ କରିବା ସଙ୍ଗେ ସଙ୍ଗେ, କଣ ଖଣ୍ଡେ ବହି ଅତ୍ୟନ୍ତ ମନଯୋଗ ସହିତ ପଢ଼ୁଥିଲା ! ହାୟ—ହାୟ ! ମଣ୍ଟୁ ଯଦି ସେହି ଉପନ୍ୟାସର ଔପନ୍ୟାସିକ ହୋଇ ପାରିଥାନ୍ତା; ଯଦି କୁଞ୍ଚିତକେଶିନୀର କୋଳ ଉପରେ ଲୋଟି ପଡ଼ିଥିବା

ସେ ବହୁର ପୃଷ୍ଠାଟିଏ ହୋଇ ପାରଥାନ୍ତା ! କୁଞ୍ଚିତକେଶା ସେହି ବାଳକାଟି ତଳେ ମଣ୍ଟୁ ଆଡ଼େ ଗୃହୁଁ ନଥିବା ବେଳେ ମଣ୍ଟୁ ଦୀର୍ଘନିଃଶ୍ୱାସ ପରେ ଦୀର୍ଘନିଃଶ୍ୱାସ ପକାଇ, ତା ଆଡ଼କୁ ଗୃହିଁ ଆଖିର ଲୁଚକାଳି ଖେଳ, କିଂକର୍ତ୍ତବ୍ୟମୂଢ଼ ପରି ଠିଆ ହୋଇ ରହିଥିଲା । ହଠାତ୍ ଉପରୁ ଗୋଟିଏ ଦରଖଣ୍ଡିଆ, ଅଧାକାମୁଡ଼ା ପିଜୁଳୀ ପଡ଼ିବାରୁ ମଣ୍ଟୁର ସେହି ମୁଗ୍ଧ ଜଡ଼ତା ଭାଙ୍ଗିଗଲା । ସେତେବେଳକୁ କିନ୍ତୁ ସେହି କୁଞ୍ଚିତକେଶା ବାଳକା ଗଛଉପରୁ ଡେଇଁ ପଡ଼ି, ସେପଟ ବଗିଚାରେ କେଉଁଆଡ଼େ ଅନ୍ତର୍ହିତା ହୋଇ ସାରିଥିଲା । ସେଦିନ ସମ୍ମୋହିତ ମନ୍ତ୍ରମୁଗ୍ଧ ପରି ମଣ୍ଟୁ ସେହି ଅର୍ଦ୍ଧଭୁକ୍ତ ପିଜୁଳୀଟିକୁ ମୁଠା ଉପରେ ଚିପି ଧରି ଫେରି ଆସିଥିଲା; ସାର୍ଥକତାର ଏକ ପରମ ତୃପ୍ତିରେ । ଏହି ଅର୍ଦ୍ଧଭୁକ୍ତ ପିଜୁଳୀଟି ଯେପରି ମଣ୍ଟୁର ଦନ୍ତକ୍ଷତ ହୃଦୟ !

ତା ପରେ କେତେଦିନ ଧରି, ନିର୍ଜନ ମଧ୍ୟାହ୍ନର ସେହି ଅର୍ଦ୍ଧଭୁକ୍ତ, ଦନ୍ତାଗ୍ରକ୍ଷତ ପିଜୁଳୀଟି, ମଣ୍ଟୁର ଏକମାତ୍ର ଧ୍ୟାନ ଓ ଚର୍ଚ୍ଚାର ବିଷୟବସ୍ତୁ ହୋଇ ପଡ଼ିଥିଲା । ପ୍ରତିବେଶିନୀ; ସେହି କୁଞ୍ଚିତକେଶା ବାଳକା, ମଣ୍ଟୁକୁ କିପରି ସଙ୍ଗୋପନରେ ଡାକି, ସେଦିନ ସେହି ନିଭୃତ ମଧ୍ୟାହ୍ନରେ ଏହି ଅର୍ଦ୍ଧଭୁକ୍ତ ପିଜୁଳୀଟି ନିବେଦନ କରିଥିଲା, ତାହାର ନିତ୍ୟନୂତନ ନାନା କଳ୍ପିତ ବିବରଣୀ ଶୁଣିଶୁଣି, ମଣ୍ଟୁର ବନ୍ଧୁମାନେ କେହି ବା ଅକାରଣରେ ଈର୍ଷ୍ୟାନ୍ୱିତ ଆଉ କେହିବା ବନ୍ଧୁପରେ ପରିହାସମୁଖର ହୋଇ ପଡ଼ୁଥିଲେ ।

କିନ୍ତୁ ଶ୍ରୀମନ୍ତ ତାହାର ବିଶେଷଜ୍ଞାନ ପ୍ରୟୋଗ କରି, ମଣ୍ଟୁକୁ ପରାମର୍ଶ ଦେଇଥିଲା; ଏହା ପ୍ରେମ ଭୁବ ନାୟିକାର ପୂର୍ଣ୍ଣ ଆତ୍ମସମର୍ପଣର ସଙ୍କେତ ! କିନ୍ତୁ ସୁନନ୍ଦ ଏକ ଅକାରଣ ଈର୍ଷ୍ୟାରେ ପ୍ରଜ୍ୱଳିତ ହୋଇ, ଚିତ୍କାର କରି କହିଥିଲା···"ମଣ୍ଟୁର ଏ ଏକ ନୂଆ ଉମ୍ପାମୀ ! ଝିଅଟା କାଳେ, ମଣ୍ଟୁ ପରି ଗୋଟାଏ ଉମ୍ପା, ହେପା ବୃତ୍ତି ପ୍ରେମରେ ଗଦଗଦ ହୋଇ ତା ଉପରକୁ ପିଜୁଳୀଟା ଫିଙ୍ଗି ଦେଇଥିଲା ! ଆଉ ଯଦିବା ଫିଙ୍ଗିଥିଲା, ତା'ହେଲେ ତାହା ନିଶ୍ଚୟ ଘୃଣାରେ, ତାଚ୍ଛଲ୍ୟରେ !"

କିନ୍ତୁ ମଣ୍ଟୁର ଜୀବନରେ ଏହି ବିରାଟ ସଫଳତା ପ୍ରତି ସୁନନ୍ଦର ଈର୍ଷାନ୍ୱିତ ତାଚ୍ଛଲ୍ୟ, ନିତାନ୍ତ ଅନାସକ୍ତ ପରି ନିର୍ବିବାଦରେ ଗ୍ରହଣ କରିନେବା ଅବସ୍ଥାରେ ମଣ୍ଟୁ ନଥିଲା । ପ୍ରତ୍ୟୁତ୍ତରରେ ସୁନନ୍ଦକୁ ମଣ୍ଟୁ ସେଦିନ ଯେପରି ଆହତ ଓ ଅପମାନିତ କରିଥିଲା, ତାହାର ଜ୍ୱାଳା ସୁନନ୍ଦ ବହୁଦିନ ଧରି ଭୁଲିପାରିନଥିଲା ।

ସେହି କୁଞ୍ଚିତକେଶା ପ୍ରତିବେଶିନୀ, ମଣ୍ଟୁର ପ୍ରାଣଘର ଗୁଡ଼ି, ଏ ସହରରୁ ଅନ୍ୟତ୍ର ନଯିବା ପର୍ଯ୍ୟନ୍ତ, ମଣ୍ଟୁ ସହିତ ସୁନନ୍ଦର ସାଧାରଣ ସହପାଠୀର ସମ୍ପର୍କ ସୁଦ୍ଧା ବିଚ୍ଛିନ୍ନ ହୋଇ ପଡ଼ିଥିଲା ।

ସେଦିନ ମଧ୍ୟାହ୍ନର ସେହି ବୃଷ୍ଟି ବିନିମୟ ପରେ ଏହି ପ୍ରତିବେଶିନୀ କୁଞ୍ଚିତକେଶା ବାଳିକା ସହିତ ପରିଚୟ ଓ ସମ୍ପର୍କ ଧୀରେ ଧୀରେ ସହଜ ଓ ସ୍ୱଚ୍ଛନ୍ଦ ହୋଇ ଆସୁଥିଲାବେଳେ, ଦିନେ ହଠାତ୍ ଆକସ୍ମିକ ଭାବରେ ସେହି ଭଡ଼ାଘର ଖାଲି ହୋଇଗଲା । ଆଜି ଏହି ଲୁହ ଛଳଛଳ ମେଘଭରା ସକାଳଟିରେ, କୋଇଲିର ଯେଉଁ ଶେଷ କୁହୁଧ୍ୱନି ଭାସିଆସୁଅଛି, ସେଇଥିରେ ତାର ବିୟୋଗାନ୍ତ କାରୁଣ୍ୟ ଯେପରି ରୂପ ପରିଗ୍ରହ କରିଅଛି !

ଆଜି ତାହାର ପଶ୍ଚିମ-ବାରଣ୍ଡା, ମଣ୍ଟୁର ହା ହୁତାଶମୟ ହୃଦୟ ପରି ନିର୍ଜନ ଓ ପରିତ୍ୟକ୍ତ ! ଗୋଟାଏ କାଉ କେବଳ ସେହି ବାରେଣ୍ଡାର ଲୁହା ରେଲିଂ ଉପରେ କର୍କଶ କଣ୍ଠରେ ଚିତ୍କାର କରୁଅଛି । ମଣ୍ଟୁ ଝରକା ପାଖରୁ ଫେରି ଆସି, ପଢ଼ା ଟେବୁଲ୍‌ର ଦରାଜ ମଧ୍ୟରେ ଲୁଚାଇ ରଖିଥିବା ଗୋଟାଏ ସିଗାରେଟ ପାକେଟରୁ ଆଉ ଖଣ୍ଡେ ସିଗାରେଟ କାଢ଼ି, ତାହାକୁ ସମସାମୟିକ ସିନେମା-ଷ୍ଟାରରେ ବାଁ ହାତର ବୁଢ଼ା ଆଙ୍ଗୁଠି ନଖ ଉପରେ କେତେଥର ନଚାଇ, ଡାହାଣ ପାଟିରେ ଦୁଇ ଓଠ ଭିତରେ ଗୁଞ୍ଜିଧରି, ସେଥିରେ ନିଆଁ ଲଗାଇଲା ।

ଆଃ···ଏଇପରି ବେଦନାକ୍ତ ମୁହୂର୍ତ୍ତରେ ଇଚ୍ଛାହୁଏ···ପଢ଼ାବହି ନୋଟଖାତାର ସବୁ ଜଞ୍ଜାଳ ଦୁଇହାତରେ ଠେଲି ଦେଇ, ମେଘୁଆ ସକାଳର ଏହି ଧୂସର ଆଲୋକରେ, ସିଗାରେଟଧୂଆଁର କୁଣ୍ଡଳୀ ଉଡ଼ାଇ, କବିତା ଲେଖିବା ପାଇଁ; କିନ୍ତୁ ଅଜାଣତରେ କବିତାଲେଖାର ପ୍ରଥମ

ଉଦ୍ୟମ, ଶତ୍ରୁମାନଙ୍କର କଠୋର ସମାଲୋଚନା ଓ ତୀବ୍ର ପରିହାସ ମଧ୍ୟରେ ଯେପରି ବର୍ତ୍ତିମାନ ହୋଇଅଛି; ତା ପରେ ରବୀନ୍ଦ୍ରନାଥଙ୍କ ପ୍ରେମ କବିତାରୁ ଅନୁବାଦ କରି ଆଜ କବିତା ଲେଖିବାର ସାହସ ମଣ୍ଟୁର ହଜଯାଇଅଛି ! ଆଃ···ରବୀନ୍ଦ୍ରନାଥ ଯିନା ଭାଷା ଦେଇଛନ୍ତି, ନୋହିଲେ ତାଙ୍କ ପ୍ରେମକବିତାରେ ଅନୁଭୂତିର ପ୍ରତ୍ୟେକ ଅଭିଜ୍ଞାନ ତ ମଣ୍ଟୁର ଯେପରି ଏକାନ୍ତ ନିଜସ୍ୱ ! ରବୀନ୍ଦ୍ରନାଥ ସେ କବିତା ସବୁ ଲେଖିବା କେବଳ ଏକ ଆକସ୍ମିକ ଘଟଣା; ନୋହିଲେ ମଣ୍ଟୁ ମଧ୍ୟ ସେ କବିତା ସବୁ ଲେଖିବା ସମ୍ପୂର୍ଣ୍ଣ ସମ୍ଭବ ଥିଲା । ମଣ୍ଟୁ ପୁଣି ସିନେମା ଶ୍ରୁତିରେ ପଢ଼ା ଟେବୁଲ୍ ପାଖରୁ ଉଠିଯାଇ, ଦୁଇ ହାତରେ ପିନ୍ଧା କାମିଜ୍‌ର ବୋତାମ ସବୁ ଖୋଲିଦେଇ, ଝରକା ପାଖରେ ଠିଆ ହେଲା ।

ଏଇଠି କାଠଚମ୍ପା ଡାଳରେ ସେଦିନ, କେତେ ସକାଳର ପକ୍ଷୀ କିଚିରି ମିଚିରି ହେଉଥିଲେ । ସେଇଠି ପଶ୍ଚିମ ପଟର ସେଇ ବାରଣ୍ଡାରେ କେତେ ଅକାରଣ ପ୍ରତୀକ୍ଷାରେ ସେଇ କୁଞ୍ଚିତକେଶୀ ବାଳିକା ଉଦାସ ଆଖିରେ ଗୃହିଁ ଠିଆ ହେଉଥିଲା ! ଆଜି କେହି ନାହାନ୍ତି, ସବୁ ନିର୍ଜନ, ସବୁ ଶୂନ୍‌ଶାନ୍, ସବୁ ପରିତ୍ୟକ୍ତ···ଚୈତ୍ରର ନିର୍ଜନ ମଧ୍ୟାହ୍ନରେ କପୋତର ବିଳାପ ପରି !

* * * *

ଫାଟକବାଟେ ସୁରକିବିଛା ରାସ୍ତା ଉପରେ ସାଇକଲ୍ ଚଳାଇ, ସମ୍ଭବତଃ ମିନିର ଦୃଷ୍ଟି ଆକର୍ଷଣ କରିବା ପାଇଁ, ଅକାରଣରେ ସାଇକଲ୍ ଘଣ୍ଟି ବଜାଇ ବଜାଇ, ଅମରେନ୍ଦ୍ର ଆସୁଛି । ବାପାଙ୍କର ଅନ୍ତରଙ୍ଗ ବନ୍ଧୁ ଓ ଏକଦା ସହପାଠୀ, ଜନୈକ ଡେପୁଟୀ ମାଜିଷ୍ଟ୍ରେଟଙ୍କ କୁଳନନ୍ଦନ ଏହି ଅମରେନ୍ଦ୍ର···ମଣ୍ଟୁଠାରୁ ଗୋଟିଏ ବର୍ଷ ସିନିଅର । ସେଥିପାଇଁ ମଣ୍ଟୁ ପ୍ରତି ଅମରେନ୍ଦ୍ରର ପ୍ରଚଣ୍ଡ ତାଚ୍ଛଲ୍ୟ ! ଏହି ବୟସରୁ ସେ ପାଞ୍ଚଫୁଟ ଦୁଇଇଞ୍ଚ ଡେଙ୍ଗା । ପୁଣି 'ସ୍ପୋର୍ଟସ୍‌ମ୍ୟାନ୍' ବୋଲି ଏକ ଗୌରବରେ ତାହାର ଉଚ୍ଚତା ତା ଉପରେ ଯେପରି ଆଉ କେତେ ଇଞ୍ଚ ବଢ଼ିଯାଇଅଛି ।

କଲେଜ ହକି ଟିମ୍‌ର 'ବେଷ୍ଟ ଇଲେଭନ୍' ମଧ୍ୟରୁ ସେ ଜଣେ ! ହାୟ୍ ଦୁର୍ଭାଗ୍ୟ ! ଭୁଲି ଖେଳ, ଆଉ ନିର୍ବୋଧ ହଉଡ଼ାହଉଡ଼ିରେ କୁଶଳତା ପାଇଁ କଲେଜରେ ସବୁ ଝିଅଙ୍କର ଆଖି ଏହି ଲୋକଟା ଉପରେ ! ହୃଦୟ ସମ୍ବନ୍ଧ ଯାହାର ପରିଚୟ ନାହିଁ, ପ୍ରାଣର ସ୍ପନ୍ଦନ, ଆଲୋଡ଼ନ ସେ ବୁଝେନାହିଁ, ଯାହାର ସବୁ ସ୍ପନ୍ଦନ ଖାଲି ପାଦଭଣ୍ଡା ତଳକୁ, ତା'ର ପାଇଁ କିନ୍ତୁ ସବୁ ପ୍ରାଣ ସ୍ପନ୍ଦିତ, ସବୁ ହୃଦୟ ବ୍ୟାକୁଳ ! ମିନା ଲାଗି ତାକୁ ଜୋଇଁ କରିବା ପାଇଁ, ନିର୍ଲ୍ଲଜ ମମୀ'ର ପୁଣି ଘୋର ବ୍ୟାକୁଳତା ! ଅମରେନ୍ଦ୍ର ଦିନେ ଗୋଟିଏ ପ୍ରଚଣ୍ଡ ଆଇ. ଏ. ଏସ୍ ହେବ ବୋଲି, କଥା କଥାକେ ବାପାଙ୍କର ଭବିଷ୍ୟତବାଣୀ ଏକ "ମାନିଆଁ" (mania) ରେ ପରିଣତ ହୋଇଯାଇଛି । ତେଣୁ କାରଣରେ, ଅକାରଣରେ ଅମରେନ୍ଦ୍ର ଅଧିକାଂଶ ଦିନ ଏଠାକୁ ଆସେ । ଆଃ··କି ବରକ୍ତିକର ଉପସ୍ଥିତି ! ଅମରେନ୍ଦ୍ର ପାଇଁ ମମୀ'ର କି ନିର୍ଲ୍ଲଜ ଆଦର !

କୁଞ୍ଚିତକେଶା ସେହି ପ୍ରତିବେଶିନୀର କେଶରାଶିପରି, ଆକାଶର ପିଠିରେ କଳାମେଘ ସ୍ପଷ୍ଟ ହୋଇ ପଡ଼ିଥିଲା । ତାର ଉଦାର ଆଖି ତଳେ କଜଳ ରେଖାପରି ଦିଗ୍‌ବଳୟର କୋଳରେ ବହଳ କଳାମେଘର ଗୋଟିଏ ରେଖା ଲାଗି ରହିଥିଲା । ଆଃ···ସେହି କୁଞ୍ଚିତକେଶା ବାଳିକା, ଆଜି ଏହି ମେଘୁଆ ସକାଳ ଦେହରେ ଯେପରି ଏକ ଧ୍ୟାନରୂପ ପରିଗ୍ରହ କରିଅଛି !

ତଳକୁ ଯିବାର ପ୍ରୟୋଜନ ନାହିଁ । ଏଇଠି ଠିଆ ହୋଇ ସ୍ପଷ୍ଟ ଭାବରେ କଳ୍ପନା କରିହୁଏ, ଅମରେନ୍ଦ୍ରକୁ ଦେଖି ମମୀ'ର କ୍ଲାନ୍ତ ଆଖିରେ ଆନନ୍ଦର ଦୀପ୍ତି, ରେଖାଙ୍କିଣା ମୁହଁରେ ହସର ଝଲକ ! ବାପାଙ୍କର ଚତୁଷ୍କୋଣାରେ ଏକ ଅହେତୁକ ସ୍ଫୂର୍ତ୍ତି !

ତାନପୁରାରେ ମିନାର ସ୍ୱରସଙ୍ଗୀତ ମଧ୍ୟ ହଠାତ୍ ବନ୍ଦ ହୋଇଗଲା ! ଅମରେନ୍ଦ୍ରର ଆସିବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି, ମିନାକୁ ଆଉ ଥରେ ଦେଖିପିବା ଓ ସେହି ସୁଯୋଗରେ ମିନା ସମ୍ବନ୍ଧ ନାନା ଅବାନ୍ତର ଅର୍ଥହୀନ ଆଳାପରେ କେତୋଟି ମୁହୂର୍ତ୍ତ ବିତାଇଦେବା ! ଏଥିପାଇଁ ପୁଣି ଦୁଇଟି ହୃଦୟର ସେ କି ଆକୁଳ ପ୍ରତୀକ୍ଷା !

ମିନ ପାଦ ଚପିଚପି ଅକାରଣରେ ଉପର ବାରଣ୍ଡାର ଶିଢ଼ୀ ପାହାଚରେ ତଳକୁ ଓହ୍ଲାଇ ଆସୁଅଛି । ଅମରେନ୍ଦ୍ର କାନେ ପଦ ଉର୍ଦରକୁ ନଆସି, ଫେରଯାଏ !

ମଣ୍ଟୁ ବାହାର ବାରଣ୍ଡାକୁ ଆସି ଡାକିଲା···"ଏସ୍ତ ମିନ !"

ମିନ ଚମକି ପଡ଼, ତଳେ କ୍ଳେଟି ପାଦରେ ଛନ୍ଦ ହୋଇ ପଡ଼ଥିବା ଶାଡ଼ୀର ଅଞ୍ଚଳଟା ସମ୍ଭାଳି, ମଣ୍ଟୁ ଆଡ଼କୁ ଫେର ଗୃହିଁବାବେଳେ, ଆଉଟିକକୁ ଝୁଣ୍ଟି ତଳେ ପଡ଼ଯାଇଥାନ୍ତା !

ଆଃ···ଭାରି ଏପର ହ୍ୱଂସ୍ରକ ! ମିନର ଆନନ୍ଦ ଆମୋଦ, ତାର ଦୁଇ ଆଖିରେ ଦଣ୍ଡେ ସହ୍ୟ ହୁଏନାହିଁ !

ମଣ୍ଟୁ ଅଭ୍ରିଭାବକସୁଲଭ କଣ୍ଠରେ ପଚାରିଲା··"କେଉଁଆଡ଼େ ଏପର ଆଖିବୁଜ ଦଉଡ଼ୁଛୁ ?"

ମିନ ଥରେ ମଣ୍ଟୁଆଡ଼େ ଗୃହିଁଲା । ତାପରେ ଖତେଇ ହେବା-ପର ମୁହଁରେ ମଣ୍ଟୁଆଡ଼େ ଜଭ ବାହାର କର ଗୃହିଁ, ମିନ ଶିଢ଼ୀରେ ତଳକୁ ଓହ୍ଲାଇଗଲା ! ଏକ ନିଷ୍ଫଳ କ୍ରୋଧରେ ମଣ୍ଟୁ ଚିତ୍କାର କର ଉଠିଲା···"ମିନ" !

ମାତ୍ର ମିନ ସେତେବେଳକୁ ଶିଢ଼ୀବାଙ୍କରେ ଅଦୃଶ୍ୟ ହୋଇ ସାରଥିଲା ।

ମଣ୍ଟୁ ପୁଣି ତାର ପଡ଼ାକୋଠରୀ ଭିତରକୁ ଫେରଆସି, ଅଇନା ଆଗରେ ଠିଆହୋଇ, ବିଭିନ୍ନ ଦୃଷ୍ଟିକୋଣରୁ ନଜର ବିଭିନ୍ନ ଭଙ୍ଗୀ କେତୋଟି ମୁହୂର୍ତ୍ତ ଅଭିନିବେଷ୍ଟ ଭାବରେ ପରୀକ୍ଷା କଲା; ମାତ୍ର ମୁହୂର୍ତ୍ତିକ ପୂର୍ବର ସେ ଐନ୍ଦ୍ରଜାଲିକ ପରିବେଶ ଆଉ ନଥିଲା ।

ଉପରୁ ସ୍ପଷ୍ଟ ଶୁଣିହେଉଛି ମମୀଁର ନର୍ଲ୍ଲଜ ପ୍ରଶ୍ନ···"ତୋର କ'ଣ ହୋଇଛିରେ ଅମ୍ମ ? ଭୁତ ଝିଡ଼ କଳାକାଠ ହୋଇଗଲୁଣି ।"

ତା ଉପରେ ପୁଣି ବାପାଙ୍କର ନିର୍ଲ୍ଲଜ ଟିପ୍ପଣୀ···

"ଅମୁ ହେଲ ସ୍ପୋର୍ଟସମ୍ୟାନ୍ ! ସେଇ ଆଜି ମୋ ପରି ଦିନରାତି ଆରାମଚଉକୀ ଉପରେ ପଡ଼ି ରହିବନାହିଁ ! କିନ୍ତୁ ମଣ୍ଟୁବୋଉ, ଏ ହେଉଛି ସ୍ୱାସ୍ଥ୍ୟର ଲକ୍ଷଣ ! ମୁଁ ମଧ୍ୟ ଅମୁ-ଦିନେ ସ୍ପୋର୍ଟସମାନ୍ ଥିଲି କନା ! ହୁଃ···ଆଜି ପେଟଟା ବଡ଼ି କିପରି ଦିଶିଲାଣି !"

ଅମରେନ୍ଦ୍ରର ସେହି ପୁରୁଣା ଚୁଲିଙ୍ଗି···ଶୋଷ ଲାଗୁଚି; କିନ୍ତୁ ଏ ମେଘୁଆ ସକାଳେ ଶୋଷ ଲାଗେ କାହାକୁ ? ହୁଃ ··! ମମ୍ମୀ କି ନିର୍ଲ୍ଲଜ ! ଅମରେନ୍ଦ୍ରର ଏ ଚୁଲିଙ୍ଗି ଜାଣି ସୁଦ୍ଧା ସେ ସେଥିରେ କାନ୍ଦିପାରୁନାହିଁ !

ମିନାକୁ ଡାକି ମମୀ କହୁଛି "ମିନ, ଅମୁ ଭାଇ ପାଇଁ ଗିଲାସେ ପାଣି ଦେଇଯା !"

ଆ··ଦୁର୍···ଶସ୍ତା ଓଡ଼ିଆ ଉପନ୍ୟାସରେ, ଭାଇଭଉଣୀର ସେହି ପ୍ରହସନ, ଏହି ପରିବାରରେ ପୁଣି ଥରେ ନିର୍ଲ୍ଲଜ ଭାବରେ ଅଭିନୀତ ହେଉଅଛି !

କିନ୍ତୁ ଏ ସବୁର ଉର୍ଦ୍ଧ୍ୱରେ, ଏ କି ନିଃସଙ୍ଗତା କୋଳାହଳ ମୁଖରତା ମଧ୍ୟରେ ଏ କି ଅସହ୍ୟ ନୀରବତା ! ମଣ୍ଟୁ ଅଇନା ସାମନାରେ ଠିଆହୋଇ, ସାର୍ଟର କଲର୍‌ଟା କେଉଁ ଭାବ ଓ ଶୈଳୀରେ ଉପରକୁ ଉଠାଇଲେ, କପାଳ ଉପରେ ମୁଣ୍ଡବାଳର ବିନ୍ୟାସକୁ କି ଆକାର ଦେଲେ, ତାହା ଭାବ ଓ ମୁ··· ଉପଯୋଗୀ ହେବ ତାହା ବିଶେଷଙ୍କ ପରି ପରୀକ୍ଷା ଓ ନିରୀକ୍ଷା କରିବା ପରେ, ଶସ୍ତା ପ୍ରେମ-ଉପନ୍ୟାସର ନାୟକ "ଝଡ଼ ବେଗରେ ବାହାରିଯିବା ପରି" ମଣ୍ଟୁ ସେହି ହେମାଳିଆ, ନିଃସଙ୍ଗ ପଡ଼ାଘର ଭିତରୁ ବାହାରି ବାହାରକୁ ଚାଲିଗଲା ।

* * * *

ଆଜି ରବିବାର । ଆଜି ଛୁଟୀ । ଆଜି କଲେଜ ବନ୍ଦ । ଆଜି ସୁନନ୍ଦ ଆସିବ ନାହିଁ କିମ୍ବା ଶ୍ରୀମନ୍ତ ଆସିବ ନାହିଁ ।

ଚଳେ, ଢଲ୍‌ଘର ବାରଣ୍ଡାରୁ ସାଇକଲ୍‌ଟା ଓହ୍ଲାଇ ନେବା-ବେଳେ, ଚୁରୁଟ୍‌ଧୂଆଁ ଭରା କଣ୍ଠରେ ବାପାଙ୍କର ଡାକ ଶୁଭିଲା···"ମଣ୍ଟୁ !"

ମଣ୍ଟୁ ଏକ ଦର୍ପିତ ଭଙ୍ଗୀରେ ପଛକୁ ଫେରି ବାପାଙ୍କ ଆଡ଼େ ଚାହିଁଲା ।

ବାପାଙ୍କର ସେହି ଚିରାଚରିତ ନିର୍ବୋଧ ପ୍ରଶ୍ନ···"ପରୀକ୍ଷା ଆଉ ଅଳ୍ପଦିନ ପରେ । ରିଭିଜନ୍ ସବୁ ସରିଲାଣି ତ ? ହୁଃ···ଏ ବଂଶରେ କେହି କେବେ ପରୀକ୍ଷାରେ ଦ୍ୱିତୀୟ ହୋଇ ନଥିଲେ ! ଦେଖ,··ତୁମେ କଣ କରୁଛ !"

କିନ୍ତୁ କେଉଁ ବିଶ୍ୱବିଦ୍ୟାଳୟ ଏବେ ବାପାଙ୍କ ପରୀକ୍ଷା ମାର୍କସିଟ୍ ଦେବ ?

ମଣ୍ଟୁ ସକାଳର ମେଘାଚ୍ଛନ୍ନ ଆକାଶ ଆଡ଼େ ଚାହିଁ ଚାହିଁ କୌଣସି ଉତ୍ତର ଦେଲାନାହିଁ ।

ବାପା, ମଣ୍ଟୁ ଆଡ଼େ ଚାହିଁଲେ··ନିଜର ଲେଖା ପୁରୁଣା ହସ୍ତାକ୍ଷର ନିଜେ ପଢ଼ି ନପାରିବା ପରି, ବିଭ୍ରାନ୍ତ ଦୃଷ୍ଟିରେ ।

ବାପା ଆଉ କିଛି ପଚାରିବା ପୂର୍ବରୁ, ମଣ୍ଟୁର ସାଇକେଲ୍ ସୁରକୀବନ୍ଧା ରାସ୍ତା ଉପରେ ଗଡ଼ି ଫାଟକ ବାହାରକୁ ଚାଲିଆସିଥିଲା ।

ସହର ବାହାରେ କୈଶୋରର ଲୀଳାଭୂମି······କାହାର, କେବେକାର ସେଇ ଭଙ୍ଗା ପରିତ୍ୟକ୍ତ କୋଠା । ତା'ର ଚାରିପଟେ ଝାଉଁ, ତେନ୍ତୁଳ, ଆମ୍ବ, ପଣସ, ପିଜୁଳି ଓ ଜାମୁ ପ୍ରଭୃତି ନାନା ଗଛର ଅରଣ୍ୟ । ଏହି ଖର୍ବାକୃତି ଗଛଗୁଡ଼ିକର ଶୀର୍ଷ ଅତିକ୍ରମ କରି, ସେହି ଇଉକାଲିପଟସ୍ ଗଛଟା ଠିଆଥିଲା ଦୁଇଟା ହାତ୍ପା ପ୍ରଶାଖା ମେଲି ଠିଆ ହୋଇଛି, ଏକ ବ୍ୟର୍ଥ-ସ୍ୱପ୍ନ ହୃଦୟ ପରି । ତୋଟା ଭିତରୁ ଗୋଟାଏ କପୋତର ଏକଟଣା ବିଳାପ ଓ ତୋଟାର ଅନ୍ୟ ଗୋଟିଏ କୋଣରୁ ଅନ୍ୟ ଏକ କପୋତର ପ୍ରତ୍ୟୁତ୍ତର· ମେଘାଚ୍ଛନ୍ନ ମଧ୍ୟାହ୍ନ ପାଇଁ ଯେପରି ଏକ ପୃଷ୍ଠଭୂମି ସୃଷ୍ଟି କରି ଦେଇଅଛି ।

ତଳେ ଘାସ ଉପରେ ଆକାଶକୁ ଉଦାସ ଆଖିରେ ଚାହିଁ, ଲେଟି ପଡ଼ିଥିଲେ ମଣ୍ଟୁ ଓ ସୁନନ୍ଦ । ଦୁହେଁ ଦୁଇଟଣ ସିଗାରେଟ୍‌ରୁ ଅଳସ ଭାବରେ ଧୂଆଁର କୁଣ୍ଡଳୀ ଛାଡ଼, ତାହା ଯେଉଁ ଶବରୂପ ସୃଷ୍ଟି କରୁଥିଲା, ତାହା ଲକ୍ଷ୍ୟ କରୁଥିଲେ ।

ସୁନନ୍ଦ ଓ ମଣ୍ଟୁ ମଧ୍ୟରେ କଳହର ସମାଧାନ କେବଠାରୁ ହୋଇ ଯାଇଥିଲା; ତଥାପି ସୁନନ୍ଦର ଆଚରଣରୁ କଳହର ମେଘଗ୍ଲାଇ କଟି ନଥିଲା । ଦୁହେଁ ନୀରବରେ ଉପରର ଆକାଶକୁ ଚାହିଁ, ତୋଟା ମଧ୍ୟରୁ ଭାସିଆସୁଥିବା କପୋତର ବଳାପ ଶୁଣିଶୁଣି, ଘାସଶେଯ ଉପରେ ଦେହଢାଳ ଶୋଇଥିଲେ ।

କେଉଁଠି ଗୋଟାଏ କଦମ୍ବ ଗଛରୁ, କଦମ୍ବର ଗନ୍ଧରେ ସେହି ନିଭୃତ ପରିବେଶ ହଠାତ୍ ଆମୋଦିତ ହୋଇ ଉଠିଲା ।

ମଣ୍ଟୁ ସୁନନ୍ଦର ଗୋଟିଏ ହାତ ପାପୁଲି ନିଜ ହାତ ମଧ୍ୟରେ ଚୁପି ଧରି ପଚାରିଲା···"ଏଟା କି ଫୁଲର ବାସ୍ନାରେ ସୁନନ୍ଦ ?"

ସୁନନ୍ଦ ମଣ୍ଟୁର ହାତରୁ ନିଜର ହାତକୁ ଛଡ଼ାଇ ନେଲନାହିଁ । ଦୁଇ ନାସାପୁଟ ବିସ୍ତାର କରି ଜଳକଣାସିକ୍ତ ପବନରେ କଦମ୍ବର ଗନ୍ଧ ଆଘ୍ରାଣ କରି କହିଲା···"କଦମ୍ବ" !

ଯୁଗେଯୁଗେ ବିରହ ଓ ମିଳନର ମର୍ମ-ପୁଷ୍ପ·····ଶିହରିତ କଦମ୍ବ !

ମୁହୂର୍ତ୍ତିକ ପୂର୍ବେ ମଣ୍ଟୁର ନିର୍ଜନ, ପରିତ୍ୟକ୍ତ, ନିଃସଙ୍ଗ ଓ ମରୁପ୍ରାନ୍ତର ପରି ସୁବିସ୍ତୀର୍ଣ୍ଣ ପୃଥିବୀ, ହଠାତ୍ ମାଡ଼ କୋଉପରି ଅତି ସଂକ୍ଷିପ୍ତ ଓ ସଙ୍କୁଚିତ ହୋଇଗଲା । ମଣ୍ଟୁ ସୁନନ୍ଦର କରତଳକୁ ନିଜ ହାତ ମଧ୍ୟରେ ଚୁପିଧରି ଯେପରି ସେହି ସଂକୀର୍ଣ୍ଣତାର ପରିମାପ କଳ୍ପନା କରୁଥିଲା !

ଫାଲ୍‌ଗୁନର ଚୈତାଳୀରେ ପଥ ଉଡ଼୍‌ଡ଼ିବା ପରେ ସୁନନ୍ଦ କନ୍ତୁ ଏକ ଅକାରଣ ଉତ୍ତେଜନାରେ ହଠାତ୍ ଉଠିପଡ଼ି ତୋଟା ଭିତରକୁ ଧାଇଁ ପଳାଇଲା ।

ମଣ୍ଟୁ ତା ପଛେପଛେ ଧାଇଁ ଛୁଟିଗଲା, ଚପଳ କସ୍ତୁରୀମୃଗ ପରି·· ଯେପରି କେବଳ ଅକାରଣ ଧାଇଁବାରେ ହିଁ ଜୀବନର ପରମ ତୃପ୍ତି ଓ ସାର୍ଥକତା ! ( ୧୯୬୧ )



# ଜୟ-ପରାଜୟ

**ମ**ହାନଗରୀର ନୈମିତ୍ତିକ ସକାଳ··· ··

ସକାଳର ପକ୍ଷୀମାନଙ୍କର କୋମଳ କଳରବ, ଯାହା ଊଷାର ପ୍ରଥମ ଆଲୋକ ସହିତ ଜାଗିଥିଲା—ଲଣ୍ଡନ୍‌ର ସେଣ୍ଟ୍‌ଜେମ୍ସ୍ ବୃନ୍ଦାରେ, ଚୀନା ଶିଳ୍ପୀର ଛବି ପରି ଆକାଶର ପୃଷ୍ଠଭୂମିରେ ମୁଣ୍ଡ ନୁଆଇଁ, ଅଣ୍ଟା ବଙ୍କାଇ ବିଚିତ୍ର ଭଙ୍ଗୀରେ ଠିଆ ହୋଇଥିବା ଜାକରଣ୍ଡା, ଇଉକାଲିପଟ୍‌ସ ଗଛର ଡାଳମାନଙ୍କରେ, ସ୍କୁଟର୍‌ର ତର୍ଜନ, ଭାରି ଟ୍ରକ୍‌ମାନଙ୍କର ଗର୍ଜନ, ପିଚ୍ ରାସ୍ତା ଉପରେ ଛୁଟିଥିବା ମୋଟରକାରମାନଙ୍କର ବହୁ ବିଚିତ୍ର ହର୍ଣ୍ଣ-ଧ୍ୱନି ମଧ୍ୟରେ, ତାହା କେତେବେଳୁ ନୀରବ ହୋଇ ସାରିଥିଲା। ରାସ୍ତାରେ ଟ୍ରାଫିକ୍‌ର କୋଳାହଳ ମୁହୂର୍ତ୍ତକ ପାଇଁ ଯେତେବେଳେ ସ୍ତିମିତ ହୋଇ ପଡ଼ୁଥିଲା, ମହାନଗରୀର ବିମାନଘାଟୀରେ ସକାଳର ଉଡ଼ାଜାହାଜ ମାନଙ୍କର ଆରୋହଣ ଓ ଅବତରଣର ଶବ୍ଦରେ ସକାଳର ଶାନ୍ତ ଅନ୍ତଃସ୍ଥଳ ଯେପରି ଶତଧା ବିଦୀର୍ଣ୍ଣ ହୋଇ ପଡ଼ୁଥିଲା। ସାମରିକ ଜେଟ୍ ଉଡ଼ାଜାହାଜ-ମାନ ଉପରକୁ ଉଠିବାବେଳେ, ମର୍ମଭେଦୀ ଆର୍ତ୍ତନାଦ ପରି ଏକ ବୀଭତ୍ସ ଶବ୍ଦ, ବୋମାବର୍ଷଣର ଏକ କଳ୍ପିତ ବିଭୀଷିକାର ଚିତ୍ର ସୃଷ୍ଟି କରି ଯାଉଥିଲା ! କାଳଜୟୀ, ଶୂନ୍ୟଜୟୀ ଗାଗାରିନ୍ ଓ ଟିଟୋଭ୍ ଯୁଗର ଏ ନୂତନ ପ୍ରାଣ-ସଙ୍ଗୀତ ! ମଣିଷ ଅଳସ ଭାବରେ ବିଛଣାରେ ପଡ଼ି ସେହି ବୀଭତ୍ସ ସଙ୍ଗୀତ ଶୁଣୁଥିଲା !

ଏ ସବୁର ବହୁ ଊର୍ଦ୍ଧ୍ୱରେ ଉନ୍ମତ୍ତ ଶିବତାଣ୍ଡବର ଡମ୍ବରୁ ନାଦ ପରି ବେଳେ ବେଳେ ମେଘର ଗୁରୁଗର୍ଜନ ସବୁ ଶବ୍ଦ ଓ କୋଳାହଳକୁ ମୁହୂର୍ତ୍ତକ ପାଇଁ ବୁଡ଼ାଇ ଦେଇ, ପୁଣି ଟ୍ରାଫିକ୍‌ର ଗର୍ଜନ ମଧ୍ୟରେ ବୁଡ଼ି ଯାଉଥିଲା !

ମେଘର ମନ୍ଦ୍ରନାଦ·····କେଉଁ ସୁଦୂର ସ୍ୱପ୍ନଲୋକର, କେଉଁ ଅନିର୍ଦ୍ଦିଷ୍ଟ କାଳର, କେଉଁ ବିସ୍ମୃତ ଅତୀତର ବାର୍ତ୍ତା ଏହି ମେଘାନ୍ଧକାର ସକାଳରେ ବହନ କରି ଆଣିଥିଲା କେଜାଣି; ସିନେମାର ଫିଲ୍‌ମ୍ ପରି, ମଣ୍ଟୁର ନିଦୁଆ ଆଖି ଆଗରେ ଭାସି ଉଠୁଥିଲା, ଏହିପରି ଲୁହ ଛଳଛଳ, ଅଭିମାନଭରା ମେଦୁଆ ଆକାଶ ତଳେ, ସବୁଜ କ୍ଷେତ ଆଉ ଛୋଟ ଘେରା ଗୋଟିଏ ପଲ୍ଲୀଗ୍ରାମ·····ସେଠି ଗତିହୀନ କାଳର ନିସ୍ତରଙ୍ଗ ବେଳାଭୂମି, ଜୀବନ-ପଥିକ ସେଠାରେ ଯେପରି ସବୁ ଯାତ୍ରା ବନ୍ଦ କରି, ଏକ ଅଚଞ୍ଚଳ, ମୌନତା ମଧ୍ୟରେ କ୍ଲାନ୍ତି ଅପନୋଦନ କରୁଥିଲା !

ଆଃ···ସେଠି କିନ୍ତୁ ସ୍ତିମିତ ଜୀବନବୋଧ — ପ୍ରାକ୍‌ବୈଜ୍ଞାନିକ ପରିବେଶ ମଧ୍ୟରେ ସେଠି ଗତିହୀନ, ସ୍ଥାଣୁ, ଆଦିମ ଜୀବନ !

ବାହାର ରାସ୍ତାରେ, ଟ୍ରାଫିକ୍‌ର କ୍ଷୁଧିତ କୋଳାହଳ ମଧ୍ୟରେ, ଆଳିବୃଦ୍ଧ ବର୍ଷଣାରେ ପଡ଼ି ରହିବାର ଆଉ ଉପାୟ ନଥିଲା । ଗତିର ଲହରୀ-ବିକ୍ଷୁବ୍ଧ ସମୁଦ୍ର ମଧ୍ୟରେ ଟେନାଏ ପ୍ରବାଳ ଦ୍ୱୀପ ପରି ପଡ଼ିରହିଥିବା ଏହି ନରମ ବିଛଣା ଦେହରେ ସୁଦ୍ଧା ଗତିର ତରଙ୍ଗ ଧକ୍‌କା ଲାଗିଥିଲା । ମଣ୍ଟୁ ନିଦୁଆ ଆଖି ଖୋଲି, ସକାଳର ଖବରକାଗଜ ଉପରେ ଆଖି ବୁଲାଇଲା ।

ସକାଳ···ଆଉ ଖବରକାଗଜ । ଆଜି ଯଦି ନବ୍ୟ ଋକ୍-ବେଦରେ ଉଷା-ସୂକ୍ତ କେହି ଲେଖନ୍ତେ, ତା ହେଲେ ଉଷାଙ୍କର ବାହନ ହୁଅନ୍ତା ନାହିଁ, ଅଶ୍ୱିନୀ-ଯୁକ୍ତ ରଥ । ହକର-ବାହିତ ଖବରକାଗଜରେ ହୁଅନ୍ତା ଉଷାଙ୍କର ନିତ୍ୟ-ନୂତନ ଆବିର୍ଭାବ !

ଝଡ଼, ତୋଫାନ, ବନ୍ୟା ଓ ଟାଇଫୁନ୍‌ର ଲୋମହର୍ଷଣକାରୀ ବିବରଣୀରେ, ଖବରକାଗଜର ପ୍ରଥମପୃଷ୍ଠା ପୂର୍ଣ୍ଣ ହୋଇଅଛି । ଏକ ଆଦିମ ବନ୍ୟାର ପ୍ରାଗୈତିହାସିକ ପ୍ଲାବନ ମଧ୍ୟରେ, ଦେଶର ବିସ୍ତୀର୍ଣ୍ଣ ଭୂଖଣ୍ଡ ଜଳମଗ୍ନ । ସାପୁଆର ସାପପେଡ଼ି ଭିତରୁ ଫଣା ଟେକି, ଧ୍ୱଂସ ଚମ୍ପାହିଆ ନାଗ ବାହାରି ଆସିବା ପରି, ଶତଶତ ନଦୀରେ ବନ୍ୟାର ସର୍ପିଳ ଧ୍ୱଂସଲୀଳା ଲକ୍ଷଲକ୍ଷ ଜୀବନକୁ ମରଣର ଆତଙ୍କରେ ଆତଙ୍କିତ କରି ଦେଇଅଛି । ବିସ୍ତୀର୍ଣ୍ଣ ଅଞ୍ଚଳରେ ରେଳରାସ୍ତା ବନ୍ୟାର ସ୍ରୋତରେ ଭାସି ଯାଇଅଛି ! ଉପକଥାର କ୍ଷୁଧିତ ରାକ୍ଷସ ପରି, ମୌସୁମୀ-ଝଡ଼ର ଫୁତ୍କାରରେ ଅସଂଖ୍ୟ ଗ୍ରାମ ଓ ସହର ବିପର୍ଯ୍ୟସ୍ତ ହୋଇ ପଡ଼ିଅଛି !

ଖବରକାଗଜର ସ୍ତମ୍ଭ ପରେ ସ୍ତମ୍ଭ—କେବଳ ଏହି ବିତ୍ପାତର ବିବରଣୀରେ ପୂର୍ଣ୍ଣ !

ବାହାରେ ମୂଷଳଧାରାରେ ବର୍ଷା ପଡ଼ିବା ପାଇଁ ପୁଣି ହଠାତ୍ ଆରମ୍ଭ ହୋଇଗଲା । ଛାତ ଉପରେ ବର୍ଷା ପଡ଼ିବାର ଶବ୍ଦ, ବାହାର ରାସ୍ତାରେ ଟ୍ରାଫିକ୍‌ର କୋଳାହଳକୁ ସୁଦ୍ଧା ନିମଜ୍ଜିତ କରିଦେଲା !

ପାଖରେ କେଉଁଠି ଗୋଟାଏ ଘଡ଼ଘଡ଼ ପଡ଼ିଲା ପରା ! ଛାଣ କଳକଳା ରଡ଼ରେ ଘର ଭିତରେ ସୁଦ୍ଧା କାନଅତଡ଼ା ଖସି ପଡ଼ିଲା !

ମଣ୍ଟୁ ବିଛଣା ଛାଡ଼ି ଉଠି ଠିଆ ହେଲା । ବର୍ଷାର ବେଗ କମିବାର କୌଣସି ଲକ୍ଷଣ ନାହିଁ ! ଟେବୁଲ୍ ଉପରେ, ଦିନ-ପଞ୍ଜିକାରେ ବହୁ କର୍ମ ଓ କର୍ତ୍ତବ୍ୟର ସମସ୍ତ ଲେଖା ହୋଇ ରହିଅଛି···ମାତ୍ର ଏହି ଝଡ଼ ଓ ବର୍ଷା ମଧ୍ୟରେ ସେ ସବୁ ପଣ୍ଡ ହୋଇଯିବ ପରା !

ପ୍ରକୃତି ଆଜି ସୁଦ୍ଧା ଅପରାଜେୟ, ଅସମାଧିତ ଓ ଅଜ୍ଞେୟ ! ମନୁଷ୍ୟର ସମସ୍ତ ବିଜ୍ଞାନ, ତାର ରହସ୍ୟପୁରୀର ଦ୍ୱାରରେ ସୁଦ୍ଧା ପହଞ୍ଚି ପାରିଲାନାହିଁ ! ମନୁଷ୍ୟ ଆଜି ମହାଶୂନ୍ୟରେ ଇନ୍ଦ୍ରଲୋକକୁ ହାତ ବଢ଼ାଇ ସାରିଲାଣି—ତଥାପି, ଦୁର୍ବିନୀତ ଇନ୍ଦ୍ର ଓ ତାହାର ଐରାବତ ହାତୀ ଶୁଣ୍ଢରୁ ପ୍ରାଗୈତିହାସିକ ବର୍ଷଣକୁ, ମନୁଷ୍ୟ ଜୟ କରି ପାରିଲା ନାହିଁ; ଝଡ଼ର

ବେଗକୁ ନିୟନ୍ତ୍ରିତ କରି ପାରିଲାନାହିଁ, ଟାଇଫୁନ୍‌ର ସ୍ୱାଂସ୍ରତାକୁ ଶାନ୍ତ କରି ପାରିଲାନାହିଁ !

ଏକ ଅହେତୁକ ଗ୍ଲାନିରେ ମଣ୍ଟୁର ଉଚ୍ଛ୍ୱସିତ ଚିନ୍ତା ହଠାତ୍ ସ୍ୱପର୍ଯ୍ୟସ୍ତ ହୋଇ ପଡ଼ିଲା ।

ବୃଷ୍ଟି ଓ ଝଡ଼ର ଗର୍ଜ୍ଜନରେ ବାହାରକୁ ବାହାରିବାର ଉପାୟ ନଥିଲା । ମଣ୍ଟୁ କିଂକର୍ତ୍ତବ୍ୟବିମୂଢ଼ ଭାବରେ ଘରଭିତରେ ପାଦଚାରଣା କରୁକରୁ, ରେଡ଼ିଓର ସୁଇଚ୍‌ଟା ଫିଟାଇଦେଲା । କେଉଁ ଗୋଟାଏ ଷ୍ଟେସନ୍‌ରୁ ପ୍ରସାରିତ ସଙ୍ଗୀତର ଅସ୍ପଷ୍ଟ ମୂର୍ଚ୍ଛନା ସେହି ବର୍ଷାମୁଖର ମୀରବତା ମଧ୍ୟରେ କେବଳ ଏକ ଦୁର୍ବୋଧ ଶବ୍ଦ-ତରଙ୍ଗ ସୃଷ୍ଟି କରିଥିଲା ।

ମଣ୍ଟୁ ପୁଣି ମନୁଷ୍ୟର ଅନନ୍ତ ସମ୍ଭାବନାରେ ଆଶ୍ୱସ୍ତ ହେଲା । ମନୁଷ୍ୟ ଦିନେ ଏହି ଦୁର୍ଦ୍ଦମିତ ପ୍ରକୃତିର ସ୍ୱାଂସ୍ରତାକୁ ମଧ୍ୟ ଜୟ କରିବ !··· ସେହିଦିନ ମନୁଷ୍ୟ ହେବ ସର୍ବଜୟୀ, ଅପରାଜେୟ !

* * * *

ମାଣ୍ଟେଲ୍‌ପିସ୍ ଉପରେ ଗୃହସଜ୍ଜାର ଏକ ଉପକରଣ ରୂପେ ରଖାଯାଇଥିବା ଧ୍ୟାନାସୀନ ଗୋଟିଏ ବୁଦ୍ଧମୂର୍ତ୍ତି ଉପରେ, ମଣ୍ଟୁର ଦୃଷ୍ଟି ମୂହୂର୍ତ୍ତିକ ପାଇଁ ନିବଦ୍ଧ ହୋଇଗଲା । ଶିଶୁଜ୍ୟୋତ୍ସ୍ନାର ତରଳ ଅନ୍ଧକାର, ଆକାଶ ଓ ପୃଥିବୀରେ ପ୍ରଶାନ୍ତିର ଯେଉଁ ପ୍ରଲେପ ବୋଳିଦିଏ, ବୁଦ୍ଧମୂର୍ତ୍ତିର ମୁଦ୍ରିତ ଆଖିପତା ଓ ମୁଖମଣ୍ଡଳରେ ସେହି ପ୍ରଶାନ୍ତି ଯେପରି ପ୍ରଲେପିତ ହୋଇଥିଲା । ଏକ ଉତ୍କଟ ମାଦକତା ଦେହର ପ୍ରତି ସ୍ନାୟୁତନ୍ତ୍ରୀରେ ରକ୍ତର ଚଞ୍ଚଳ ପ୍ରବାହକୁ ମନ୍ଥରୀଭୂତ କରି ଅନୁଭୂତିକୁ ଅଥର୍ବ କରି ଦେଲାପରି, ଏକ ଗଭୀର ଧ୍ୟାନମୌନତା ମୂର୍ତ୍ତିଟିର ପ୍ରତିରେଖାକୁ ଅଚଞ୍ଚଳ କରି ଦେଇଥିଲା । ମୂର୍ତ୍ତିଟିର ଦୁଇ ମୁଦ୍ରିତ ଓଷ୍ଠ ଉପରେ ଯେପରି ସେହି ସର୍ବଜୟୀ ମନୁଷ୍ୟ ଉତ୍କୀର୍ଣ୍ଣ ରହିଥିଲା ଗୋଟିଏ ଅନୁଚ୍ଚାରିତ ଚେତାବନୀ ଉଦ୍ଦେଶ୍ୟରେ···

"ନିଜକୁ ନିଜେ ଜୟ କର, ଆତ୍ମଜୟୀ ହୁଅ !"

ଶୂନ୍ୟ-ଯାତ୍ରାର ଏହି ଗତିଶୀଳ ଯୁଗ ସହିତ ଧ୍ୟାନମୌନ, ସ୍ଥାଣୁ ଅଚଞ୍ଚଳତାର ପ୍ରତିରୂପ, ଏହି ଧ୍ୟାନାସୀନ ବୁଦ୍ଧମୂର୍ତ୍ତିର ଅବଶ୍ୟ କୌଣସି ସମ୍ପର୍କ ନଥିଲା । ଶୂନ୍ୟଯାତ୍ରୀର ମୁଖା ଓ ଖୋଳପିନ୍ଧା, ଯାନ୍ତ୍ରିକ-ରାକ୍ଷସ-ମୂର୍ତ୍ତି ଏ ଯୁଗର ବୈଶ୍ବିକ ପ୍ରତିରୂପ ! ତଥାପି ଏବେ ଯେଉଁ ବୌଦ୍ଧିକ-ଅଭ୍ୟୁତ୍‌ଥାନ ହେଉଅଛି, ତାହାର କୋଳାହଳ ମଧ୍ୟରେ ଅନନ୍ତ କରୁଣାର ପ୍ରତିରୂପ ଏହି ଧ୍ୟାନଗମ୍ଭୀର ମୂର୍ତ୍ତିର ବାଣୀ, ଜନଚେତନାରେ ପ୍ରସାରିତ ହୋଇଥାଉ ବା ନଥାଉ, ଏ ଯୁଗର ବଣିକ-ସଂସ୍କୃତି ବୁଦ୍ଧମୂର୍ତ୍ତିକୁ ଗୃହସଜ୍ଜାର ଏକ ଲୋକପ୍ରିୟ, ସୁଲଭ ଉପକରଣ ରୂପେ ଏକ ଲାଭଜନକ ପଣ୍ୟରେ ପରିଣତ କରିଅଛି ! ଗୌତମଙ୍କର ବୁଦ୍ଧତ୍ଵର ଅନ୍ୟ କୌଣସି ଉପଯୋଗିତା ଥାଉ ବା ନଥାଉ, ଉଡ଼ାଜାହାଜ କୋମ୍ପାନୀ ଆଉ ହୋଟେଲ ବ୍ୟବସାୟୀମାନଙ୍କର ବିଜ୍ଞାପନ ପାଇଁ ତାହା ଏକ ଉପଜୀବ୍ୟ ଯୋଗାଇ ଅଛି । ଯୁଗର ଏହି ବୌଦ୍ଧ-ରୁଚିରେ ପ୍ରଭାବିତ ହୋଇ, ବମ୍ବାଇରର ଗୋଟିଏ ଦୋକାନରୁ ମଣ୍ଟୁ ଏହି ମୂର୍ତ୍ତିଟିକୁ କିଣି, କେବେଠାରୁ ଏହି ମାଣ୍ଟେଲ୍‌ପିସ୍ ଉପରେ ରଖିଥିଲେହେଁ, ଏହାକୁ ଅନ୍ତର୍ନିବେଶ ଓ ଉପଲବ୍‌ଧିର ସହିତ ଦେଖିବା ପାଇଁ, ତାହାକୁ କୌଣସି ଅବକାଶ କେବେ ମିଳିନଥିଲା । ଆଜି କିନ୍ତୁ ଏହି ବୁଦ୍ଧମୂର୍ତ୍ତିର ଆବେଗହୀନ ସ୍ଥାଣୁତ୍ଵ, ବାହାରର ବର୍ଷାଭିଜା, ବିରକ୍ତିକର, ମଳିନ ସକାଳଟିକୁ ଆହୁରି ନିର୍ବେଦଗ୍ରସ୍ତ କରିଦେଇଥିଲା ।

ପୃଥିବୀର ବାତାବରଣର ଊର୍ଦ୍ଧ୍ୱରେ, ମାଧ୍ୟାକର୍ଷଣୀ-ଆବର୍ତ୍ତନକୁ ଶବ୍ଦଠାରୁ ଆହୁରି ଦ୍ରୁତ ଗତିରେ ଲଂଘନ କରି, ଅନନ୍ତ ମହାଶୂନ୍ୟ ପଥରେ ବିଚରଣ ଯାତ୍ରା, ଆଜି ମନୁଷ୍ୟର ନୂତନତମ ସଫଳତା ! କିନ୍ତୁ ସେଦିନ ମଧ୍ୟ ମନୁଷ୍ୟ ଏହିପରି ନିଶ୍ଚଳ ଯୋଗାସନରେ ବସି, ସଂସାରର ମାଧ୍ୟାକର୍ଷଣୀ ଆବର୍ତ୍ତନ ଲଂଘନ କରି, ଧ୍ୟାନପଥରେ ମହାଶୂନ୍ୟର ସତ୍ତା ଉପଲବ୍‌ଧି କରିଥିଲା ! ବୁଦ୍ଧ ମଧ୍ୟ ଥିଲେ ଶୂନ୍ୟଯାତ୍ରୀ, ଶୂନ୍ୟ ମଧ୍ୟ ଥିଲା ତାଙ୍କ ସାଧନା ଓ ସିଦ୍ଧିର ଚରମ ଲକ୍ଷ୍ୟ ; ମାତ୍ର ବୁଦ୍ଧଙ୍କର ସେ ଶୂନ୍ୟସାଧନା ବିଶ୍ବବ୍ୟାପୀ ମାନବସମାଜରେ ମରଣ ଓ ଧ୍ୱଂସର ଆତଙ୍କ ସୃଷ୍ଟି କରି ନଥିଲା ! ଆଜି ଆତଙ୍କ ଓ ବିଭୀଷିକାର ଯୁଗରେ ତେଣୁ, ସେପରି

ନିରୁପଦ୍ରବ ଓ ଅହିଂସ ଶୂନ୍ୟଯାତ୍ରୀ ପ୍ରତି ମନୁଷ୍ୟର ସପ୍ରଶଂସ ଓ ଶ୍ରଦ୍ଧାଶୀଳ ଦୃଷ୍ଟି ପଡ଼ନ୍ତା କିପରି··· ? ମଣ୍ଟୁର ମଧ୍ୟ କୌଣସି ଧ୍ୱନି ପଡ଼ୁନଥିଲା !

ଏହିପରି ନାନା ଅସଲଗ୍ନ ଚିନ୍ତା ମଧ୍ୟରେ ମଣ୍ଟୁ ଆଚ୍ଛନ୍ନ ରହିଥିଲା ବେଳେ, ଟେଲିଫୋନ୍‌ଟା ହଠାତ ଆର୍ତ୍ତନାଦ କଲା ପରି ବାଜି ଉଠିଲା ।

ମଣ୍ଟୁ ରିସିଭର୍‌ଟା ଉଠାଇ ନେବା ମାତ୍ରେ, ଅନ୍ୟପଟରୁ ଶୁଭିଲା··· "ଥ୍ରୀ ନଟ୍ ଟୁ ଫାଇଭ୍ ଫୋର୍ ?" କୌଣସି ଟ୍ରଙ୍କ୍-କଲ୍ ନିଶ୍ଚୟ ! ମଣ୍ଟୁ କହିଲା···"ପ୍ଲିଜ୍", ଅନ୍ୟ ପଟରୁ ଶୁଭିଲା··· "ଏ ଟ୍ରଙ୍କ୍-କଲ୍ ଫର୍ ୟୁ··· ସ୍ପୀକ୍ ଅନ୍ ସାର୍ !"

ବାହାରେ ଝଡ଼, ବର୍ଷା ଓ ଟେଲିଫୋନ୍ ଲାଇନ୍‌ରେ ବିଶୃଙ୍ଖଳା ହେତୁ, ମଣ୍ଟୁ ଯେତେ ଚିତ୍କାର କଲେ ସୁଦ୍ଧା, ଟେଲିଫୋନ୍‌ରେ କେବଳ ଏକ ଯାନ୍ତ୍ରିକ ଶବ୍ଦ ଓ ଝଡ଼ର ଗର୍ଜନ ଛଡ଼ା ଆଉ କିଛି ଶୁଭୁ ନଥିଲା । ଅନେକ ସମୟ ପରେ, ଅନ୍ୟପଟରୁ ଏକ କଣ୍ଠସ୍ୱର ଶୁଭିଲା; ମାତ୍ର ସେ କଣ କହୁଥିଲେ, ତାହା ସ୍ପଷ୍ଟ ଭାବରେ ଶୁଣିପାରିବାର ଉପାୟ ନଥିଲା ।

ବହୁ କଷ୍ଟରେ ମଣ୍ଟୁ ଶୁଣିଲା ··ମମୀଙ୍କର ଦେହ ଅତି ସାଂଘାତିକ କେଉଁ ମୁହୂର୍ତ୍ତରେ କଣ ହୋଇ ଯାଇପାରେ । ମମୀ କେତେଦିନ ଧରି ହୃଦ୍‌ଯନ୍ତ୍ରର ବ୍ୟାଧିରୁ ଭୋଗୁଥିଲା; ଏବେ ଅବସ୍ଥା ହଠାତ ସାଂଘାତିକ ହୋଇ ପଡ଼ୁଛି । ମଣ୍ଟୁକୁ ଦେଖିବା ପାଇଁ ମମୀଙ୍କର ପ୍ରବଳ ଇଚ୍ଛା । ଡାକ୍ତରମାନେ ନାନାପ୍ରକାର ଇଂଜେକସନ୍ ଦେଇ, ତାଙ୍କୁ କେବଳ ଅର୍ଦ୍ଧନିଦ୍ରିତ ଓ ଅର୍ଦ୍ଧଜାଗ୍ରତ ଅବସ୍ଥାରେ ବଞ୍ଚାଇ ରଖିଛନ୍ତି । ମମୀଙ୍କର ଚେତା ଯେତେବେଳେ ଫେରି ଆସୁଛି, ସେ ଦେଖିବା ପାଇଁ କେବଳ ମଣ୍ଟୁକୁ ଖୋଜୁଛି !

ବାପା ଆଉ କଣ କହୁଥିଲେ; କିନ୍ତୁ ହଠାତ କେଉଁଠାରେ ଟ୍ରଙ୍କଲାଇନ୍ ଛିଣ୍ଡିଗଲା ପରି !······ଟେଲିଫୋନ୍ ହଠାତ୍ ନୀରବ ଓ ପ୍ରାଣହୀନ ହୋଇପଡ଼ିଲା !

ମଣ୍ଟୁ ଟେଲିଫୋନ୍‌ଟା ଅସହାୟ ଭାବରେ ରଖିଦେଇ, ଖଣ୍ଡେ କାଉଚ୍ ଉପରେ ବସିପଡ଼ିଲା । ଏହି ଯାନ୍ତ୍ରିକ ବୈଦ୍ୟୁତିକତାର ଯୁଗରେ ସୁଦ୍ଧା ମର୍ମୀର ସମ୍ବାଦରେ ଅସହାୟ ଶିଶୁପରି ମଣ୍ଟୁର ଅନ୍ତଃସ୍ଥଳ ଆର୍ତ୍ତନାଦ କରି ଉଠିଲା ।

ମଣ୍ଟୁର ଶୈଶବ ଓ କୈଶୋରର ସେଉଁ କୋମଳ ସ୍ମୃତିଗୁଡ଼ିକ ସହିତ ଏହି ନାରୀ ଅତି ମର୍ମିଳ ଭାବରେ ଜଡ଼ିତ, ସେହି ସ୍ମୃତି ସବୁ ମଣ୍ଟୁର ଆଖି ଆଗରେ, ସିନେମାର ଛବି ପରି, ଗୋଟିକ ପରେ ଗୋଟିଏ ଭାସି ଉଠୁଥିଲା । ଗୋଟା କମଳାଲେମ୍ବୁ ପରି ମୁହଁ ଉପରେ କୁଞ୍ଚିତ ରେଖାର ଜାଲ, ଦୁଇ ମମତାଭରା ଆଖିରେ ଏକ ବେଦନାଭରା ଦୃଷ୍ଟି.....ମର୍ମୀ ନାମରେ ପରିଚିତା ସେଇ ନାରୀ; ସୁଦୂର ପ୍ରବାସର ଏଇ ପ୍ରିୟଜନବର୍ଜିତ ପରିବେଶ ମଧ୍ୟରେ ସୁଦ୍ଧା ତାହାର ମମତାମୟୀ ସତ୍ତା ଉପଲବ୍ଧି କରିହୁଏ...ବର୍ଷଣର କଳରୋଳ ମଧ୍ୟରେ ସୁଦ୍ଧା ସେହି କର୍ମମୟୀ ନାରୀର ଚୁଡ଼ୀ ଓ କଙ୍କଣର ରୁଣିଝୁଣି ଧ୍ୱନି ଶୁଣି ହୁଏ ... ... ଉତ୍ତପ୍ତ କପାଳ ଉପରେ ବର୍ଷାଭିଜା ପବନରେ ତାରି ଅଙ୍ଗୁଳିର ଶୀତଳ ସ୍ପର୍ଶ ଅନୁଭବ କରିହୁଏ !

ଭିତରୁ ବନ୍ଦଥିବା ଦରଜା ଓ ଝରକାର ଫାଙ୍କ ବାଟେ ବାହାରର ଝଡ଼ପବନ ଭିତରକୁ ପଶିଆସିଲା ବେଳେ, ଏକ ଦୀର୍ଘନିଃଶ୍ୱାସର ସାଇଁ ସାଇଁ ଶବ୍ଦ ପରି ଶୁଭୁଥିଲା ! ଝଡ଼ର ସେହି ଦୀର୍ଘଶ୍ୱାସ ମଧ୍ୟରେ ପ୍ରକାଶ ପାଉଥିଲା ଯେପରି, ମର୍ମୀର ବେଦନାର୍ତ୍ତ ଦୀର୍ଘଶ୍ୱାସ ଓ ମଣ୍ଟୁ ପାଇଁ ପ୍ରତୀକ୍ଷା !

ମଣ୍ଟୁ ଏକ ଅସହମୀୟ ଉତ୍କଣ୍ଠାରେ ଘର ଭିତରେ ପାଦଚାରଣା କରିବାରେ ଲାଗିଲା ।

* * * *

[illegible] ବର୍ଷାର ଅନ୍ଧକାର ମଧ୍ୟରେ, ସକାଳେ ଯେଉଁ ଦିନଟିର ଆରମ୍ଭ ହୋଇଥିଲା, ତାହା କେତେବେଳେ ସେହି ଅବିରାମ ବର୍ଷାର ଅନ୍ଧକାର

ମଧ୍ୟରେ ଅଲକ୍ଷିତରେ ଶେଷ ହୋଇଯାଇଥିଲା; ··· କର୍କଟର ଉତ୍କଟ ଯନ୍ତ୍ରଣାରେ ଭୋଗୁଥିବା ରୋଗୀ ମରଫିନ୍ ଇଞ୍ଜେକସନ୍‌ର ତନ୍ଦ୍ରାଚ୍ଛନ୍ନତା ମଧ୍ୟରେ ତଳେ ତଳେ ମୃତ୍ୟୁ ଦ୍ୱାରା କବଳିତ ହେବା ପରି !

ମଣ୍ଟୁ ବାହାର ବାରଣ୍ଡାରେ ଭିଜା ଓ୍ୱାଟରପ୍ରୁଫ୍ ଓ ଜୋତା ହଳକ ଫିଙ୍ଗି ଦେଇ, ଝଡ଼ର ଫୁତ୍କାରରେ, ଖଣ୍ଡେ ଶୁଖିଲା ପତ୍ରପରି ଭିତରକୁ ଉଡ଼ି ଆସିଲା ।

ଟେଲିଫୋନ୍ ସମ୍ପୂର୍ଣ୍ଣ ଅଚଳ ହୋଇ ପଡ଼ିଥିଲା । ଟେଲିଫୋନ୍ ଏକ୍ସଚେଞ୍ଜ୍ ଭିତରେ ବନ୍ୟାପାଣି ପଶି, ଏକ୍ସଚେଞ୍ଜ୍‌ଟିକୁ ଅଚଳ କରି ପକାଇଥିଲା । ଇଲେକ୍‌ଟ୍ରିସିଟି ମଧ୍ୟ ନଥିଲା । ଝଡ଼ର ଆଘାତରେ ରାସ୍ତାକଡ଼ର ବହୁ ଇଲେକ୍‌ଟ୍ରିକ୍ ତାର ଖୁଣ୍ଟ ରାସ୍ତା ଉପରେ ଉପୁଡ଼ି ପଡ଼ିଥିଲା । ଗୃହଅଭ୍ୟନ୍ତରେ ସୂଚୀଭେଦ୍ୟ ଅନ୍ଧକାର । କେଉଁ କ୍ରୁଦ୍ଧ ଅପଦେବତାର ହିଂସ୍ର, ଉନ୍ମତ୍ତ ତାଣ୍ଡବ ପରି ବର୍ଷାର ଆଘାତରେ ଜୀବନ୍ମୃତ ହୋଇ ପଡ଼ିଥିବା ମହାନଗରୀର ଶବ ଉପରେ, ଝଡ଼ ଓ ଅନ୍ଧକାରର ନୃତ୍ୟ ଚାଲିଥିଲା । ପ୍ରକୃତିର ବିଜୟରେ ଦର୍ପିତ ମନୁଷ୍ୟ, ନିଜେ ଯେପରି ନିଜର ଦମ୍ଭମୟ ଅସହାୟତାର କାରାଗାର ମଧ୍ୟରେ ଆତ୍ମରକ୍ଷାର ବାଟ ଖୋଜୁଥିଲା ।

ଗୋଟାଏ ପ୍ରଚଣ୍ଡ ଘଡ଼ଘଡ଼ର କଳକଳା ରଡ଼ିରେ ଘରଟା ଭୂମିକମ୍ପର ଧକ୍କାରେ ଦୋହଲି ଗଲା ପରି ଥରେ ଦୋହଲିଗଲା !

ମଣ୍ଟୁ ନିତାନ୍ତ ଅସହାୟ ପରି ସେହି ସୂଚୀଭେଦ୍ୟ, ପୈଶାଚିକ ଅନ୍ଧକାର ମଧ୍ୟରେ ଅଥର୍ବ ହୋଇ ବସି ପଡ଼ିଥିଲା । କ୍ଳାନ୍ତି ଓ ଦୁଶ୍ଚିନ୍ତାରେ ତାର ଦେହ ନିଶ୍ଚଳ ହୋଇ ପଡ଼ିଥିଲା । ଆଜି ଝଡ଼ ଓ ବର୍ଷା ମଧ୍ୟରେ ସାରାଦିନ, ସେ ଉଡ଼ାଜାହାଜ ଓ ରେଲୱେର ବୁକିଂ ଅଫିସମାନଙ୍କୁ ଧାଇଁ ଧାଇଁ ବିତାଇଛି ; କିନ୍ତୁ ବନ୍ୟାରେ ରେଳରାସ୍ତା ଅନେକ ସ୍ଥାନରେ ଧୋଇ ଯାଇଥିବାରୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ରେଳ ଯାତାୟତ ବନ୍ଦ । ପୁଣି ମଧ୍ୟାହ୍ନ ଠାରୁ ଉଡ଼ାଜାହାଜ ଘାଟିରୁ ବିମାନ ଚଳାଚଳ ମଧ୍ୟ ବନ୍ଦ ହୋଇ ଯାଇଥିଲା । ଗୋଟିଏ ସାମରିକ ଉଡ଼ାଜାହାଜ ଝଡ଼ ଓ ବର୍ଷା ମଧ୍ୟରେ, ତଳକୁ ଓହ୍ଲାଇଲା ବେଳେ, ରନ୍-ଓ୍ୱେର ତଳକୁ ଖସିପଡ଼ି

ଚୂରମାର୍ ହୋଇ ପଡ଼ୁଥିଲା । ଉଡ଼ାଜାହାଜର ବ୍ୟୁ, ପାଇଲଟ୍, ଇଂଜିନିଅର୍ ଓ କେତେଜଣ ଆରୋହୀ ସାଂଘାତିକ ଭାବରେ ଆହତ ହୋଇ ହାସପାତାଳକୁ ସ୍ଥାନାନ୍ତରିତ ହୋଇଥିଲେ ।

ମମୀଁର ରୋଗଶଯ୍ୟା ପାଖକୁ ଧାଇଁ ଯିବାର କୌଣସି ଉପାୟ ନଥିଲା ।

ଝଡ଼ର ଅଶାନ୍ତ ଗର୍ଜନ ମଧ୍ୟରେ, ମଣ୍ଟୁ ଉଦ୍ଦେଶ୍ୟରେ ମମୀଁର ଶେଷ, ଆକୁଳ ଆହ୍ୱାନ ମଣ୍ଟୁର ଅନୁଭୂତିପ୍ରବଣ କାନରେ ବାରମ୍ବାର ବାଜି ଯାଉଥିଲା ।

ଝଡ଼ର ଧକ୍କାରେ ଗୋଟାଏ ଝରକାର ଶିକୁଳୀ ଖସିଯାଇଁ ଝରକାଟା କାନ୍ଥରେ ପିଟିହୋଇ ଖୋଲିଗଲା ।

ମଣ୍ଟୁ ଅନ୍ଧାରରେ ହାତଡ଼େଇ ହାତଡ଼େଇ, ଗୋଟାଏ ମହମ-ବତୀରେ ନିଆଁ ଲଗାଇ, ମାଣ୍ଟଲ୍‌ପିସ୍ ଉପରେ ରଖିଦେଲା । ମହମ-ବତୀଶିଖାର୍ ଶୀତଳ ଆଲୋକରେ ସେହି ଭୟଙ୍କରୀ ରାତି ଆହୁରି ଭୟଙ୍କର ହୋଇ ଉଠିଲା ।

ମହମବତୀର ଆଲୋକରେ, ମାଣ୍ଟଲ୍‌ପିସ୍ ଉପରେ ବୁଦ୍ଧମୂର୍ତ୍ତିର କରୁଣାସ୍ନିଗ୍ଧ ପ୍ରଶାନ୍ତ ଅଭୟଦାନର "ମାଭୈଃ" ବାଣୀରେ ସେହି ପୈଶାଚିକ ପରିବେଶକୁ ଯେପରି ଉଜ୍ଜୀବିତ କରିଦେଲା ।

ସବୁ ଚଞ୍ଚଳ ବେଗର ଊର୍ଦ୍ଧ୍ୱରେ ଯେଉଁ ଅଚଞ୍ଚଳ ସ୍ଥାଣୁତ୍ୱ, ସବୁ ଆବର୍ତ୍ତର ଊର୍ଦ୍ଧ୍ୱରେ ଯେଉଁ ଉଦାର ମୁକ୍ତି, ସବୁ ସଂଘର୍ଷର ଊର୍ଦ୍ଧ୍ୱରେ ଯେଉଁ ସୁଗଭୀର ପ୍ରଶାନ୍ତି, ତାହା ଯେପରି ସେହି ବୁଦ୍ଧମୂର୍ତ୍ତିର କରୁଣାସ୍ନିଗ୍ଧ ମୁଖମଣ୍ଡଳରେ ଉଦ୍ଭାସିତ ହୋଇଥିଲା । ମହମବତୀ ପବନରେ ଗୋଟାଏ ପାଖକୁ ଢଳି ଜଳିବା ଫଳରେ, ସେଥିରୁ ବିନ୍ଦୁ ବିନ୍ଦୁ ତରଳ ମହମ ନିଖିଳ ବେଦନାର୍ତ୍ତ ପ୍ରତି ଭଗବାନ କରୁଣାରେ ଯେପରି ତଳେ ଝରି ପଡ଼ୁଥିଲା । ଅସହାୟ ପରି, ମଣ୍ଟୁ ମାଣ୍ଟଲ୍‌ପିସ୍ ଉପରେ ସେହି ମୂର୍ତ୍ତିର ପାଦତଳେ ମୁଣ୍ଡ ଲଗାଇଲା ! ( ୧୯୬୧ )

# ଦ୍ୱିପଦର ଗ୍ରାସ

"ମୋ ଧନ ମାଳରେ···ମୋ ସୁନା ମାଳରେ······",

ମଡ଼କାନ୍ଦଣା ପରି ଲହରିଆ ବାହୁନାର ବିରାମ ନାହିଁ ।

ସକାଳର ଖରା ତଥାପି ଭଲ କରି ଫିଟି ନାହିଁ । ପାତଳ କୁହୁଡ଼ିର ପର୍ଦ୍ଦା ଉହାଡ଼ରେ ଗଜପତିପୁର ଗାଁ ଉଷ୍ମ ପହଡ଼ ଘୁଞ୍ଚି ତଥାପି ଉଠି ନାହିଁ । କୁମ୍ଭାଟୁଆଟାଏ ନଈକୂଳ ବାଉଁଶଝାଡ଼ ଭିତରୁ ରହି ରହି ହୁମ୍ବର ଉଠୁଛି । ତାର ପ୍ରତିଧ୍ୱନି ଉଠୁଛି ଗାଁ ମୁଣ୍ଡ ତେନ୍ତୁଳିଗଛର ଝଙ୍କାଳିଆ ମଥାନ ଭିତରୁ ।

ଏମିତି ସକାଳୁଟାରୁ ପୁଣି ମଡ଼କାନ୍ଦଣା ବାହୁନିଲା କିଏ ? ଗାଁରେ କେହି ବାଧିକା ପଡ଼ିବା କଥା ତ ଜଣା ନଥିଲା ! ରାତିଟା ଭିତରେ କାହା ଜୀବ ଆଜି ଉଡ଼ିଗଲା କି ?

ବିଛଣାରେ ପଡ଼ିପଡ଼ି ସମସ୍ତେ ସେଇ କାନ୍ଦଣା କାନପାତି ଶୁଣୁଥିଲେ; ଆଜି ସେଇ ଅମଙ୍ଗଳ କଥା ଭାବୁଥିଲେ ।

ଇଏ ତ ରଥିଆବୋଉ କଉଶଲ୍ୟାର କଣ୍ଠ ପରି ଲାଗୁଛି······ କଉଶଲ୍ୟାର କଣ୍ଠସ୍ୱରରେ ପିଠାକଂସାର ସେଇ ଝଙ୍କାରଥାଏ, ତାହା

ଏଇ କରୁଣ ବାହୁନାରେ ସୁଧା ଆଜିର ଉତ୍କଟ ହୋଇ ଉଠିଥିଲା ; ମାତ୍ର ସେଥିରେ ସ୍ୱଭାବସୁଲଭ ଖାର ବା ଖାଉଣ୍ଡ ରସ ନଥିଲା । ଦପଦହରିଆ କପୋତ ପରି ସେ କଣ୍ଠସ୍ୱର ଚଳପି ଉଠୁଥିଲା···"ମୋ ଧନମାଳରେ··· ମୋ ସୁନାମାଳିରେ······"

ସଂସାରରେ ଝିଅ ପାର୍ବତୀ ଛଡ଼ା, କଉଶଲ୍ୟାର ତ ଆଉ କେହି ନାହାନ୍ତି ! ପାର୍ବତୀ ପୁଣି ବାହା ହୋଇ ତିନିବର୍ଷ ହେଲା ଶାଶୁଘର ଗଲାଣି ! ପାର୍ବତୀ କୁଆଡ଼େ ପୁଆତି ହୋଇଥିଲା ! ସେଦିନ ସାନଭାଇର ସଙ୍ଗ କରି କଉଶଲ୍ୟା ପଠାଇଥିଲା ନନ୍ଦପୁର···ପାର୍ବତୀର ଶାଶୁଘର ଗାଁ, ଏଠୁ ଓଳିକର ବାଟ !

ସେଇ ପାର୍ବତୀର କଣ ହେଲା କି ଆଉ ? କେଜାଣି ! ସାଉଁତସାଇ ମୁଣ୍ଡରେ କଉଶଲ୍ୟା ଘର···ତା'ପରେ ଗୋଟାଏ କଣ୍ଟାବଣ, ସେଠୁ କେଇ ଘର ପାଣସାହି···ତା'ପରେ ସାଉଁତସାହିର ଗାଁ ସରିଲା !

ଅଳସ ଭାଙ୍ଗି ଭାଙ୍ଗି ଭିଡ଼ି ମୋଡ଼ି ହୋଇ ହାଇ ମାରିମାରି, ହରିନାମ ସ୍ମରଣ କରିକରି, କଟୋଉ ଠକ୍ ଠକ୍ କରି, ଗୁଡ଼ାଖୁ ଟେଳା ଧରି ଗାଁର ମାତବରମାନେ, ଦାଣ୍ଡକୁ ବାହାରୁ ଥିଲେ ଘଟଣାଟା କଣ ଜାଣିବା ପାଇଁ !

କଉଶଲ୍ୟା ଦୁଇବର୍ଷ ସଂସାର କରିବା ପରେ ବିଧବା ହୋଇଥିଲା ! ତା ସ୍ୱାମୀ ଅକାଳ ମଡ଼ୁଡ଼ିରେ ଗଲା, କଉଶଲ୍ୟା କୋଳରେ ତିନିବର୍ଷର ପୁଅ ରଥିଆ ଆଉ ବର୍ଷକର ଝିଅ ପାର୍ବତୀକୁ ଛାଡ଼ି । ପାଞ୍ଚବର୍ଷ ନପୁରୁଣୁ ରଥିଆ ବି ଗଲା ମେଲେରିଆ ଜରରେ । ପଛରେ ରହିଲା କେବଳ କଉଶଲ୍ୟାର ରଥିଆବୋଉ ନାଁ ଟା ! ପାର୍ବତୀକୁ ତା ମାମୁଁ ତ ଦସ୍ତା କୌଣସି ମତେ ହାତକୁ ଦିହାତ କରି ଦେଇଥିଲା, ତୋଳାକନ୍ୟା ପରି !

ସଂସାର ଭିତରେ କଉଶଲ୍ୟା, ଆଉ ଗୋଟିଏ ଛେଳି !······ ସବୁ ଯାଇଁ ହେଲେ ସେତିକି ରହୁ ! ସକାଳ ସଂଜେ କଉଶଲ୍ୟାର ସେଥିପାଇଁ ନିତ୍ୟ ପ୍ରାର୍ଥନା !

କଉଶୁଲ୍ୟାକୁ ବଅସ ସ୍ୱଳଣ ପାଖାପାଖି । ସମସ୍ତେ କହନ୍ତି ଅଣ୍ଡିରାଚଣ୍ଡୀ; ତଥାପି କଉଶୁଲ୍ୟାର ମୁଣ୍ଡରେ ସବୁବେଳେ ଗୁଣ୍ଡଖଣ୍ଡେ ଓଢ଼ଣା । ସେଥିପାଇଁ ତା ଆଡ଼େ ବେଳେବେଳେ ଗୋଟାଏ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଚାହିଁବାକୁ ସଜତବପୁର ଗାଁରେ ବରବୁଢ଼ାମାନଙ୍କର ଅଭାବ ମଧ୍ୟ ନଥିଲା ।

ସେଇ କଉଶୁଲ୍ୟା ଏବେ, ତା ଦାଣ୍ଡ ସଜନାଗଛ ମୂଳେ ଧୂଳିରେ ଗଡ଼ୁଥିଲା, ଆଉ ବାହୁନୁଥିଲା ··· "ମୋ ଧନ ମାଳରେ···ମୋ ସୁନା ମାଳରେ"······

ଦେହରେ ଥାନଅଥାନରୁ ଲୁଗା ଖସି ପଡ଼ୁଥିଲା । କଣ ମିଶ୍ରେ ଆଉ ସବୁ ମାହାନ୍ତଙ୍କ ପର ଯେଉଁ ମାତବରମାନେ ଘଟଣା କଣ ଜାଣିବା ପାଇଁ ସେଠାରେ ପହଞ୍ଚିଥିଲେ, ସେମାନେ ସେହି ଥାନଅଥାନ ଆଡ଼େ ନଜର ଅଜ୍ଞାତସାରରେ ବେଳେବେଳେ ଚାହିଁ; ଘଟଣାଟା କଣ ବୋଲି ସହାନୁଭୂତିପୂର୍ଣ୍ଣ କଣ୍ଠରେ ବାରମ୍ବାର ପଚାରୁଥିଲେ; ମାତ୍ର କୌଣସି ଉତ୍ତର ପାଉ ନଥିଲେ !

କଉଶୁଲ୍ୟାର କଣ୍ଠରେ କେବଳ ସେହି ଲହରିଆ ବିଳାପ······ ମୋ ଧନମାଳରେ······

ବହୁ ସମୟ ପରେ ଲୋକେ ବୁଝିଲେ, ଏ ଧନମାଳ ହେଉଛି, କଉଶୁଲ୍ୟାର ଖାସି-ଛେଳି ! ତାହାର ବହୁ ନାମ ମଧ୍ୟରୁ ଧନମାଳ ଓ ସୁନାମାଳ ପ୍ରଭୃତି ମଧ୍ୟ ଗୋଟିଏ ଗୋଟିଏ ନାମ । କେତେବେଳେ କଉଶୁଲ୍ୟା ତାକୁ ଡାକେ କଳାମାଣିକ, କେତେବେଳେ ଡାକେ କଳାଗୁନ୍ଦ, କେତେବେଳେ ଡାକେ କଳାହାଣ୍ଡି···କଉଶୁଲ୍ୟାର ମାନସିକ ଅବସ୍ଥା ଅନୁସାରେ !

ଜହ୍ନିପଡ଼ା ଦୋଳମେଳଣରୁ କଉଶୁଲ୍ୟା ସେହି ଖାସୀଟି ପାଇଁ କିଣି ଆଣିଥିଲା ମାଳେ ଘୁଂଗୁର । ଘୁଂଗୁର ମାଳକ ବେକରେ ପିନ୍ଧି ଖାସିଟି ଯେତେବେଳେ କୁଦ କୁଦ ଘର କେଉଟାଣି କଉଶୁଲ୍ୟାର ଦ୍ୱ' ଓଠ ଭିତରେ ମୁଣ୍ଡ ମାଡ଼ି ଦିଏ, ତଳପେଟକୁ ଭୁଷିଦିଏ, କଉଶୁଲ୍ୟା ସେତେବେଳେ

ଏକ ଅନାସ୍ୱାଦିତ ପୂର୍ଣ୍ଣତାରେ କୃତକୃତ୍ୟ ହୋଇଉଠେ ! ଦଣ୍ଡେ ତାକୁ ଆଉଁସି ତା ଥୋମଣିରେ ମୁହଁ ଘଷି ବୋକ ନଦେବା ପର୍ଯ୍ୟନ୍ତ, ତା ମନ ଥୟ ଧରେ ନାହିଁ

ସେହି ଧନମାଳ, ସୁନାମାଳ, କଳାମାଣିକକୁ କାଲି ରାତିରେ କିଏ ଗୁହାଳରୁ ଫିଟାଇ ଖେଦାଇ ନେଇଗଲା । ଫଂଜେସ ନଫିଟୁଣୁ, ଗୁହାଳରେ ଧନମାଳର ମେଁ ମେଁ ଆବ୍‌ଦାରିଆ ଡାକ ନଶୁଣି, କଉଶୁଳୀର ମନରେ ପାପ ଛୁଇଁବାରୁ, ନିଦରୁ ଉଠି ଗୁହାଳ ଦେଖିବା ବେଳକୁ, ଗୁହାଳ ଖାଲି······ଧନମାଳକୁ କିଏ ଫିଟାଇ ନେଇଥିଲା ! ପଘାରୁ ଖଣ୍ଡେ ଛିଣ୍ଡି ପଘାରେ ଲାଗିଥିଲା କେବଳ !

ପାଣପାଖରେ ରଜଆ ଜେନାର ବାଡ଼ପଟ ଗୁହାଳଗୁଳିଆରେ ରଜଆ ଲୀଟା ଫୁଙ୍କି ଫୁଙ୍କି ସେତେବେଳକୁ ନସ୍ଥାନ ହୋଇ ପଡ଼ିଥିଲା । ଓଦା ଲିରେ ନିଆଁ ଖାଲି କୁହୁଳି କୁହୁଳି ଧୂଆଁ ସୃଷ୍ଟି କରିଥିଲା । ସେହି ଧୂଆଁ ସାହିଦାଣ୍ଡ ଉପରେ କୁଣ୍ଡଳୀ ମୋଡ଼ି ସେପରି ଉଠୁଥିଲା, ତାହା ସେମାନେ ନଦେଖିଲେ ବି, ଦୂରରୁ ଅନ୍ୟମାନଙ୍କ ଆଖିରେ ପଡ଼ିବା ଭଳି ଥିଲା ।

କାଲି ଚେମ ଜେନାର ସ୍ୱର୍ଯ୍ୟମଉଳ ହରିକାଣ୍ଡୀ କୁଣିଆ ଘର ଆସିଥିଲା । ସେହି ହରିକାଣ୍ଡୀର ଚର୍ଚ୍ଚା ପାଇଁ ଲୋଡ଼ାଥିଲା ଗୋଟିଏ ଛେଳି । ସେଥିପାଇଁ ହାତ ପାଆନ୍ତାରେ ମିଳି ଯାଇଥିଲା କଉଶୁଳୀର ଧନମାଳ !

ଶିଳମରୁ ଗଞ୍ଜେଇ ସବୁ ପୋଡ଼ି ପାଉଁଶ ହୋଇଥିଲା । ଓସରୁ ତାଡ଼ିମଦ ସବୁ ଶେଷ ହୋଇଥିଲା । ପିତା ଶୁଖୁଆର ମୁଣ୍ଡ କେତୋଟା, ତଳେ ସନ୍ତସନ୍ତିଆ ଚଟାଣ ଉପରେ ବିଞ୍ଚି ପଡ଼ିଥିଲା । ଚେମଜେନା, ଛେଳି ମାଉଁସ ତକ ଗୋଟାଏ ଟୋକେଇରେ ପୂରାଇ, ଯେଥିରେ ଲୁଣ ଆଉ ବଟାହଳଦୀ ଗୋଳାଉଥିଲା । ଚୁଲୀ ପାଖରେ ଆଣ୍ଠେଇ ଫୁଙ୍କି ଫୁଙ୍କି ରଜଆର ଆଖି ଦୁଇଟା ପିଆଜ ପାଖୁଡ଼ା ପରି ରଙ୍ଗା ଦିଶୁଥିଲା । ସେ ନିଃଶ୍ୱାସ ନେବାକୁ ଦଣ୍ଡେ ବସି ପଡ଼ି ନାକ ପୋଛି କହିଲା···"ହ୍ୟାପଃ,

ଆଲୁ ସେ କଅଣ୍ଟ ଜନ୍ତାଳ । ଇଏ ନାଥିଆଇ ଯୋଉଠି ଥିବ, ସେଠିପରି ହାତର ଚଢ଼େଇ ଡୁବାକୁ ଉଡ଼ିଯିବ ! ଏଠେବେଲକୁ ସାଗୁଆଣ୍ଡ ପେଟରେ କୁଆଡ଼େ ହଜମ ସରନ୍ତାଣି ! ଅଡ଼ଜ୍ଞା ଚୂଲ୍ଲ ବ ଶନା ଜଳଲ୍ଲ ନାଇଁ ! କୁଆଡ଼ୁ ଆଣିଲା ଗଂଜେଇ, ଆଉ ଚାଡ଼ୁ···ସେଇଆ ଗିଳି ଗିଳି ଗ୍ରଣ୍ଡ କା ବାର !"

ଚାଡ଼ୁ ଆଉ ଗଞ୍ଜେଇ ନଶା କଟିବା ବେଳକୁ ସ୍ତଣ୍ଡଅଧ ଗଡ଼ଯାଇ-ଥିଲ୍ଲ । ପାହାନ୍ତିଆ ତାରଟା ବାଉଁଶଝାଡ଼ ମଥାନ ଉପରେ ଦପ୍ ଦପ୍ ହୋଇ ଜଳ ଉଠିଥିଲ୍ଲ । ଛେଳଟା ଅଜଣା ଝଣ୍ଟରେ ବନ୍ଧା ହୋଇ, ସାମନାରେ ଫଟେ ଦାଢ଼ୁଆ କଣ୍ଟଗ୍ର ଦେଖି, ପ୍ରାଣମୂର୍ଚ୍ଛା ମେଁ ମେଁ ରଡ଼ ପକାଇଥିଲ୍ଲ !

ଚଣ୍ଡିଲୁ ଦାମ ଜେନାର ନଶା କଟିଲ୍ଲ । ସ୍ତଣ୍ଡ କାବାର୍ ହେଉଥିବା ଦେଖି, ସେ ଛେଳଟା ବେକରେ ଗୁେଟେ ପକାଇ ମୁଣ୍ଡ ଗଣ୍ଡି ଦଗଡ଼ କଚଦେଲ୍ଲ । ମେଁ ମେଁ ରଡ଼ ଶୁଣି, ସକାଳେ କଏ ଯଦ ଛେଳ ଖୋଜ ଆସନ୍ତ, ତା'ହେଲେ ଜଣେ କଥା ସଇଲ୍ଲ !

ଦାମ ଛେଳ ଚମଡ଼ା ଆଉ କଟା ମୁଣ୍ଡଟା ଗୁହାଳ କଣରେ ଲୁଗ୍ନଇ ରକ୍ଷରେଖି କହୁଥିଲ୍ଲ···"ଯାଇଁଲ ଅର୍ଜୁନାଇ, ସେଥର ଦେବଘି କଲକତାରୁ ଫେର ତାଙ୍ଗାକୁ ଆମକୁ ନମତା କରଥିଲ୍ଲ । ଶିରବଣ ମାସ । ମେଘ ଦୁଲୁକୁଚ । ତାଙ୍କ ଗାଁ ହାଟପଦାରେ କୁସୁନସାଉ ମହାଜନର ଗୋଦାମ ଦେଖିଚ ନାଁ ! ଦେବଘି ସେଇ ଗୋଦାମ ପଚ୍ଛଃକଟେ କାନ୍ଥ ଫୁଟେଇ ଭିତରୁ ଘିଚ ଆସିଲ୍ଲ ଟିଂଣ ଘିଅ ଆଉ ବସ୍ତାଏ ଅଟା । ଗାଁରୁ ଫିଟେଇ ନେଇ ଆସିଲ୍ଲ ଗୋଟାଏ ହୋଃ ଖାସୀ ! ଓଃ ··· ସେ ଯୋଉ ଜନ୍ତାଳ ! ହ୍ୟାପଃ ଏଠି ସବୁ ହେଲ୍ଲ, ଅଟା ଘିଅ ଟିକଏ ମିଳଲ୍ଲ ନାଇଁ ! ନଇଲେ ସେଦ୍ଦନ ମିଟକା ପରଟା ହେଇଥାନ୍ତା ! ପରଟା ସାଙ୍ଗକୁ ସିନା ସାଗୁଆଣ୍ଡ !"

ଡେମଜେନା କଟାପିଆ ଆଖିରେ ଅନାଇଁ ବସିଥିଲ୍ଲ ଚୋକେଇ ଭିତରେ ରକ୍ତବୋଳା ତାଜା ମାଂସ ଆଡ଼େ । କେତେଦଳୁ ପାଟିରେ ଏମିତ ମାଉଁସ ଖଣ୍ଡେ ବାଜ ନାଇଁ ! ରଥିଆମା ଖାସୀଟା ପୁଣି ଭଣ୍ଡି ଚିକଣିଆ । ଦେହରୁ ଚର୍ବି ଖସି ପଡ଼ୁଛୁ !

ଟେମ ଜେନା ପାଟି କରି ଉଠିଲା…"ହେ-ମ କେତେ ବାହାପିଆ କଥା ଗପି ଯାଉଚୁ ! ରାତି ପାହୁ ସକାଳ ହେଲାଣି; ଚୁଲ୍ଲାଟା ବି ଏତେ ବେଳଯାଏ ଜାଳି ପାରିଲୁ ନାହିଁ !"

ସେତେବେଳକୁ ପାଣସାଇର ଦଳେ ଲଙ୍ଗଳା ପିଲା ଆଉ କେତେଟା କୁକୁଡ଼ା ଗୁହାଳ ସାମ୍ନାରେ ଉଙ୍କି ମାରିବା ଆରମ୍ଭ କରିଥିଲେ । ସେମାନଙ୍କୁ ତଡ଼ିବା ଉଦ୍ଦେଶ୍ୟରେ ଟେମ ଶିଙ୍କାରି ଉଠିଲା…"ପଳାବେ ଶଳା, ଏଠି କାହିଁକି ମେଳା ବାନ୍ଧିଚ ?"

ଗଜୁଆ ଚୁଲିରେ ମୋଞ୍ଜିବାକୁ ଖଣ୍ଡେ ଶୁଖିଲା ବାଉଁଶ ଆଣିବା ପାଇଁ ବାଡ଼ିପଟକୁ ଉଠି ଯାଇଥିଲା, ସକାଳର କଅଁଳଖରା ସେତେ-ବେଳକୁ ବାଉଁଶ ଝାଡ଼ ମଥାନରୁ ଖସି ଘରଆଡ଼େ ଫିଟି ଆସିଥିଲା ।

କଉଶୁଲ୍ୟାର ଗଦାଧର ବାହୁନା ତଥାପି ଶୁଭୁଥିଲା ·····"ମୋ କଳାମାଣିକରେ··ମୋ ସୁନାମାଳିକ, କଏ କୁଆଡ଼େ ନେଲା ରେ !"

ତାହାର ଉତ୍ତରରେ ଗଜୁଆ ଶିମରଞ୍ଜାରୁ ଖଣ୍ଡେ ଶୁଖିଲା ବାଉଁଶ ଭିଡ଼ ଆଣୁଆଣୁ, ଜନନେନ୍ଦ୍ରିୟ ସମ୍ପର୍କିତ ଏପରି ଏକ ସ୍ଥାନ ବଢ଼ପାଟି କରି କହି ଉଠିଲା, ଯାହା ଏଠାରେ ମୁଦ୍ରଣ-ଯୋଗ୍ୟ ନୁହେଁ !

ହାଣ୍ଡିରେ ମାଉଁସ ଓଜାଡ଼ିବା ପାଇଁ ସବୁ ପ୍ରସ୍ତୁତ । ନାଥ ଦାଣ୍ଡ ଆଡ଼କୁ ପରସ୍ତ୍ରୀ କରିବା ପାଇଁ ଯାଇଥିଲା; ସେ ଅଣ୍ଟା ଧରିଧରି ଦୋଇ ଆସି କହିଲା··· "ପଳା, ପଳା, ଗାଁ ଲୋକେ ଏଆଡ଼େ ଆସୁଛନ୍ତି ଛେଳି ଖୋଜିବା ପାଇଁ !"

ଘଣ୍ଟେଣାଟା କଣ ବୁଝି ବୁଝି, ଗଜୁଆ ଜେନାର ଗୁହାଳ ସାମ୍ନାରେ ଆସି ଜମି ଯାଇଥିଲେ, ଗାଁର ମୁଖିଆ, ମାତବର ମାନେ !

ସବୁ ମାହାନ୍ତି ଓ୍ୱାର୍ଡ଼ ମେମ୍ବର ହେଇଚନ୍ତି ଏଇ ଗାଁରୁ । ସହରରେ ଓକିଲମାନଙ୍କ ପିରସ୍ତାକୁ ତାଙ୍କର ଯିବାଆସିବା କର୍ଣ୍ଣସାର ଲାଗିଥାଏ,

କେତେବେଳେ ସାକ୍ଷୀରେ, ଆଉ କେତେବେଳେ ବା ମକଦମା ତଦ୍‌ବିର କରିବା ପାଇଁ ! ଯଦୁ ମାହାନ୍ତିଙ୍କ ପଛେପଛେ ଦଳେ ଗାଁ ଲୋକ । ଯଦୁ ମାହାନ୍ତିଙ୍କୁ ଗୁହାଳ ଆଡ଼େ ଆସୁଥିବା ଦେଖି, ଗୁହାଳ ଭିତରେ ପାଣମାନଙ୍କ ଆଖିରେ ଫୁଟି ଉଠିଲା ଶଙ୍କିତ ଶୃଗାଳର ଦୃଷ୍ଟି । ମାଉଁସ ଟୋକେଇଟା ଧରି ପଳାଇବା ପାଇଁ, ସେମାନେ ଯେପରି ଏଣିକି ତେଣିକି ଗୁହାଳ ବାଟ ଖୋଜି ହେଉଥିଲେ ; ମାତ୍ର ସେଥିପାଇଁ ଆଉ ବେଳ ନଥିଲା ।

ଯଦୁ ମାହାନ୍ତି ଗମ୍ଭୀର ଭାବରେ ମୁଣ୍ଡ ନୁଆଇଁ ଗୁହାଳ ଖୁଲିଆ ଭିତରକୁ ପଶି ଆସିଲେ ।

ସାମ୍ନାରେ ରକ୍ତବୋଳା କୁଢ଼େ ମାଉଁସ । ଯଦୁ ମାହାନ୍ତି ଆଉ ତାଙ୍କ ଗହଣରେ ଯେଉଁମାନେ ଥିଲେ; ଟୋକେଇ ଭିତରେ କଞ୍ଚାମାଂସର କୁଢ଼ ଦେଖି, ଶୁଖିଲା ଓଠ ଉପରେ ଜିଭ ବୁଲାଇବାକୁ ଲାଗିଲେ । ଖାସୀ ମାଉଁସ ସେର ପାଞ୍ଚଟଙ୍କା; ସେଥିରେ ପୁଣି ସେସବୁ ବୁଢ଼ୀ କଚା ମାଉଁସ···ହ୍ୟାପଃ, ଖାସୀଙ୍କ ଆଣ୍ଠ, ଗୋଡ଼େଇଁ ମା ! ଏମିତି ଚର୍ବିବୋଳା ଖାସୀ ମାଉଁସ ମିଳୁଚି କୋଉଠୁ ?···ସେଥିରେ ପୁଣି ତାଜା ରକ୍ତବୋଳା ଯୋଡ଼ ମୁଣ୍ଡା ମୁଣ୍ଡା କଳା କଳିଜା ମାଉଁସ କୁଢ଼ ଉପରେ ଦିଶୁଥିଲା, ସେଇଠି ସମସ୍ତଙ୍କର ଆଖି ଦଣ୍ଡେ ଅଟକି ଯାଇଥିଲା ।

ପାଣ ମାନଙ୍କ ପ୍ରତି ସେମାନଙ୍କର କ୍ରୋଧ ସହିତ ମିଶି ଯାଇଥିଲା ଏକ ପ୍ରଚଣ୍ଡ ଈର୍ଷା ··· ଶଳେ, ଏ ମାଉଁସ ତକ ଏକା ଏକା ଗିଳିଥାନ୍ତେ ସିନା !

ଯଦୁ ମହାନ୍ତି ପ୍ରଚଣ୍ଡ କ୍ରୋଧରେ ପଚାରିଲେ··· "ଏ ଖାସୀ କୋଉଠୁ ଆଣି ଏଠି ଲୁଚାଇ କାଟିଲ ଶଳେ ?"

ଗଜୁଆ ଅମ୍ଳାନ କଣ୍ଠରେ ଉତ୍ତର ଦେଲା··· "ଆମେ କାହିଁକି ଲୁଚେଇ କାଟିବୁ ମ ? ସୁରୁଜ-ମଲଚର ତାଙ୍କ ଗାଁରୁ ଗୋଟାଏ ଖାସୀ ଆଣିଥିଲେ ଜବାଇ କରିବା ପାଇଁ ! ପଚାରନ୍ତୁ ନାଁ ତାଙ୍କୁ !"

ଯଦୁ ମହାନ୍ତି ଟୋକେଇରେ ତାଜା ମାଂସ କୁଢ଼ ଆଡ଼େ ପୁଣି ଥରେ ଚାହିଁ, ସେଥିରୁ କି ପ୍ରେରଣା ପାଇଲେ କେଜାଣି; ଗଜୁଆ ଗାଲରେ ଗୋଟାଏ ଚଟକଣା କଷି ଦେଇ କହିଲେ···"ଚୋରି, ଚୋରି ଉପରେ ପୁଣି ସିନା ଜୋର ! ଭଲ ଦଶା ଅଛି ତ ମାନିଯାଅ, ମୁଣ୍ଡ ଚମଡ଼ା କୋଉଠି ରଖିଚ କାଢ଼ି ଦିଅ ! ଗାଁ ମାନ୍ୟଙ୍କ ଗାଁରେ ଭଲରେ ଭଲରେ ଲୁଟିଯାଉ !"

ଅନ୍ୟତମ ମାମଲତ୍କାର୍ ନକୁଳ ପଧାନ ପଛରେ ରହି ଲୁଆ ଦେଲେ···"ଲୁହେ ତ ଆଉ କଣ ? ଆଜି ଯେ ନଆଣ୍ଟା ସଣ୍ଡଟାର ଛେଳି ଫଟେଇ ଆଣିଲ, କାଲି ଆମ ଘରେ ପଶିବ;···ଦିଅ ଥାନାକୁ ଖବର ଦିଅ, ହଳହଳ କରି ବାନ୍ଧି ନେଇଯାଉ ପୁଲିସ !"

ସେତେବେଳକୁ ଜଣେ ଗୁହାଳ ଭିତରେ ପଶି, ଗୁହାଳକଣରୁ ଛେଳି ଚମଡ଼ା ଆଉ କଟା ମୁଣ୍ଡଟା କାଢ଼ିଆଣି, ସମସ୍ତଙ୍କ ଆଗରେ ତାହାର ପ୍ରଦର୍ଶନୀ କରି କହିଲା···"ଇଏ ତ ରଥିଆ ମା'ର ଖାସି ! ମୁଣ୍ଡରେ ସେଇ ବୁଢ଼ା, ଦେହରେ ସେଇ ପଟା ପଟା ଦାଗ, ସେଇ ବଙ୍କା ସିଂଘ; ଏଗାଁରେ ରଥିଆ ମା'ର ଖାସିକୁ ନ ଚିହ୍ନିଚି ମଣିଷ କିଏ ?"

କଟା ଛେଳିମୁଣ୍ଡଟା କାଚର ଆଖି ପରି ମଲା ଆଖି ଦୁଇଟା ମେଲି, ଯେମିତି ଗାଁ ଲୋକଙ୍କ ଆଡ଼େ ଅନାଇଁ ଚଳେ ପଡ଼ୁଥିଲା

ପାଣମାନଙ୍କ ପାଟି ସେତେବେଳକୁ ଖିନ ବାଜି ଯାଇଥିଲା । ଏମିତି ହାତେ ହାତେ ସେମାନେ ଧରା ପଡ଼ିଯିବେ ବୋଲି, ଭାବି ନ ଥିଲେ । ସେମାନଙ୍କ ଆଖି ମଧ୍ୟ ଟୋକେଇରେ ସେଇ ମାଉଁସ କୁଢ଼ ଉପରେ ଲାଖି ରହିଥିଲା । ହାୟପାପ···ଆଜୁ ଯେ କଧଣ୍ଡ ଖାଇବା ପଟରୁ ହଟି ଆସିବା !

ଚୁଲିଟା ସେତେବେଳକୁ ହୁତ ହୁତ ଜଳି ଉଠିଥିଲା । ହାଣ୍ଡିରେ ପାଣି ଫୁଟି ବାମ୍ଫ ଉଠୁଥିଲା; ସେଥିରେ ଖାଲି ମାଉଁସ ପକାଇଲେ ହେଲା !

ରଥିଆମା ତଥାପି ଦୁମୁହ ଦୁମୁରି ବାହୁନୁ ଥିଲା··· "ମୋ ଧନ-ମାଳିରେ·· ମୋ ଚୁନାମାଳିରେ······"

ଏତକବେଳେ ସେଠାରେ ଆସି ପହଞ୍ଚିଗଲେ, ସରପଞ୍ଚ ନରୋତ୍ତମ ଦାସ···ମାଇଲଏ ଦୂରରେ ନଟିପଡ଼ା ଗାଁରେ ତାଙ୍କ ଘର ! ଏ ସକାଳୁ-ଟାରୁ ତାଙ୍କ ନାକରେ ମଧ୍ୟ ତାଜା ମାଉଁସର ବାସ୍ନା ବାଜି ଯାଇଥିଲା !

ଯଦୁ ମାହାନ୍ତଙ୍କ ସଙ୍ଗରେ ତାଙ୍କର ଅହିନକୁଳ ସମ୍ପର୍କ । ଦାସେ ପ୍ରଜାସାମ୍ୟବାଦୀଦଳଆ ହୋଇଥିବାରୁ, ମାହାନ୍ତଏ କମ୍ୟୁନିଷ୍ଟ ହୋଇଚନ୍ତି ! ସରପଞ୍ଚ-ନିର୍ବାଚନରେ ଲଢ଼ି ହାରିଥିବାରୁ, ନରୋତ୍ତମ ଦାସଙ୍କ ପ୍ରତି ତାଙ୍କର ବିଦ୍ୱେଷ ଅତ୍ୟନ୍ତ ତିକ୍ତ ହୋଇ ଉଠିଥିଲା ।

ଟୋକେଇରେ ତାଜା ମାଉଁସ ଆଡ଼େ ଚାହିଁ, ନରୋତ୍ତମ ଦାସଙ୍କ ଆଖି ଦୁଇଟା ମଧ୍ୟ ଦପ୍ ଦପ୍ ହୋଇ ଉଠୁଥିଲା; ଜିଭଟା ନିଜର ଅଜାଣତରେ ଲାଳେଇ ପଡ଼ୁଥିଲା ।

ନରୋତ୍ତମ ଦାସ ତାଚ୍ଛଲ୍ୟପୂର୍ଣ୍ଣ ଦୃଷ୍ଟିରେ ଯଦୁ ମାହାନ୍ତଙ୍କ ଆଡ଼େ ଚାହିଁ କହିଲେ···

"ସବୁ ଶୁଣିଚି ମୁଁ ! ଇଏ ହେଲା ଗୋରୁଖିଆ ମାମ୍ଲା । ପୁଲିସ କେସ୍ ! ଖିଲାପତ ୩୭୯ ଧାରା । ଏଠି ଖାଉଁଲା ନିଶାପ କିଏ ବସିଚି କିଏ ?"

ସରପଞ୍ଚଙ୍କ ଆଧିପତ୍ୟପୂର୍ଣ୍ଣ କଥା ଓ ପିକସନ୍ ଧାରା ଶୁଣି ସମସ୍ତେ ଗୁମ୍ ଖାଇ ଦଣ୍ଡେ ରହିଗଲେ ।

ନରୋତ୍ତମ ଦାସ କହୁଥିଲେ ··"ଆଜି ଛେଳି ପଟେ କାଟି ଦେଲେ, କାଲି ମଣିଷ ମୁଣ୍ଡପଟେ କାଟି ଦେବାକୁ କେତେବେଳ ହୋ—?"

ଯଦୁ ମାହାନ୍ତଙ୍କ ଛଡ଼ା ଆଉ ସମସ୍ତେ ଉତ୍ତର ଦେଲେ···"ନୁହେଁ ଆଉ କଣ ?"

ନରୋତ୍ତମ ଦାସ ପାଣମାନଙ୍କୁ କହିଲେ···"ମାଉଁସକୁ ମୁଣ୍ଡେଇ, ଚାଲ ପଞ୍ଚାୟତ ଅଫିସକୁ ! ପୁଲିସ ଆସିବା ପରେ ଯେତିକି ଯାହା ହେବ !"

ଗାଁଣମାନେ ମାଂସ ଚୋକେଇ ମୁଣ୍ଡେଇ, ନରୋତ୍ତମ ଦାସଙ୍କ ପଛେପଛେ ଗୁଲିଲେ ପଞ୍ଚାୟତ ଅଫିସ, ଅର୍ଥାତ ସରପଞ୍ଚଙ୍କ ବାସଭବନ ଆଡ଼େ ! ଗାଁ ଲୋକେ ମଧ୍ୟ ପଟୁଆରରେ ବାହାରିବା ପରି, ମାଂସ ଚୋକେଇ ପଛେପଛେ ଗୁଲିଲେ, ପଞ୍ଚାୟତ ଅଫିସ ଅଭିମୁଖରେ !

କିନ୍ତୁ ସେମାନଙ୍କୁ ଆସିବା ପାଇଁ ବାରଣ କରି ନରୋତ୍ତମ ଦାସ କହିଲେ···"ତମେ ସବୁ ଆସିବା ଦରକାର ନାହିଁ । ମାଲ ବରାମତ ହୋଇଗଲା, ରହିବ ପଞ୍ଚାୟତ ଅଫିସରେ । ପୁଲିସ ଆସିଲେ ଆସାମୀ ମାନଙ୍କୁ ଗ୍ରେଫ୍‌ତାର କରି ନେବ ! ତମେ ସବୁ ଆସୁଚ କାହିଁକି ?"

ସତକଥା, ପୁଲିସ ମାମଲା, ଭଲ ଅଛି, ମନ୍ଦ ଅଛି; କାହାଠାରେ ପଶେ କିଏ, ଗୋଡ଼ ଧୂଏ କିଏ ?

ଗାଁ ଲୋକେ ବାଟ ଭାଙ୍ଗି, ନିଜ ନିଜ ବାଟରେ ମୋଡ଼େଇ ଗଲେ । ରଥିଆମା କଉଶଲ୍ୟାର ବାହୁନା ତଥାପି ଲାଗିଥିଲା, "ମୋ କଳାମାଣିକରେ"······

ଯଦୁ ମାହାନ୍ତି ପଛରେ ରହି ଯାଇଥିବା ଚେମା ପାଣକୁ ପାଖକୁ ଡାକି ଚୁପ୍ ଚୁପ୍ କହିଲେ···"ତମେ ସବୁ ଗୁଲ ଦେ; ମୁଁ ଥିବ ଠାକୁରାଣୀ ପଦା ବଉଳଗଛ ମୂଳେ । ଡର ନାହିଁ କିଛି ! କୋଉ ପୁଲିସ, କୋଉ ଶଳା ସରପଞ୍ଚ କିଏ — ଦେଖିବ !"

( ଉଦ୍ଧୃତ ଅଂଶଟି ମୁଦ୍ରଣର ଅଯୋଗ୍ୟ )

ଯଦୁ ମାହାନ୍ତି, ହାତରେ ଯେଉଁ ମୁଦ୍ରା ଦେଖାଇଲେ, ତାହା ଏକାଧାରରେ ବୀର ଓ ଆଦରସାତ୍ମକ !

ମାଂଉସ ଚୋକେଇଟି ସେତେବେଳକୁ ପଞ୍ଚାୟତ ଅଫିସ, ଅର୍ଥାତ୍ ସରପଞ୍ଚଙ୍କ ରନ୍ଧନଶାଳା ମଧ୍ୟରେ ଅଦୃଶ୍ୟ ହୋଇ ସାରିଥିଲା । ପାଣମାନେ ସେଥିରୁ ପୁଳାଏ ପୁଳାଏ ମାଂଉସ ଲୁଗା କାନିରେ ବାନ୍ଧି ଡାଳରେ ବସିଥିଲେ । ସେ ବାନ୍ଧେ ଛିଣ୍ଡି ଥିଲା । ଏବେ ଧଡ଼ିଅଛି, ପାଣମାନେ କେତେଟଙ୍କା ଜୋରିମାନା ଦେବେ କେବଳ, ସେଇ ବିଚାର । ସରପଞ୍ଚଙ୍କ ଦାବୀ, ଶଏ

ଟଙ୍କା; ପାଣମାନେ ମାଟିରେ ନାକ ଘଷିଘଷି ଟଙ୍କା ପଗୃଣରେ ମୁକୁଳାଇ ଦେବାପାଇଁ ବାରମ୍ବାର ଗୁହାରି କରୁଥିଲେ । ଯେମେଜେମା ସେଇ ଅବସରରେ କୁଆଡ଼େ ଉଠିଯାଇ, ପୁଣି ସେଠାକୁ ଫେରି ଆସିଥିଲା ।

ଏହି ସମୟରେ ଗାଁ ଦାଣ୍ଡରେ ଶୁଭିଲା ··· "ଇନ୍‌କଲାବ୍ ଜିନ୍ଦାବାଦ୍"ର ପହଳ । ଯଦୁ ମାହାନ୍ତି ଗୋଟିଏ ପଟୁଆର ଧରି, ପଞ୍ଚାୟତ ଅଫିସ ଆଡ଼େ ମୁହାଇଁ ଥିଲେ ।

ଯଦୁ ମାହାନ୍ତିଙ୍କୁ ଦେଖି, ନରୋତ୍ତମ ଦାସ ତାଚ୍ଛଲ୍ୟପୂର୍ଣ୍ଣ କଣ୍ଠରେ ପଗୃରିଲେ···"ଏସବୁ କ ନାଟ ହୋ ଯଦୁବାବୁ ?"

ଯଦୁ ମାହାନ୍ତି ଗୋଟାଏ ଉତ୍ତେଜନାପୂର୍ଣ୍ଣ ଭାଷଣ ଦେବାର ଭଙ୍ଗୀରେ କହୁଥିଲେ···"ନାଟ କଏ ଲଗେଇଛି, ତମେ ନା ଏ ଜନ୍‌ତା ? ରଥିଆ ମା ଖାସୀଟାକୁ ବଡ଼ସକାଳେ ବଲୁଆଟାଏ ଘୋଷାରି ନେଉଥିଲା; ଏତେଲୋକେ ଦେଖିଲେ, ତମେ ସେଇ ବଲୁଆଖିଆ ମାଉଁସକୁ ଆଣି ଏଠି ଏ ନିରୀହ ହରିଜନମାନଙ୍କୁ ଧମକୋଉଚ ?"

ନରୋତ୍ତମ ଦାସ ଆକାଶରୁ ଖସି ପଡ଼ିବା ପରି କଣ୍ଠରେ ପଗୃରିଲେ···"ରଥିଆମା ଖାସୀକୁ ବଲୁଆ ଖାଇଥିଲା ?"

ଯଦୁ ମାହାନ୍ତି କହିଲେ, "ନୁହେଁ ତ ଆଉ କଣ ? କେତେ ସାକ୍ଷୀ ନେବ ? ଚଉର, ପଗୃର, ଜଣଜଣ କରି ପଗୃର ! ତମେ ସରପଞ୍ଚ ହେଇଚ ବୋଲି କଣ ଧରାକୁ ସରା ମଣିଲଣି କି ?"

ନରୋତ୍ତମ ଦାସ ଆଉ ସମ୍ଭାଳି ନପାରି, ଠିଆ ହୋଇ ପଡ଼ି କହିଲେ···"ମୁହଁ ସମାଳି କଥା କହ, କହି ଦଉଚି !"

ଯଦୁ ମାହାନ୍ତି ଛାଡ଼ିବାର ପାତ୍ର ନୁହନ୍ତି । ସେ ଜବାବ ଦେଲେ··· "ପାଣଙ୍କ ପାଖରୁ ଶଏ ଟଙ୍କା ପରା ଅବିକା ଲାଞ୍ଚ ଝଡ଼ାଉ ଥିଲ; ଛେଳି ଖାଇଲା ବଲୁଆ, ଆଉ ଭଏ ଖାଇବେ ଲାଞ୍ଚ ! ଭଲା ସାମ୍ୟବାଦ ହୋ ! ବୋଲ ଭାଇ, ଇନ୍‌କଲାବ୍···"

ପହଲ ଫେରିଲା ଜନ୍ଦାବାଦ୍ !

ନରୋତ୍ତମ ଦାସ ସେତେବେଳକୁ ସ୍ତବ୍ଧ ହୋଇ ପଡ଼ିଥିଲେ !

ଯଦୁ ମାହାନ୍ତଙ୍କ ପଛେ ପଛେ ପାଣମାନେ ଇନ୍‌କଲାବ୍ ଜନ୍ଦାବାଦ୍ ପହଲ ଫେରାଇ ଗାଁ ଆଡ଼େ ଫେରି ଗଲେ ।

ଗାଁମୁଣ୍ଡ କଥାଟୋହ୍ଵାଷା ପଡ଼ିବାରୁ ପଞ୍ଚୁଆର ସେଇଠାରେ ରହିଗଲା । ଟେମାପାଣ ଦେଇଥିବା ପଚିଶଟଙ୍କାର ନୋଟବଡ଼ା ଭିତରୁ, ଯଦୁ ମାହାନ୍ତ ତିରିଶ ଟଙ୍କା ଅଣ୍ଟାରେ ଖୋଷି ଦେଇ ବାକି କୋଡ଼ିଏ ଟଙ୍କା ନରମିଶ୍ରଙ୍କ ଆଡ଼େ ବଢ଼ାଇ ଦେଇ କହିଲେ···"ପାଣମାନେ ଆଜି କଣ ଦେଇ ପାରିବେ ? ଏ କୋଡ଼ିଏ ଟଙ୍କା ଗାଁ ଠାକୁର ଘର ପାଇଁ ଦେଇଚନ୍ତି ! ନଅ, ରଖ !"

ଚାଲ୍ ଝାମ୍ପିବା ପରେ, ଯଦୁ ମାହାନ୍ତଙ୍କ ହାତରୁ ଟଙ୍କାତକ ଝିଙ୍କି ନେଇ, ନରମିଶ୍ରେ ଅଣ୍ଟାରେ ଖୋଷି ଦେଲେ । ସେତକ ଗଣିବା ପାଇଁ ତାଙ୍କର ଧୈର୍ଯ୍ୟ ନଥିଲା ।

ରଥିଆମା ତଥାପି ଘୂମୁରି ହୁମୁରି ବାହୁନୁଥିଲା···"ମୋ ଧନମାଳରେ, ମୋ ସୁନା ମାଳରେ···" ( ୧୯୭୫ )

---

✽ ଗୋଟିଏ ବାସ୍ତବ ଘଟଣା ଅବଲମ୍ବନରେ ଲିଖିତ ।

# ଶ୍ରୀକୃଷ୍ଣଙ୍କ ଶେଷହସ

ସେଦିନ ମହାଭାରତ ବିପ୍ଳୋଗାନ୍ତ ନାଟକର ଶେଷଦୃଶ୍ୟ ଦେଖି-ଯିବାପାଇଁ ଯେପରି, ଇନ୍ଦ୍ରପ୍ରସ୍ଥର ଗିରିମାଳା ନେପଥ୍ୟରେ, ଅସ୍ତାଚଳ ପଥରେ ସର୍ବଦ୍ରଷ୍ଟା ଦିବାକର ଅରୁଣ-ବାହିତ-ରଥ ଦଣ୍ଡେ ଅଟକାଇ ଦେଇଥିଲେ ।

ମହାଭାରତ-ମହାସମର ପରେ ପରିତ୍ୟକ୍ତ କୁରୁକ୍ଷେତ୍ର, ଧ୍ୱଜ ଓ କଳସଶୋଭିତ, ମୁକ୍ତା ଓ ମଣିଝର-ବିମଣ୍ଡିତ, କୌରବପକ୍ଷର ଅସଂଖ୍ୟ ଭଗ୍ନରଥ, ପୁଣି ତୂଣ, ଧନୁ ଓ ନାରାଚଶୋଭିତ ଏକାଦଶ ଅକ୍ଷୌହିଣୀ ଯୋଦ୍ଧୃବର୍ଗଙ୍କର ଶବରାଶି, ଦ୍ୱାଦଶ ଯୋଜନ ବିସ୍ତାର କରି, ଶୋଣିତ-ପଙ୍କ ମଧ୍ୟରେ ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଅଛି । ସେହି ମହା-ଶ୍ମଶାନର ଶବସ୍ତୂପ ମଧ୍ୟରେ ରୋରୁଦ୍ୟମାନା, ଅସମ୍ବୃତବସନା, ଅବିନ୍ୟସ୍ତକୁନ୍ତଳା, ଦୁର୍ଯ୍ୟୋଧନ-ମହିଷୀ ଭାନୁମତୀ ଓ ଅନ୍ୟ କୌରବ-କୁଳ-ନାରୀମାନେ ନିଜନିଜର ପ୍ରିୟ ଓ ସ୍ୱଜନବର୍ଗଙ୍କୁ ଅନ୍ୱେଷଣ କରୁଅଛନ୍ତି । ସେମାନଙ୍କ ମର୍ମାନ୍ତିକ କ୍ରନ୍ଦନ, ଶ୍ୱାନ, ଶିବା ଓ ଶକୁନମାନଙ୍କର ନାରକୀୟ ରଡ଼ିକୁ ମଧ୍ୟ ବେଳେବେଳେ ନିମଜ୍ଜିତ କରି ଦେଉଅଛି ।

ଶତଶତ ଶବଙ୍କର ଦୃପ୍ତ ଚପଳତା ମୃତ୍ୟୁର ଅଚଞ୍ଚଳ ଗାମ୍ଭୀର୍ଯ୍ୟ ମଧ୍ୟରେ ପ୍ରଶମିତ ହୋଇଅଛି । ଅଶ୍ୱମାନଙ୍କର ହ୍ରେଷାରବ, କ୍ଷୁବ୍ଧ ଦନ୍ତାବଳମାନଙ୍କର ବୃଂହିତ, ଯୋଦ୍ଧୃବର୍ଗଙ୍କର ପ୍ରମତ୍ତ ଆସ୍ଫାଳନ, ମୃତ୍ୟୁର ଗଦାଘାତରେ ସବୁ ନୀରବ ହୋଇଅଛି । କ୍ରନ୍ଦନ ଓ ଶିବାରଡ଼-ମୁଖରିତ ସେହି ମହାଶ୍ମଶାନ ଉପରେ ଚକ୍ରାକାରରେ ଉଡ଼ି ବୁଲୁଥିବା, ପର୍ଯ୍ୟୁଷିତ ମାଂସଲୋଲୁପ ଅଗଣିତ ଶକୁନଙ୍କର ସଞ୍ଚାଳିତ ପକ୍ଷ, କଙ୍କାଳର ଗୁମ୍ଫା ପରି ବିସ୍ତାରିତ ହୋଇଅଛି ।

ଇନ୍ଦ୍ରପ୍ରସ୍ଥରେ ଧୃତରାଷ୍ଟ୍ରଙ୍କ ପ୍ରାସାଦ ନୀରବ ଓ ନିର୍ଜନ । ବେଳେବେଳେ ସଞ୍ଜୟ ଓ ବିଦୁରଙ୍କର ଶାନ୍ତ, ଧୀର ପଦଶବ୍ଦ ଧୃତରାଷ୍ଟ୍ରଙ୍କର ମର୍ମଭେଦୀ ଦୀର୍ଘଶ୍ୱାସ ଓ ଗାନ୍ଧାରୀଙ୍କର ଅସ୍ଫୁଟ କ୍ରନ୍ଦନର ଭାରାକ୍ରାନ୍ତ ନୀରବତାକୁ ଆହୁରି ଘନୀଭୂତ କରି ଦେଉଅଛି ।

ଧୃତରାଷ୍ଟ୍ର ଜନ୍ମାନ୍ଧ । ତେଣୁ କୁରୁକ୍ଷେତ୍ରର ମହାଶ୍ମଶାନରେ, ମହାନିଦ୍ରାର ଧୂଳିଶଯ୍ୟାରେ, ମାନଗୋବିନ୍ଦ ଦୁର୍ଯ୍ୟୋଧନ ସମେତ ଶତପୁତ୍ର, ପୁଣି କର୍ଣ୍ଣ, ଶଲ୍ୟ, ଦ୍ରୋଣ ଓ ଭୂରିଶ୍ରବା ପ୍ରମୁଖ ସଖା ଓ ସୋଦରମାନଙ୍କୁ ଶେଷବାର ଦେଖି ଆସିବାପାଇଁ ତାଙ୍କର ବ୍ୟାକୁଳତା, ଉତ୍କଣ୍ଠା, ଶୋକ ଓ ଦୀର୍ଘଶ୍ୱାସ କୌରବପ୍ରାସାଦର ଗୁମ୍ଫାଚ୍ଛନ୍ନ ଭିତ୍ତି-ପ୍ରସ୍ତର ଦେହରେ ବାଧା ପାଇ ବାରମ୍ବାର ନୀରବ ହେଉଅଛି ।

ମାତ୍ର ଗାନ୍ଧାରୀ ନିଜର ଦୁଇ ଆକ୍ଷିରୁ ଅନ୍ଧ-ପଟ୍ଟିକାର ଆବରଣ ଫିଙ୍ଗିଦେଇ, ମହାନିଦ୍ରାରେ ଶାୟିତ ଶତପୁତ୍ରଙ୍କୁ, ପ୍ରଥମ ଓ ଶେଷବାର ଥରେ ଦେଖିବାପାଇଁ ଉତ୍କଣ୍ଠିତ ହୋଇ ପଡ଼ିଅଛନ୍ତି ; କିନ୍ତୁ ଅନ୍ଧ-ଧୃତରାଷ୍ଟ୍ରଙ୍କ ପାଣିଗ୍ରହଣବେଳେ ସତୀତ୍ୱର ପରମ ନିଷ୍ଠାରେ ବ୍ରତଚାରିଣୀ ପରି ଗାନ୍ଧାରୀ ନିଜର ଦୁଇଆକ୍ଷିରେ ଅନ୍ଧପଟ୍ଟିକାର ଯେଉଁ ଆବରଣ ବାନ୍ଧିଥିଲେ, ତାହାର ବନ୍ଧନ ଦୁର୍ଚ୍ଛେଦ୍ୟ ଓ ଗ୍ରନ୍ଥି ଦୁର୍ଭେଦ୍ୟ । ତା ନହେଲେ ସତୀଧର୍ମର ସବୁ ଅହଙ୍କାର ଭୁଲି, ଆଜି ସେହି ଅନ୍ଧପଟ୍ଟିକାକୁ ଏକ ତୁଚ୍ଛ ପ୍ରତିବନ୍ଧକରୂପେ, ପଥର ଧୂଳିରେ ଫିଙ୍ଗି ଦେବାପାଇଁ ସେ ତିଳେ ହେଲେ କୁଣ୍ଠିତା ନୁହନ୍ତି ।

ଦୁର୍ଯ୍ୟୋଧନ, ଦୁଃଶାସନ, ଦୁର୍ଜୟ, ଦୁରନ୍ତ, ଦୁର୍ଗମ, ଦୁର୍ଦ୍ଦମ, ଦୁର୍ଦ୍ଧର, ଦୁର୍ବାଳକ ପ୍ରମୁଖ ଶତପୁତ୍ରର ଜନନୀ, ମାତୃତ୍ୱ-ଗରବିଣୀ ସୋମବଂଶର ଚୂଡ଼ାମଣି ଗାନ୍ଧାରୀ ! କର୍ପୂର-ରେଣୁ-ସିଞ୍ଚିତ ତୂଳ-ତଳ୍ପରେ ସୁଦ୍ଧା ଯେଉଁମାନଙ୍କୁ ନିଦ୍ରା ସ୍ପର୍ଶ କରୁ ନଥିଲା; ଆଜ ସେମାନେ କୁରୁକ୍ଷେତ୍ରର ଶୋଣିତକର୍ଦ୍ଦମରେ ମହାନିଦ୍ରାରେ ଅଚେତନ ।

'ସେମାନଙ୍କ ଶବଶ୍ରେଣି ଉପରେ ଶ୍ୱାନ, ଶିବା ଓ ଶକୁନମାନଙ୍କର ଅଶ୍ଳୀଳ ଚିତ୍କାର ଦିଗନ୍ତବ୍ୟାପୀ ରୌରବ ସୃଷ୍ଟି କରିଅଛି ।

ଗୋଟିଏ ଶକୁନପଲର ବିକଟ ରଡ଼ିରେ ଗାନ୍ଧାରୀ ଆର୍ତ୍ତନାଦ କରି ଉଠିଲେ ।

ଆଶ୍ରୟପାଇଁ ଶୂନ୍ୟରେ ଶୁଷ୍କ-ଚର୍ମାବୃତ ଦୁଇ ଶିଥିଳ ବାହୁ ଟେକି, ଅନ୍ଧପଟ୍ଟାବୃତା ଗାନ୍ଧାରୀ ଅସହାୟ କଣ୍ଠରେ ଚିତ୍କାର କଲେ... "ବିଦୁର, ସଞ୍ଜୟ !"

ପରିତ୍ୟକ୍ତ କୌରବ-ପ୍ରାସାଦର ପୈଶାଚିକ ନୀରବତା ମଧ୍ୟରେ ଗାନ୍ଧାରୀଙ୍କ ଆକୁଳ ଆହ୍ୱାନ ପ୍ରତିଧ୍ୱନି ଉଠାଇ ପୁଣି ନୀରବ ହୋଇଗଲା ।

* * * *

ନିଷ୍ଫଳ ଅହଙ୍କାର ଓ ଅଭିମାନରେ ଦୁଇ କମ୍ପିତ ବାହୁ ସ୍ଫୀତ କରି, ଊର୍ଦ୍ଧ୍ୱକୁ ଟେକି, ଅନ୍ଧ ଧୃତରାଷ୍ଟ୍ର ବିଦୁରଙ୍କ ସମ୍ମୁଖରେ ଆସ୍ଫାଳନ କରୁଥିଲେ..."ଭୁଲିଯାଅ ନାହିଁ ବିଦୁର, ଆଜ ସୁଦ୍ଧା ଏହି ଦୁଇ ବାହୁରେ କୁରୁକୁଳଦ୍ରୋହୀ ଭୀମ-ସମେତ ପାଣ୍ଡବ ପଞ୍ଚଭ୍ରାତାଙ୍କୁ ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେବାର ଶକ୍ତି ଅକ୍ଷୁଣ୍ଣ ରହିଅଛି !"

ଧୃତରାଷ୍ଟ୍ର କୌରବ-ସିଂହାସନ ଉପରେ ପ୍ରଚଣ୍ଡ କଶାଘାତରେ ଶରାହତ ପଶୁପରି ଗର୍ଜନ କରି ଉଠିଲେ । ତାଙ୍କର କୁଞ୍ଚିତ ଓ ରେଖାଙ୍କିତ

ମୁଖମଣ୍ଡଳର ଶିଥିଳ ମାଂସପେଶୀମାନ ଏକ କାଠିନ୍ୟରେ ନିଷ୍ଠୁର ହୋଇଗଲା । ସୁପ୍ତ ଆଗ୍ନେୟଗିରିର ଅନ୍ଧକାର ବିବର ପରି, ତାଙ୍କର ଦୁଇ ଦୃଷ୍ଟିହୀନ ଅକ୍ଷିକୋଟରେ ଅଗ୍ନ୍ୟୁଦ୍‌ଗାର ଯେପରି ଉଦ୍ଭାସମାନ କରି ଉଠିଲା ।

ବିଦୁର ଶାନ୍ତ କଣ୍ଠରେ କହିଲେ···"ମହାରାଜ; ଧୃତରାଷ୍ଟ୍ରମାନେ ଚିରକାଳ ଅନ୍ଧ । ସିଂହାସନର ସ୍ୱର୍ଣ୍ଣଦୀପ୍ତିରେ କାଳେକାଳେ ସେମାନେ ଅନ୍ଧ ହୋଇଛନ୍ତି । ଚକ୍ଷୁଷ୍ମତ୍ତା ଏକମାତ୍ର ଦୃଷ୍ଟି ନୁହେଁ ମହାରାଜ । ପାଣ୍ଡବ ପଞ୍ଚଭ୍ରାତାଙ୍କୁ ସମୂଳେ ବିନାଶ କରିବା ପାଇଁ ଜତୁଗୃହଦାହର ଷଡ଼ଯନ୍ତ୍ର ବେଳେ, ଭୀମସେନଙ୍କୁ ବିଷମୋଦକ ଖୁଆଇଲା ବେଳେ, ବ୍ୟାସସରୋବରରେ ଆତ୍ମଗୋପନ କରିଥିବା ଦ୍ରୌପଦୀଙ୍କ ପଞ୍ଚପୁତ୍ରଙ୍କୁ ମୃଗୟାବିଳାସରେ ହତ୍ୟା କଲାବେଳେ, କୁରୁସଭାତଳେ କୁଳବଧୂ ଦ୍ରୌପଦୀଙ୍କୁ ବିବସନା କଲାବେଳେ, ପୁଣି ସାମାନ୍ୟ ପାଞ୍ଚଖଣ୍ଡି ଗ୍ରାମପାଇଁ ଶ୍ରୀକୃଷ୍ଣଙ୍କ ଦୌତ୍ୟର ଉତ୍ତରରେ, "ସୂଚ୍ୟଗ୍ର ପରିମିତ ଭୂମି ଦେବୁ ନାହିଁ" ବୋଲି ଦୁର୍ଯ୍ୟୋଧନ ଆସ୍ଫାଳନ କଲାବେଳେ, ପୂର୍ବେଦୃଷ୍ଟିରେ ଆପଣ ଯଦି ଏ ପରିଣତି କଳନା କରିଥାନ୍ତେ, ତାହେଲେ ଅନୁଶୋଚନାରେ ଆଜ ଆପଣ ଏପରି ତିଳେ ତିଳେ ଦଗ୍‌ଧୀଭୂତ ହେଉ ନଥାନ୍ତେ ! କିନ୍ତୁ କେବଳ ଆପଣ ନୁହନ୍ତି, ସବୁ ଧୃତରାଷ୍ଟ୍ର ଆପଣଙ୍କ ପରି ଜନ୍ମାନ୍ଧ !"

ଧୃତରାଷ୍ଟ୍ର କହିଲେ···"ମାତ୍ର ଭୀଷ୍ମ, କର୍ଣ୍ଣ, ଦ୍ରୋଣପରି ମହାବୀର-ମାନେ ପାଣ୍ଡବମାନଙ୍କଦ୍ୱାରା ଏପରି ପରାଜିତ ହେବେ; ତାହା ତ ମୁଁ ଆଶଙ୍କା କରି ନଥିଲି ବିଦୁର !"

ବିଦୁର କହିଲେ···"ସେଥିପାଇଁ ତ ମୁଁ କହେ, ଧୃତରାଷ୍ଟ୍ରମାନେ ଚିରକାଳ ଅନ୍ଧ ! ନିର୍ଯ୍ୟାତିତ, ନିପୀଡ଼ିତ, ଆର୍ତ୍ତ ଓ ବଞ୍ଚିତର ଦାବୀ, ଆପାତଦୃଷ୍ଟିରେ ଯେତେ ଦୁର୍ବଳ ହେଲେ ସୁଦ୍ଧା, ଅକ୍ଷୌହିଣୀ ସେନାର ରଣପ୍ରସ୍ତୁତି ଓ ଦିଗ୍‌ବିଜୟୀ ଯୋଦ୍ଧାମାନଙ୍କର ଧନୁଷ୍ଟଙ୍କାର ତାହାକୁ ବିଡ଼ମ୍ବିତ କରିପାରିବ ନାହିଁ । କେତେ ଦର୍ପିତ ଇନ୍ଦ୍ରପ୍ରସ୍ଥ, କେତେ ମଦମତ୍ତ ହସ୍ତିନା, କେତେ ଅହଙ୍କାରୀ ବାରୁଣୀ, ମହାକାଳରେ ଏହିପରି ବାରମ୍ବାର ଭୂଲୁଣ୍ଠିତ ହେବ ! ···ମହାରାଜ, ମହାଭାରତରେ ଐକ୍ୟ ଓ

ଶାନ୍ତ ଷମତାର ଦାମ୍ଭିକତାରେ ରହ୍ୱବ ନାହିଁ; ରହ୍ୱବ ଲଞ୍ଛିତ, ବଞ୍ଚିତ ଓ ଅପମାନିତଙ୍କୁ ତା'ର ଯଥାର୍ଥ ଦାବୀରେ ପ୍ରତିଷ୍ଠିତ କରିବାରେ; ରହ୍ୱବ ଔଦାର୍ଯ୍ୟରେ, କରୁଣାରେ, ଦାକ୍ଷିଣ୍ୟରେ ।"

ଇନ୍ଦ୍ରପ୍ରସ୍ଥର ଆକାଶରେ କାଳବୈଶାଖୀର ଘୂର୍ଣ୍ଣୀ ଧୃତରାଷ୍ଟ୍ରଙ୍କ-କଣ୍ଠରେ ଯେପରି ଗର୍ଜନ କରି ଉଠିଲା । ବିଦୁରଙ୍କ ପ୍ରତି ପ୍ରଚଣ୍ଡ କ୍ରୋଧରେ ଚିତ୍କାର କରି, ଧୃତରାଷ୍ଟ୍ର କହିଲେ···"ତୁମେ ନା ବିଦୁର, କୌରବର ଅନ୍ନଭୋଜୀ ! କୌରବର ଔଦାର୍ଯ୍ୟରେ, କରୁଣାରେ, ଦାକ୍ଷିଣ୍ୟରେ ତୁମେ ନା ଲାଳିତ, ପାଳିତ ଓ ବର୍ଦ୍ଧିତ ! ଆଜି ସେହି କୌରବମାନଙ୍କର ଚରମ ଦୁର୍ଦ୍ଦିନରେ ଏହି କଣ ତୁମର ପ୍ରତିଦାନ ? କୌରବର ଅନ୍ନର ପ୍ରତିଦାନରେ ତୁମ କଣ୍ଠରେ ସମବେଦନାର କ୍ଷୀଣ ବାଣୀ ସୁଦ୍ଧା ନାହିଁ !"

ବିଦୁର ଅବିଚଳିତ କଣ୍ଠରେ ଉତ୍ତର ଦେଲେ···"କିନ୍ତୁ ସତ୍ୟ ଯେତେ କଠୋର ହେଲେ ସୁଦ୍ଧା ଦିନେ ତାହାର ସମ୍ମୁଖୀନ ହେବାପାଇଁ ପଡ଼ିବ, ମହାରାଜ !"

ଧୃତରାଷ୍ଟ୍ର ଚିତ୍କାର କରି ଉଠିଲେ···"କିନ୍ତୁ ସାମାନ୍ୟ ରାଜ୍ୟପାଇଁ ପାଣ୍ଡବମାନଙ୍କ ଦ୍ୱାରା, ସଖା-ନାଶ, ସୋଦର-ନାଶ, କୁଳ ନାଶ; ଏହି କ'ଣ ତୁମର ସତ୍ୟ ବିଦୁର ? ମୃତ୍ୟୁ ବା କପଟ ଭୂମିକା କହ, ବିଦୁର ! ଆଜି ସୋମବଂଶର ଦୀପଶିଖା ଗୋଟିକ ପରେ ଗୋଟିଏ ନିର୍ବାପିତ ହୋଇଗଲା । ଅନ୍ଧ ଧୃତରାଷ୍ଟ୍ରର ଅନ୍ଧ ତମିସ୍ରାପରି, ଏହାପରେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ, ସବୁ ନିରନ୍ଧ୍ର, ସୂଚୀଭେଦ୍ୟ, ନିଷ୍ଠୁର ଅନ୍ଧକାର !"

ବିଦୁର ଶାନ୍ତକଣ୍ଠରେ ଉତ୍ତର ଦେଲେ···"କର୍ମଫଳର ଅଳଙ୍ଘନୀୟ ପରିଣତିରୂପେ ଏହାକୁ ଗ୍ରହଣ କରି ଶୋକ ସମ୍ବରଣ କରନ୍ତୁ ମହାରାଜ; ଶାନ୍ତିଲାଭ କରିବେ । ଆପଣ କୁରୁକୁଳର ଅଗସ୍ତ୍ୟରୂପେ କୌରବ-ସମୁଦ୍ର ନିଃଶେଷ କରିଅଛନ୍ତି; ପାଣ୍ଡବମାନେ ତ ଜୀର୍ଣ୍ଣ କୂପମାତ୍ର ! ଆଉ କ୍ରୋଧା-ନଳରେ ପ୍ରଜ୍ୱଳିତ ହୋଇ ସେ କୂପକୁ ନିଃଶେଷ କରନ୍ତୁ ନାହିଁ ।"

ଏହି ସମୟରେ ଅନ୍ଧପଟ୍ଟିକାବୃତା, ଶୋକାକୁଳା ଗାନ୍ଧାରୀ, ଉନ୍ମାଦିନୀ ପରି ସେଠାକୁ ଧାଇଁ ଆସି କହିଲେ···"ମହାରାଜ, ଦିନେ

ଆପଣଙ୍କପାଇଁ ମୁଁ ଆଖିରେ ସ୍ୱହସ୍ତରେ ବାନ୍ଧିଥିଲି ଏହି ଅନ୍ଧପଟ୍ଟିକା । ସେହି ବନ୍ଧନର ଦୁଶ୍ଛେଦ୍ୟ ଗ୍ରନ୍ଥି ଆଜି ସ୍ୱହସ୍ତରେ ଛିନ୍ନ କରି ଦିଅନ୍ତୁ ମହାରାଜ ! ଶତ ପୁତ୍ରର ଜନନୀ ମୁଁ, ଜୀବିତରେ ଯେଉଁମାନଙ୍କୁ ଦେଖି ନାହିଁ, ଆଜି ଅନ୍ତତଃ ମୃତ୍ୟୁର ଶେଷଶଯ୍ୟାରେ ସେମାନଙ୍କୁ ଥରେ ଦେଖି ନୟନର ଜ୍ୱାଳା ଶାନ୍ତ କରେ !"

ଅନ୍ଧପଟ୍ଟିକାର ଗ୍ରନ୍ଥି ଛିନ୍ନ କରିବାର ନିଷ୍ଫଳ ଉଦ୍ୟମରେ ଶିଥିଳ ଅଙ୍ଗୁଳିର ଶତ ନଖାଘାତରେ, ଜରକବୈଣୀ ପରି ଦିଶୁଥିବା ଗାନ୍ଧାରୀଙ୍କର ଶୁଷ୍କ ଚର୍ମାବୃତ ମୁଖ ରକ୍ତାକ୍ତ ହୋଇ ପଡ଼ିଥିଲା । ଲୋତକ ଓ ଶୋଣିତର ଧାରା, ଗାନ୍ଧାରୀଙ୍କ ମୁଖମଣ୍ଡଳକୁ ଅତ୍ୟନ୍ତ ଭୟଙ୍କର କରି ଦେଇଥିଲା ।

ଗାନ୍ଧାରୀ ଶୋକାପ୍ଲୁତ କଣ୍ଠରେ ପୁଣି ଚିତ୍କାର କରି ଉଠିଲେ...
"ମହାରାଜ, ଆପଣଙ୍କପାଇଁ ଅନ୍ଧପଟ୍ଟିକାର ଆବରଣ ତଳେ ଚକ୍ଷୁଥାଇ ମଧ୍ୟ ମୁଁ ଚିରଜୀବନ ଅନ୍ଧ ରହି ଆସିଅଛି ! ଆଜି ମୋପାଇଁ ସେ ଆବରଣ ଥରେ ଉନ୍ମୋଚନ କରନ୍ତୁ ମହାରାଜ !"

ଗାନ୍ଧାରୀଙ୍କର ଅନୁରୋଧରେ, ଧୃତରାଷ୍ଟ୍ରଙ୍କ ମୁଖମଣ୍ଡଳ ଏକ କୃଷ୍ଣ ମେଘଖଣ୍ଡରେ ଯେମିତି ଆଚ୍ଛନ୍ନ ହୋଇପଡ଼ିଲା । ଗାନ୍ଧାରୀ ଜାଣନ୍ତି ନାହିଁ, ମାତ୍ର ଧୃତରାଷ୍ଟ୍ର ଜାଣନ୍ତି, ଅନ୍ଧପଟ୍ଟିକାବୃତା ଗାନ୍ଧାରୀଙ୍କର ଦୁଇ ଚକ୍ଷୁରେ ପୁଞ୍ଜୀଭୂତ ହୋଇ ରହିଅଛି ବର୍ଷର ଦାବାନଳ ! ସେ ଦୃଷ୍ଟି ଥରେ ପଡ଼ିଲେ ଧୃତରାଷ୍ଟ୍ର ମଧ୍ୟ ସେଥିରେ ଭସ୍ମ ହୋଇଯିବେ ।

ଗାନ୍ଧାରୀଙ୍କୁ ସାନ୍ତ୍ୱନା ଦେଇ ବିଦୁର କହିଲେ..."ଶୋକ ସମ୍ବରଣ କରନ୍ତୁ ମହାଦେବି ! କିଏ କହେ ଆପଣ ପୁତ୍ରହୀନା ? ଅଗ୍ରପାଣ୍ଡବ ଯୁଧିଷ୍ଠିରଙ୍କ ଅଭୟ ଛାୟାତଳେ, ଦୁର୍ଦ୍ଧର୍ଷ ଏବେ ମଧ୍ୟ ଜୀବିତ । ପୁଣି ପାଣ୍ଡବ ତ ଆପଣଙ୍କୁ ଜନନୀ ତୁଲ୍ୟ ଭକ୍ତି କରନ୍ତି ।"

ଗାନ୍ଧାରୀ ଉନ୍ମାଦିନୀ ପରି ଚିତ୍କାର କରି ଉଠିଲେ..."ମୁଁ ଜାଣେ ମହାରାଜ, ଆଉ ଏ ଅନ୍ଧପଟ୍ଟିକା ଉନ୍ମୋଚିତ ହେବନାହିଁ । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ, ଗାନ୍ଧାରୀର ଜୀବନ କେବଳ ଅମାବାସ୍ୟାର ନିରନ୍ଧ୍ର, ନିଷ୍ଠୁର ଅନ୍ଧକାର !"

ଗାନ୍ଧାରୀ ଯେପରି ବାତ୍ୟାବାହିତ ଗୋଟିଏ ଶୁଷ୍କପତ୍ର ପରି ଧୃତରାଷ୍ଟ୍ରଙ୍କ ସମ୍ମୁଖକୁ ଉଡ଼ି ଆସିଥିଲେ; ସେହିପରି ସେଠାରୁ ପୁଣି ସ୍ଖଳିତ ପାଦରେ ଚାଲିଗଲେ ।

* * *

ରଥ ପ୍ରସ୍ତୁତ । ଯୁଧିଷ୍ଠିର ଏକାକୀ ରଥରେ ଉପବେଶନ କରିବାପାଇଁ ଉଦ୍ୟତ ହୋଇଥିଲେ; ଏହିସମୟରେ ଶ୍ରୀକୃଷ୍ଣ ଦୁର୍ଦ୍ଧର୍ଷ ସହିତ ହଠାତ୍ ଉପସ୍ଥିତ ହିଗରୁ ଆସି ତାଙ୍କୁ ପଚାରିଲେ, "ହସ୍ତିନାର ସିଂହାସନରେ ଆସନ୍ନ ଅଭିଷେକର ଉତ୍ସବ ମଧ୍ୟରେ ଏକାକୀ କେଉଁଆଡ଼େ ବାହାରିଲେ ଧର୍ମରାଜ ?"

ଯୁଧିଷ୍ଠିର କହିଲେ···"ମାତା ଗାନ୍ଧାରୀ ମୋତେ ସ୍ମରଣ କରିଅଛନ୍ତି । ତାଙ୍କର ଦର୍ଶନପାଇଁ ବାହାରିଅଛି ।"

ଶ୍ରୀକୃଷ୍ଣ କହିଲେ···"ବହୁକାଳ ଗାନ୍ଧାରୀଙ୍କ ସହିତ ମୋହର ମଧ ସାକ୍ଷାତ ହୋଇନାହିଁ । ତାହାହେଲେ ଚାଲନ୍ତୁ ଅଗ୍ରପାଣ୍ଡବ, ମୁଁ ଆପଣଙ୍କ ରଥ ଚଳାଇ ନେବି ।"

ଯୁଧିଷ୍ଠିର ଏ ପ୍ରକାର ଆକସ୍ମିକତାରେ ବିସ୍ମିତ ହୋଇ ପଚାରିଲେ, "ଏ ପୁଣି କି ନୂତନ ମାୟା, ମାୟାଧର ?"

ଶ୍ରୀକୃଷ୍ଣ ସାରଥିର ସ୍ଥାନରେ ବସି, ସ୍ମିତ ହସି ଯୁଧିଷ୍ଠିରଙ୍କୁ କହିଲେ···"ମହାଭାରତର ଜୈତ୍ରଯାତ୍ରା ପଥରେ ଯେ ପାଣ୍ଡବଙ୍କ ଜୟରଥ ବାହିଥିଲା; ତା'ର ହସ୍ତଦର୍ଶନରେ କ'ଣ ଆପଣଙ୍କର ସନ୍ଦେହ ହେଉଛି, କୌନ୍ତେୟ ?"

ଯୁଧିଷ୍ଠିର ନୀରବ ରହିଲେ ।

ଶ୍ରୀକୃଷ୍ଣ ଚିରଦିନ ଏହିପରି ପ୍ରହେଳିକାମୟ !

*     *     *     *

କୁରୁକ୍ଷେତ୍ରର ମହାଶ୍ମଶାନମଧ୍ୟରେ, ପ୍ରେତ-ଶବସ୍ତୂପ ବୁଲି ସଞ୍ଜୟଙ୍କ ସହିତ ଗାନ୍ଧାରୀ, ଶତପୁତ୍ରଙ୍କ ଶବ ସନ୍ଧାନ କରୁଥିଲେ । ଶିବା, ଶକୁନ ଓ ଶ୍ୱାନଦଳଙ୍କୁ ଠେଲି, ଗାନ୍ଧାରୀଙ୍କ ହସ୍ତ ଧରି, ସଞ୍ଜୟ ତାହାଙ୍କୁ ଆସନ୍ନ ସନ୍ଧ୍ୟାର ବିଷର୍ଣ୍ଣ ଗୋଧୂଳି ମଧ୍ୟରେ ପଥ କଢ଼ାଇ ନେଉଥିଲେ ।

ସଞ୍ଜୟ କହିଲେ···"ମହାଦେବି ! ଭୂତଳଶାୟୀ ହୋଇ ମହାନିଦ୍ରାରେ ଅଚେତନ ହୋଇ ପଡ଼ିଛନ୍ତି, ଏହି ଦେଖନ୍ତୁ ପିତାମହ ଭୀଷ୍ମ । ମୁଖ-ମଣ୍ଡଳରେ ତାଙ୍କର ଅନନ୍ତ ପ୍ରଶାନ୍ତି ।"

ଗାନ୍ଧାରୀ କହିଲେ···"ଜାଣେ ସଞ୍ଜୟ; ସ୍ୱଇଚ୍ଛାରେ ସେ ପ୍ରାଣସମ୍ବରଣ କରିଅଛନ୍ତି । ତା ନହେଲେ ବିପୁରଂଜୟୀ ଭୀଷ୍ମଙ୍କ ସମ୍ମୁଖରେ ପାଣ୍ଡବମାନେ ତ ତୁଚ୍ଛାଦପି ତୁଚ୍ଛ ।"

ସଞ୍ଜୟ କହିଲେ, "ଆଉ ରଥ-ଚକ୍ରତଳେ ପେଷିତ ହୋଇ ପଡ଼ିଛନ୍ତି, ବାହ୍ଲୀକ-ବୀର ସୋମଦତ୍ତ, ମତ୍ତହସ୍ତୀର ଦନ୍ତାଘାତରେ, ରକ୍ତାକ୍ତ ହୋଇପଡ଼ିଛନ୍ତି ଭୂରିଶ୍ରବା । ମହାଦେବି ! ଅର୍ଜ୍ଜୁନର ଶରାଘାତରେ ଏଇ ଉତ୍ତାନଶାୟୀ ହୋଇ ପଡ଼ିଛନ୍ତି; ମହାବୀର କର୍ଣ୍ଣ । ବୈଦୂର୍ଯ୍ୟଖଚିତ ତାଙ୍କ କବଚରେ ଅସ୍ତସୂର୍ଯ୍ୟଙ୍କର ଶେଷ କିରଣରେଖା, ଧୂଳିର ମସ୍ତକରେ ପିତାର ଆଶୀର୍ବାଦ-ସ୍ନିଗ୍ଧ-ସ୍ପର୍ଶ ପରି ତଥାପି ଲାଗି ରହିଅଛି । ଯେଉଁ ଦ୍ୟୁତିରେ କର୍ଣ୍ଣଙ୍କ ମୁଖମଣ୍ଡଳ ଶତଦଳର ସଦୃଶ ତଥାପି ଉଦ୍ଭାସିତ ।"

ଗାନ୍ଧାରୀ ଶୋକାର୍ତ୍ତ କଣ୍ଠରେ କର୍ଣ୍ଣଙ୍କ ଶବକୁ ଆଲିଙ୍ଗନ କରି କହିଲେ···"ଆସ ବାବୁ, ଜନନୀର ବାତ୍ସଲ୍ୟ-ବଞ୍ଚିତ କୌନ୍ତେୟ, ଅଗ୍ର-ପାଣ୍ଡବ । ଦୁର୍ଯ୍ୟୋଧନର ମାନରକ୍ଷାପାଇଁ ଅପରାଜେୟ ବୀର ଭୂମେ, ଆଜି ରଣଭୂମିରେ ଶୋଣିତ-ପଙ୍କରେ ଲୋଟିଅଛ; କିନ୍ତୁ ହେ ସର୍ବଦ୍ରଷ୍ଟା, ଦିବାକର, ସର୍ବଶକ୍ତିମାନ, ସହସ୍ରଶୀର୍ଷା ହିରଣ୍ୟ-ଗର୍ଭ, ଅଂଶୁମାଳୀ;

ଯେଉଁମାନେ କ୍ଷାତ୍ରଧର୍ମର ପ୍ରତିକୂଳାଚରଣ କରି ଅନ୍ୟାୟ ଯୁଦ୍ଧରେ କର୍ଣ୍ଣଙ୍କୁ ହତ୍ୟା କରିଅଛନ୍ତି, ସେମାନଙ୍କପାଇଁ କ'ଣ କୌଣସି ଶାସ୍ତି ନାହିଁ ? ନାହିଁ ? ନାହିଁ ?"

ଆଉ କିଛି ଦୂର ଅଗ୍ରସର ହେବା ପରେ, ସଞ୍ଜୟ କହିଲେ, …"ଦେଖ ! ଭୀମର ଗଦାଘାତରେ ଏଇ ଧରଣୀଶାୟୀ ହୋଇଛନ୍ତି— ଭଗ୍ନଜାନୁ ଦୁଃଶାସନ ! ବିବସନା ଦ୍ରୌପଦୀର ଉଲଙ୍ଗ ଜାନୁ ପ୍ରତି ଅଶ୍ଳୀଳ କଟାକ୍ଷର ପ୍ରତିଶୋଧ ନେବାପାଇଁ; ଏହାହିଁ ଥିଲା ଭୀମର ପ୍ରତିଜ୍ଞା । ନୀଳମେଘରେ ବିଦ୍ୟୁତ୍‌ର ଚମକ ପରି, ତାଙ୍କର ପ୍ରଶସ୍ତ ବକ୍ଷରେ ମଣିମୁକ୍ତା-ଖଚିତ ଗଳାହାର ତଥାପି ବିଲମ୍ବିତ ରହିଅଛି ! …ଚାଲନ୍ତୁ ଦେଖ, ଜୀବନ ମୃତ୍ୟୁର ଏହା ତ ଚିରନ୍ତନ ଲୀଳା; ସମସ୍ତେ କର୍ମଫଳର ଅଧୀନ !"

ଗାନ୍ଧାରୀ ଉଚ୍ଛ୍ୱସିତ ହୃଦୟର ରୁଦ୍ଧ ଆବେଗରେ କହିଲେ… "ମୋର ଅନ୍ଧପଟ୍ଟିକା ଥରେ ଉନ୍ମୋଚନ କରି ଦିଅ ସଞ୍ଜୟ ! ଜୀବନରେ ଯାହାକୁ କେବେ ଦେଖି ନାହିଁ, ମୃତ୍ୟୁର ଧୂଳିଶଯ୍ୟାରେ ତାକୁ ଥରେ ଦେଖି ଚିରତୃଷିତ ନୟନର ଜ୍ୱାଳା ପ୍ରଶମିତ କରେ !"

ଗାନ୍ଧାରୀଙ୍କଠାରୁ ଅଳ୍ପଦୂରରେ ଶ୍ରୀକୃଷ୍ଣ ରଥର ଗତି ସ୍ତିମିତ କରିଦେଲେ । ଯୁଧିଷ୍ଠିର ଉଦ୍‌ବିଗ୍ନ କଣ୍ଠରେ ପଚାରିଲେ… "ରଥର ଗତି କାହିଁକି ସ୍ତିମିତ କଲେ ନାରାୟଣ ?"

ଶ୍ରୀକୃଷ୍ଣ ସ୍ମିତ ହସି କହିଲେ… "ଯେଉଁମାନେ ଶୋକାର୍ତ୍ତ, ବେଦନାର୍ତ୍ତ, ଦୁଃଖୀ ସେମାନଙ୍କ ନିକଟକୁ କ୍ଷମତା ଓ ଦର୍ପର ଅଭିମାନରେ ରଥାରୂଢ଼ ହୋଇ ଯିବା ଶୋଭନୀୟ ନୁହେଁ । ସେଥିରେ ସେମାନଙ୍କର ଶୋକର ଗାମ୍ଭୀର୍ଯ୍ୟ ଓ ମର୍ଯ୍ୟାଦା ଲଙ୍ଘିତ ହୁଏ । ଗାନ୍ଧାରୀ ପୁଣି ସହଜେ ତ ତୁମର ମାତୃତୁଲ୍ୟା ।"

ଯୁଧିଷ୍ଠିର ଅପରାଧୀ ପରି ରଥରୁ ଅବତରଣ କରି କହିଲେ… "ଆପଣ ଯଥାର୍ଥ କହିଅଛନ୍ତି ନାରାୟଣ; ଶୋକାର୍ତ୍ତା ଗାନ୍ଧାରୀଙ୍କ ନିକଟକୁ ପାଦରେ ଯିବା ହିଁ ମୋ ପକ୍ଷରେ ସମୀଚୀନ ।"

ଦୁର୍ଯୋଧନଙ୍କ ଶବ ନିକଟରେ ବସିଥିବା ଗାନ୍ଧାରୀଙ୍କ ନିକଟକୁ ଯୁଧିଷ୍ଠିର ଅଗ୍ରସର ହେଉଥିଲେ; ଶ୍ରୀକୃଷ୍ଣ ତାହାଙ୍କର ଗୋଟିଏ ବାହୁ ଟାଣି ଧରି କହିଲେ··· "ଗାନ୍ଧାରୀ ତୁମକୁ କାହିଁକି ସ୍ମରଣ କରିଅଛନ୍ତି, ଜାଣିଛ ଯୁଧିଷ୍ଠିର ?"

ଯୁଧିଷ୍ଠିର କହିଲେ·· "ନାଁ, ତାହା ଜାଣେ ନା ତ ।"

ଶ୍ରୀକୃଷ୍ଣ ସ୍ମିତ ହସି କହିଲେ··· "କୁରୁ ମହାଶ୍ମଶାନର ଶବସ୍ତୂପ ମଧ୍ୟରେ ଗାନ୍ଧାରୀ ନିଜ ପୁତ୍ରମାନଙ୍କୁ ଥରେ ଦେଖିବାପାଇଁ, ତାଙ୍କର ଅନ୍ଧପଟ୍ଟିକା ଉନ୍ମୋଚନ କରିବା ଉଦ୍ଦେଶ୍ୟରେ ତୁମକୁ ସ୍ମରଣ କରିଅଛନ୍ତି !"

ଯୁଧିଷ୍ଠିର କହିଲେ···"ଏ ବା, କି କଷ୍ଟ କାର୍ଯ୍ୟ ? ଏହି ମୁହୂର୍ତ୍ତରେ, ମୁଁ ସେହି ଗଣ୍ଠି ଛିନ୍ନ କରିଦେବି !"

ଶ୍ରୀକୃଷ୍ଣ ସ୍ମିତ ହସି ପୁଣି କହିଲେ,···"କିନ୍ତୁ ଯୁଧିଷ୍ଠିର, ତୁମେ ବିସ୍ମୃତ ହେଉଛ କିପରି, ଶତପୁତ୍ରର ଜନନୀ ଗାନ୍ଧାରୀ ଆଜି ତୁମରି ହେତୁ ପୁତ୍ରହୀନା ! ଗାନ୍ଧାରୀଙ୍କ ଭାବନାରେ, କୁରୁ ସିଂହାସନ ପାଇଁ ତୁମର ସର୍ବଗ୍ରାସୀ ଲୋଭ ଓ ଈର୍ଷ୍ୟା, ଆଜି କୁରୁକୁଳକୁ ନିଶ୍ଚିହ୍ନ କରିଅଛି ।"

ଯୁଧିଷ୍ଠିର ଅସହାୟ କଣ୍ଠରେ କହିଲେ···"ସେ ବୃତ୍ତାନ୍ତ ଗାନ୍ଧାରୀ ନ ଜାଣନ୍ତୁ ପଛେ, ଆପଣ ତ ସବୁ ଜାଣନ୍ତି ଅନ୍ତର୍ଯ୍ୟାମୀ !"

ଶ୍ରୀକୃଷ୍ଣ କହିଲେ··· "ଏବେ ତୁମେ ଗାନ୍ଧାରୀଙ୍କ ଅନ୍ଧପଟ୍ଟିକା ଉନ୍ମୋଚନ କରିବା ପରେ, ସେ ଯେତେବେଳେ ତୁମର ପାଦତଳେ ପ୍ରିୟ ପୁତ୍ର ଦୁଃଶାସନର ଭୂତଳଶାୟୀ ଶବ ଦେଖିବେ, ସେତେବେଳେ ଶାନ୍ତି ଓ ସାନ୍ତ୍ୱନା ପରିବର୍ତ୍ତେ, ତାଙ୍କ ପ୍ରାଣରେ ଶୋକବହ୍ନି ଶତଗୁଣରେ ପ୍ରଜ୍ଜ୍ୱଳିତ ହେବ ନାହିଁ କି ?"

ଯୁଧିଷ୍ଠିର କିଂକର୍ତ୍ତବ୍ୟବିମୂଢ଼ ହୋଇ କହିଲେ, "ତାହା ଯଥାର୍ଥ । କିନ୍ତୁ ଗାନ୍ଧାରୀ ଯେତେବେଳେ ଅନ୍ଧପଟ୍ଟିକାର ଆବରଣ ଉନ୍ମୋଚନ କରିବାପାଇଁ ମୋତେ ସ୍ମରଣ କରିଅଛନ୍ତି, ମୁଁ କ'ଣ କରିବି କହନ୍ତୁ ନାରାୟଣ ? ମୁଁ ନିରୂପାୟ !"

ଶ୍ରୀକୃଷ୍ଣ କହିଲେ··· "ଗାନ୍ଧାରୀଙ୍କ ଶତପୁତ୍ର ବିନଷ୍ଟ ହୋଇ ସାରିଥାନ୍ତି ; ତଥାପି ଜୀବିତ ଅଛି ଦୁର୍ଦ୍ଧର୍ଷ । କୁରୁବଂଶର ଶେଷପ୍ରଦୀପ ଦୁର୍ଦ୍ଧର୍ଷକୁ ଦେଖି, ଗାନ୍ଧାରୀଙ୍କ ଶୋକାର୍ତ୍ତ ପ୍ରାଣ ଶାନ୍ତି ଲାଭ କରିବ ।"

ଯୁଧିଷ୍ଠିରଙ୍କ କଣ୍ଠସ୍ୱର ଶୁଣି, ଉତ୍କଣ୍ଠିତା ଗାନ୍ଧାରୀ ପଚାରିଲେ··· "ସଞ୍ଜୟ, ଏ ତ ଯୁଧିଷ୍ଠିରଙ୍କର କଣ୍ଠସ୍ୱର ପରି ମନେ ହେଉଅଛି ।"

ସଞ୍ଜୟ କହିଲେ··· "ଶ୍ରୀକୃଷ୍ଣଙ୍କ ସହିତ ଅଗ୍ରପାଣ୍ଡବ ଯୁଧିଷ୍ଠିର ଆପଣଙ୍କ ପଦବନ୍ଦନା ପାଇଁ ଆସିଛନ୍ତି ।"

ଉଦ୍‌ବେଳିତା ଗାନ୍ଧାରୀ ଯୁଧିଷ୍ଠିରଙ୍କୁ ଆଲିଙ୍ଗନ କରିବାପାଇଁ, ଶୂନ୍ୟରେ ଦୁଇ କମ୍ପିତ ଶିଥିଳ ବାହୁ ଟେକି କହିଲେ··· "ଆସ, ଆସ ବାବୁ, ଜଗତର କରୁଣାର ପ୍ରତିରୂପ, ଅଗ୍ରପାଣ୍ଡବ ଯୁଧିଷ୍ଠିର···ଆଜି ତୁମେ ଅଗ୍ରକୌରବ ମଧ୍ୟ । ମୁଁ ପାପିନୀ, ମୋର ଦୁଷ୍କର୍ମର ଫଳ ଭୋଗ କରିଅଛି । ଏବେ ମୋର ଦୃଷ୍ଟିଦ୍ୱୟ ଅନ୍ଧପଟ୍ଟିକାର ଗ୍ରନ୍ଥି ଖୋଲି ଉନ୍ମୋଚନ କରିଦିଅ ପୁତ୍ର, ଯେଉଁ ଶତପୁତ୍ରଙ୍କୁ ଜନ୍ମ ଦେଇ ସୁଦ୍ଧା, ସ୍ୱଚକ୍ଷୁରେ କେବେ ଦେଖି ନାହିଁ, ଏବେ ସେମାନଙ୍କୁ ପ୍ରଥମ ଓ ଶେଷଥର ପାଇଁ ଦେଖି, ମୋର ଅତୃପ୍ତ ନୟନର ଜ୍ୱାଳା ପ୍ରଶମିତ କରେ ।"

ଗାନ୍ଧାରୀଙ୍କର ବ୍ୟାକୁଳ ନିବେଦନରେ, ଯୁଧିଷ୍ଠିର ଅନ୍ଧପଟ୍ଟିକାର ଗ୍ରନ୍ଥି ଛେଦନ କରିବାପାଇଁ ଅଗ୍ରସର ହେଉଥିଲେ; ଶ୍ରୀକୃଷ୍ଣ ହଠାତ୍ ତାହାଙ୍କର ଗୋଟିଏ ବାହୁ ଧରି ପକାଇ ଅସ୍ଫୁଟ କଣ୍ଠରେ ଦୁର୍ଦ୍ଧର୍ଷକୁ କହିଲେ··· "ଦୁର୍ଦ୍ଧର୍ଷ, ଜନନୀ ଗାନ୍ଧାରୀଙ୍କ ଅନ୍ଧପଟ୍ଟିକା ଉନ୍ମୋଚିତ କର । ପୁତ୍ରହୀନା, ଶତପୁତ୍ରର ଜନନୀ ଗାନ୍ଧାରୀ, ତୁମକୁ ସଶରୀରେ ଜୀବିତ ଦେଖିଲେ, ପୁତ୍ରଶୋକ ବିସ୍ମୃତା ହେବେ ।"

ଶ୍ରୀକୃଷ୍ଣଙ୍କ ଦୁଇ ରଙ୍ଗାଧରରେ ରହସ୍ୟ-ବିଜଡ଼ିତ ହସ ।

ଯୁଧିଷ୍ଠିର କହିଲେ, "ତାହା ହିଁ କର ଦୁର୍ଦ୍ଧର୍ଷ ।"

ଯୁଧିଷ୍ଠିରଙ୍କ ନିର୍ଦ୍ଦେଶରେ ତାଙ୍କର ଚିର ଅନୁଗତ ଦୁର୍ଦ୍ଧର୍ଷ ମୁହୂର୍ତ୍ତକ ମଧ୍ୟରେ ଗାନ୍ଧାରୀଙ୍କର ଅନ୍ଧପଟ୍ଟିକାର ଗ୍ରନ୍ଥି ଛିନ୍ନ କରିଦେଲା ।

ଗ୍ରନ୍ଥି ଉନ୍ମୋଚିତ ହେବା ମାତ୍ରେ, ଅନ୍ଧତମିସ୍ରାକାର କୃଷ୍ଣ ଆବରଣତଳୁ ଅଗ୍ନ୍ୟୁଦ୍‌ଗାରର ସର୍ବନାଶୀ ଶିଖା ଯେପରି ଉଲ୍ଲମ୍ଫନ କରି ଉଠିଲା । ସେହି କରାଳୀ ଦୃଷ୍ଟିର ପୁଞ୍ଜୀଭୂତ ତେଜରେ, ଦୁର୍ଦ୍ଧର୍ଷ ଦୁଃଶାସନଙ୍କ ଭୂଲୁଣ୍ଠିତ ଶବ ଉପରେ ମୁହୂର୍ତ୍ତକ ମଧ୍ୟରେ ଭସ୍ମରାଶି ପରି ଝରି ପଡ଼ିଲା ।

ଯୁଧିଷ୍ଠିର ଆର୍ତ୍ତନାଦ କରି ଉଠିଲେ···"ଏ ପୁଣି କି ଚରମ ଗୃଜନା କଲେ ଚଣ୍ଡୀ ? ଦୁର୍ଦ୍ଧର୍ଷ ଯେ ମୋର ଚିର ଅନୁଗତ !"

ଶ୍ରୀକୃଷ୍ଣ ଅନୁଚ୍ଚ କଣ୍ଠରେ କହିଲେ···"ନୀରବ ରହ ନିର୍ବୋଧ ! ଆଜି ଗାନ୍ଧାରୀର ନୟନାନଳରେ ଦଗ୍ଧ ହୋଇଥିଲେ, କାଲି ତୁମେ ହସ୍ତିନାର ସିଂହାସନରେ ଅଭିଷିକ୍ତ ହୋଇଥାନ୍ତ କିପରି ? ଏହା ରାଜନୀତି··· ରାଜନୀତିର ଯଜ୍ଞକୁଣ୍ଡରେ ଏହିପରି ବହୁ ବିଶ୍ୱସ୍ତ ଓ ବିଶମ୍ବଦ ଦୁର୍ଦ୍ଧର୍ଷର ଆହୁତି, ଏକ ଦୈନନ୍ଦିନ ଘଟଣା ! ସେଥିରେ ତୁମପରି ଧୀମାନ୍, ବିଚଳିତ ହେବା ଉଚିତ ନୁହେଁ, ଯୁଧିଷ୍ଠିର !"

ସଞ୍ଜୟ ବଜ୍ରାହତପରି ଶୋକାପ୍ଲୁତ କଣ୍ଠରେ କହିଲେ ··· 'ଏ କ'ଣ କଲେ ମହାଦେବୀ ! କୁରୁକୁଳର ଏକମାତ୍ର କ୍ଷୀଣ ପ୍ରଦୀପଶିଖା ଦୁର୍ଦ୍ଧର୍ଷକୁ ନିଜ ସ୍ୱହସ୍ତରେ ନିର୍ବାପିତ କରିଦେଲେ !"

ଶ୍ରୀକୃଷ୍ଣ ସମବେଦନାର ଅଭିନୟ କରି କହିଲେ··· "ଜନନୀ, କିଏ କହେ ଆପଣ ପୁତ୍ରହୀନା ? କୌରବ କିଏ, ପାଣ୍ଡବମାନେ ବା କିଏ ? ସେମାନଙ୍କୁ ଏବେ ପୁତ୍ରରୂପେ ଗ୍ରହଣ କରନ୍ତୁ ।"

ଶ୍ରୀକୃଷ୍ଣଙ୍କ ଦୁଇ ରକ୍ତାଧରରେ ରହସ୍ୟ ବିଜଡ଼ିତ ହସ !

ଗାନ୍ଧାରୀ ପାଦତଳେ, ଦଗ୍ଧ ଆମ୍ରମୁକୁଳ ପରି ଝରିପଡ଼ିଥିବା, ଦୁର୍ଦ୍ଧର୍ଷର ଭସ୍ମରାଶି ଆଡ଼େ ଚାହିଁ, ଉନ୍ମାଦିନୀ ପରି ଅଟ୍ଟହାସ କରି କହିଲେ···"ବୁଝିଛି ଚଣ୍ଡୀ, ବୁଝିଛି ତୁମର ଚକ୍ରାନ୍ତ; କିନ୍ତୁ ସୁଦର୍ଶନ ଚକ୍ରର ଚକ୍ରାନ୍ତ ଓ ଶକ୍ତିରେ କେବଳ କୌଣସି ସିଂହାସନ ରହି ନାହିଁ; କିମ୍ବା ରହିପାରିବ ନାହିଁ । ପ୍ରତାରିତ ଓ ନିପୀଡ଼ିତ ଆତ୍ମାର ଅଭିଶାପରେ

ସବୁ ଦଗ୍ଧ ହୋଇଯିବ, ସବୁ ଭସ୍ମ ହୋଇଯିବ । ତୁମର ମଧ୍ୟ ସେଥିରୁ ନିସ୍ତାର ନାହିଁ ଶ୍ରୀକୃଷ୍ଣ ! ସ୍ୱଜନଦ୍ରୋହ ମଧ୍ୟରେ ସୋମବଂଶ ପରି, ବିରାଟ ଯଦୁବଂଶ ମଧ୍ୟ ଦିନେ ନିଶ୍ଚିହ୍ନ ହୋଇଯିବ ! ତୁମର ପ୍ରିୟପୁତ୍ର ପ୍ରଦ୍ୟୁମ୍ନ ମଧ୍ୟ ସେଥିରୁ ରକ୍ଷା ପାଇବ ନାହିଁ !"

ଉଚ୍ଛ୍ୱସିତ କ୍ରନ୍ଦନର ତୀବ୍ର ଆବେଗରେ ଗାନ୍ଧାରୀ କୁରୁକ୍ଷେତ୍ରର ଭସ୍ମରାଶି ଉପରେ ଲୋଟି ପଡ଼ିଲେ ।

ଶ୍ରୀକୃଷ୍ଣଙ୍କ ଦୁଇ ରକ୍ତାଧରରେ ଚିର ରହସ୍ୟବ୍ୟଞ୍ଜକ ସ୍ମିତ ହାସ୍ୟରେଖା, ଦଶମୀର କ୍ଷୀଣ ଶଶିଲେଖା ପରି କ୍ଷୁବ୍ଧ ଅନ୍ଧକାର ମଧ୍ୟରେ ଧୀରେ ଧୀରେ ମଳିନ ହୋଇ ଆସୁଥିଲା ।

ଅସ୍ତାଚଳରେ ଇନ୍ଦ୍ରପ୍ରସ୍ଥର ଗିରିମାଳା ନେପଥ୍ୟରେ, ସର୍ବଦ୍ରଷ୍ଟା ଦିବାକର ମଧ୍ୟ ଅସ୍ତମିତ ହେଉଥିଲେ । (୧୯୬୨)

---

* ସାରଳା ମହାଭାରତର "ନାରୀପର୍ବ"ରେ ବର୍ଣ୍ଣିତ ଗୋଟିଏ ଉପାଖ୍ୟାନ ଅବଲମ୍ବନରେ ଏହି ଗଳ୍ପଟି ଲିଖିତ ହୋଇଅଛି । ଏହା ସଂସ୍କୃତ-ମହାଭାରତରେ ନାହିଁ ଓ ସଂସ୍କୃତ ମହାଭାରତଠାରୁ ସାରଳା ମହାଭାରତର ଏହା ଏକ ବିଷୟଗତ ବୈଷମ୍ୟ । —ଲେଖକ

# ମାଲ୍ୟାର୍ପଣ

ଏକ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ରୂପେ ଏହାକୁ ମଧ୍ୟ ଗ୍ରହଣ କରାଯାଇପାରେ ।

ଦୂର ମଫସଲରୁ ଭୁବନେଶ୍ୱର ଗୋପବନ୍ଧୁ ନଗରକୁ ଆସିଥିଲେ ଛକଡ଼ୀ ବେହେରା ··ଅଶୀ ବର୍ଷର ଥୁ ରୁ ଥୁ ରୁ ବୁଢ଼ା···ପିଠିରେ କେତେଟା ବେତନୋଳା ଜାଲପରି ଛନ୍ଦି ହୋଇଯାଇଛି ··· ଲବଣ ସତ୍ୟାଗ୍ରହ ବେଳର ସ୍ମୃତି···ତଥାପି ଅଣ୍ଟା ବାଙ୍କି ନାହିଁ , ମେରୁଦଣ୍ଡ ସିଧା ରହିଛି··· ପିନ୍ଧାରେ ଅଖାପରି ବହଳ ନାଲିଧୂଳିରେ କୋଚଟ ଖଦଡ଼ ! ଯେଉଁ ଗୋପବନ୍ଧୁଙ୍କ ସମ୍ଭବତ ୧୯୨୦ ସାଲ ଦୁର୍ଭିକ୍ଷ ବେଳେ ସେ କାମ କରିଥିଲେ, ଅସୁମାରି ବନ୍ୟାବେଳେ ବନ୍ୟାଦୁର୍ଗତ ମାନଙ୍କର ସେବାକରି ଥିଲେ, କଟକଠାରୁ ହଜାରିବାଗ ଜେଲ ପର୍ଯ୍ୟନ୍ତ ବୁଲିଥିଲେ, ତାଙ୍କ ନାମରେ କଂଗ୍ରେସ ଅଧିବେଶନ ଉପଲକ୍ଷେ ତାକଟିକଟ ସ୍ଥାପିହେଲା, ଗୋପବନ୍ଧୁ ନଗର ଉଦ୍‌ଘାଟିତ ହେଲା··ତାରି ମଧ୍ୟରେ କିନ୍ତୁ ଛକଡ଼ୀବେହେରା ଦେଖିଥିଲେ ନିଜର ପ୍ରତିଫଳନ ! ସେଥିପାଇଁ ସେ ସୁଦୂର ମଫସଲରୁ ଆସିଥିଲେ, ଗୋପବନ୍ଧୁ ନଗରର ଉଦ୍‌ଘାଟନ ଓ ଗୋପବନ୍ଧୁଙ୍କ ପ୍ରତିମୂର୍ତ୍ତିରେ ମାଲ୍ୟାର୍ପଣ ବେଳେ, ଯେପରି ନିଜ ପ୍ରାଣର ପ୍ରତିଷ୍ଠା ଉତ୍ସବରେ ଯୋଗ

ଦେବାପାଇଁ ! ବସ୍ତ୍ରରୁ ଓହ୍ଲାଇ, ବାଟ ଉଣ୍ଡାଳି ଉଣ୍ଡାଳି, ରଙ୍ଗୀନ ପ୍ରଜାପତିପରି ନାଇଲନ ଓ ଟେରିଲିନ୍ ପିନ୍ଧା ଯୁବକ-ଯୁବତୀ, ସେବାଦଳ-ସ୍ୱେଚ୍ଛାସେବକ ଓ ଅନ୍ୟ ହର୍ତ୍ତା-କର୍ତ୍ତାମାନଙ୍କ ଭିଡ଼ ଠେଲିଠେଲି, ସେ ଯେତେବେଳେ ଗୋପବନ୍ଧୁ-ନଗରର ତୋରଣଦ୍ୱାରରେ ପହଞ୍ଚିଲେ, ଖଣ୍ଡଗିରି ପାହାଡ଼ର ପ୍ରଶାନ୍ତ ପୃଷ୍ଠଭୂମି ଉପରେ ଭାସି ଉଠିଥିଲା, ଗୋପବନ୍ଧୁଙ୍କର ସୌମ୍ୟ ପ୍ରତିମୂର୍ତ୍ତି ! ପ୍ରତିମୂର୍ତ୍ତିର ବେଦୀତଳେ ଗୋଟିଏ ପୋଲିସ-ଚଉକି !······ଆଜି ଟିକିକପରେ ପ୍ରତିମୂର୍ତ୍ତି ଦେହରେ ମାଲ୍ୟାର୍ପଣ ଉତ୍ସବ ହେବ । ଛକଡ଼ି ବେହେରା ମଧ୍ୟ ଗୋଟିଏ ମାଳି ପିନ୍ଧାଇବା ପାଇଁ ଭାବିଥିଲେ··· ନପିନ୍ଧାଇବେ କାହିଁକି ? ଏତ ତାଙ୍କର ଜୀବନ ଇତିହାସର ଗୋଟିଏ ଅଧ୍ୟାୟ ! ବିଳମ୍ବ କରିବାପାଇଁ ବେଳ ନଥିଲା । ଛକଡ଼ି କେଉଁଠୁ ସଂଗ୍ରହ କରି ଆଣିଥିଲେ ମଉଳା ଗେଣ୍ଡୁ-ଫୁଲର ମାଳାଟିଏ ! ମାତ୍ର ସାମନାରେ ସେବାଦଳ ଆଉ ପୋଲିସ, ଆଉ ରଙ୍ଗୀନ ପ୍ରଜାପତିମାନଙ୍କର ଭିଡ଼ ! ପ୍ରତିମୂର୍ତ୍ତି ଦେହରେ ନେତା ମାଲ୍ୟାର୍ପଣ କରିବେ । ···ଛକଡ଼ି ସେହି ଭିଡ଼ ଠେଲି, ଗେଣ୍ଡୁଫୁଲ ମାଳଟି ଧରି ଆସୁଥିଲେ । ମାତ୍ର କିଏ ? କିଏ ତୁମେ ? ହଟ···ହଟ୍ ଯାଅ ! ···ହୁଳୁ ହୁଳି··ଜୟନାଦ ···ଜିନ୍ଦାବାଦ୍··ଠେଲା ଓ ଧକ୍କାରେ ଛକଡ଼ି ପଛକୁ ଚାଲିହୋଇ ଆସିଲେ । ଗେଣ୍ଡୁମାଳଟି ଛିଣ୍ଡି ପଡ଼ିଥିଲା ! ଛକଡ଼ି ଭିଡ଼ ଭିତରେ ଆଣ୍ଠେଇ ପଡ଼ି, ଆଣ୍ଠୁର ଖାବୁଡ଼ାକୁ କଂକରିବ ବିମୂଢ଼ ପରି ଆଉଁସୁ ଥିଲେ ! (୧୯୬୪)



ମୁଦ୍ରାକର—ଶ୍ରୀ ଜାନକୀନାଥ ହାଲଦାର, ପ୍ରାଗ୍ରେସିଭ ପ୍ରେସ, କଟକ-୧

# ଏହି ଲେଖକଙ୍କ ଅନ୍ୟ ରଚନା

## ଉପନ୍ୟାସ

| | |
|---|---|
| ସହସ୍ର ଶଯ୍ୟାର ନାୟିକା | (୧୯୪୩) |
| କଲେଜବସ୍ତୁ | (୧୯୪୫) |
| ବଧୂ ଓ ପ୍ରିୟା | (୧୯୪୭) |
| ଅନ୍ଧଦିଗନ୍ତ | (୧୯୬୪) |

## କ୍ଷୁଦ୍ରଗଳ୍ପ

| | |
|---|---|
| ମହାନଗରୀର ରାତି | (୧୯୫୦) |
| କୃଷ୍ଣଚୂଡ଼ା | (୧୯୫୧) |
| ରୁଟି ଓ ଚନ୍ଦ୍ର | (୧୯୫୪) |
| ଶେଷ କବିତା | (୧୯୫୫) |
| ସବୁଜ ପତ୍ର ଓ ଧୂସର ଗୋଲାପ | (୧୯୫୮) |
| ମରାଳର ମୃତ୍ୟୁ | (୧୯୬୨) |

## ଜୀବନୀ

| | |
|---|---|
| ଫକୀରମୋହନ | (୧୯୫୦) |

## ସମାଲୋଚନା

| | |
|---|---|
| ଫକୀରମୋହନ ସମୀକ୍ଷା | (୧୯୫୫) |
| ଓଡ଼ିଆ ସାହିତ୍ୟର ଆଦିପର୍ବ | (୧୯୬୩) |
| ଓଡ଼ିଆ ସାହିତ୍ୟର ମଧ୍ୟପର୍ବ | (ଯନ୍ତ୍ରସ୍ଥ) |

## ଭ୍ରମଣ କାହାଣୀ

| | |
|---|---|
| ପେକିଙ୍ଗ ଡାଏରୀ | (୧୯୫୯) |

## ଐତିହାସିକଗଳ୍ପ

| | |
|---|---|
| ଉତ୍କଳ ଯୁଗେ ଯୁଗେ | (୧୯୫୯) |